

"କୌଣସି ଲୋକର ଅନ୍ଧ ଭକ୍ତ ହେବା ଯେତିକି ଭୁଲ୍, ଆଉ କାହାରି ଅନ୍ଧ ନିନ୍ଦୁକ ହେବା ସେତିକି ଭୁଲ୍। ପରିସ୍ଥିତି ବଦଳିବା ସାଙ୍ଗେ ସାଙ୍ଗେ ବ୍ୟକ୍ତି ମଧ୍ୟ ବଦଳି ଯାଏ। ପରିସ୍ଥିତି -ର ବାହାର ରୂପରେ ହେଉ ବା ଭିତର ପ୍ରଭାବରେ ହେଉ। 'ଯେ ଯାହା- ସେ ତାହା' ଏକଥା ସତ୍ୟ ହୋଇଥିଲେ, ସମାଜ, ଦେଶ, ଦୁନିଆଁ ବଦଳୁ ନଥାନ୍ତା। ସବୁ ମିଶିକରି ବଦଳୁଛି ଆମେ ମାନୁଛୁ, କିନ୍ତୁ ବ୍ୟକ୍ତି ବଦଳିବା କଥା ସହଜରେ ମାନୁନାହିଁ।"

# ଶ୍ରଦ୍ଧାଞ୍ଜଳି

( ନବକୃଷ୍ଣ ଚୌଧୁରୀଙ୍କ ଉଦ୍ଦେଶ୍ୟରେ )

ମୁଖ୍ୟ ସଂପାଦକ :
ସୁରେନ୍ଦ୍ରନାଥ ଦ୍ୱିବେଦୀ

ବସ୍ତିଆ ମେମୋରିଆଲ୍ ଟ୍ରଷ୍ଟ
ରାଉରକେଲା

ପ୍ରକାଶକ– ବସ୍ତିଆ ମେମୋରିଆଲ ଟ୍ରଷ୍ଟ
ବସ୍ତିଆ ସ୍ମୃତି ସଦନ
ସେକ୍ଟର ୬, ରାଉରକେଲା-୭୬୯୦୦୨

ପ୍ରକାଶ– ନଭେମ୍ବର ୨୩, ୧୯୮୪

ପ୍ରଚ୍ଛଦପଟ– ବିଭୂତିଭୂଷଣ ମହାନ୍ତି, ଅନୁଗୁଳ

ମୁଦ୍ରାକର– ଅର୍ଚ୍ଚନା ପ୍ରେସ,
ଗଙ୍ଗାମନ୍ଦିର, କଟକ–୧

Publishers— **Bastia Memorial Trust**
Bastia Smruti Sadan
Sector 6, Rourkela-769002
23rd November, 1984

Cover design— Bibhutibhusan Mahanty, Angul

Printed at— Archana Press
Gangamandir, Cuttack-1

Price— Paper Back-Rs. 45.00
Delux-Rs. 75.00

ଆମର ବିନମ୍ର ପ୍ରଣତି . . .

**ବସ୍ତିଆ ମେମୋରିଆଲ ଟ୍ରଷ୍ଟର ସଭ୍ୟବୃନ୍ଦ**

ସୁରେନ୍ଦ୍ରନାଥ ଦ୍ୱିବେଦୀ
ଗଜକିଶୋର ସାମନ୍ତରାୟ
ଜଗଦୀଶ ନାଗ
ହିମାଂଶୁଶେଖର ପାଢ଼ୀ

# ମୁଖବନ୍ଧ

ସ୍ୱର୍ଗୀୟ ନବକୃଷ୍ଣ ଚୌଧୁରୀ ୧୯୬୭ ମସିହାରେ ବସ୍ତିଆ ମେମୋରିଆଲ ଟ୍ରଷ୍ଟର ସ୍ଥାପନା ଦିନୁ ଟ୍ରଷ୍ଟବୋର୍ଡ଼ର ସଦସ୍ୟ ହୋଇଥିଲେ ଓ ଟ୍ରଷ୍ଟର କାର୍ଯ୍ୟ ପ୍ରତି ଆନ୍ତରିକ ଥିଲେ । ୧୯୮୪ ଜୁନ୍ ୨୪ ତାରିଖରେ ତାଙ୍କର ବିୟୋଗ ହେତୁ ଟ୍ରଷ୍ଟ ଜଣେ ପ୍ରଧାନ ଉପଦେଷ୍ଟାଙ୍କୁ ହରାଇଲା ।

ତାଙ୍କର ସ୍ମୃତି ଉପଲକ୍ଷେ ଟ୍ରଷ୍ଟ ୩ଟି କାର୍ଯ୍ୟ କରିବାର ଯୋଜନା କରିଥିଲା : (୧ ବସ୍ତିଆ ସ୍ମୃତି ସଦନରେ ତାଙ୍କର ଏକ ତୈଳଚିତ୍ର, (୨) ନବକୃଷ୍ଣ ଚୌଧୁରୀ ଲାଇବ୍ରେରୀ ନାମକ ଏକ ବଡ଼ଧରଣର ଲାଇବ୍ରେରୀ ଓ ପାଠାଗାର, ୩) 'ଶ୍ରଦ୍ଧାଞ୍ଜଳି' ନାମକ ଏକ ସ୍ମରଣିକା । ଏହି ୩ ଗୋଟି କାର୍ଯ୍ୟ ତାଙ୍କର ଜନ୍ମଦିବସ ନଭେମ୍ବର ୨୩ ତାରିଖ ଭିତରେ ସମ୍ପନ୍ନ କରାଯିବାର ନିଷ୍ପତ୍ତି ନିଆଯାଇଥିଲା । ଟ୍ରଷ୍ଟ ତରଫରୁ ମୁଁ ଆନନ୍ଦ ସହକାରେ ଘୋଷଣା କରୁଛି ଯେ ଧାର୍ଯ୍ୟ ସମୟ ଭିତରେ ଉକ୍ତ କାର୍ଯ୍ୟଗୁଡ଼ିକ କରାଯାଇପାରିଛି । ଏଥିନିମନ୍ତେ ରାଉରକେଲା ଓ ବାହାରର ଯେଉଁ ଅନୁଷ୍ଠାନ ଓ ସହାନୁଭୂତିସମ୍ପନ୍ନ ବ୍ୟକ୍ତିମାନେ ସାହାଯ୍ୟ ସହଯୋଗ କରିଛନ୍ତି, ସେମାନଙ୍କୁ କୃତଜ୍ଞତା ଜ୍ଞାପନ କରୁଅଛି ।

ତୈଳଚିତ୍ରଟି ଅନୁଗୁଳର ପ୍ରଖ୍ୟାତ ଚିତ୍ରଶିଳ୍ପୀ ଶୀତଳ କୁମାର ମହାପାତ୍ର ଆଙ୍କିଛନ୍ତି ।

ନବକୃଷ୍ଣ ଚୌଧୁରୀ ଲାଇବ୍ରେରୀ ନିମନ୍ତେ ଚାନ୍ଦା ସଂଗ୍ରହ ପାଇଁ ଯେଉଁମାନଙ୍କୁ ଅନୁରୋଧ କରା-ଯାଇଛି, କେହି ଅସମ୍ମତି ଜଣାଇନାହାନ୍ତି । କେତେକ ବନ୍ଧୁ ଆଶାନୁରୂପ ସଂଗ୍ରହ କରିଥିଲେ ମଧ୍ୟ ନିଜେ ଅଜ୍ଞାତ ରହିବାକୁ ଚାହାନ୍ତି । ଟାଟା କମ୍ପାନୀ ଓ ଓଡ଼ିଶା ଇଣ୍ଡଷ୍ଟ୍ରିଜ (ଲାଠିକଟା) ଲାଇବ୍ରେରୀ ଲାଗି ବିଶେଷ ଦାନ କରିଛନ୍ତି । ଏହି ଅବସରରେ ମୁଁ ସକଳ ଚାନ୍ଦାଦାତା ଓ ସଂଗ୍ରହକାରୀଙ୍କୁ ଶୁଭେଚ୍ଛା ଜଣାଉଛି । ଲାଇବ୍ରେରୀ ନିମନ୍ତେ ଚାନ୍ଦା ଓ ସଭ୍ୟସଂଗ୍ରହ ଅବ୍ୟାହତ ରହିବ । ଏକ ବଡ଼ ଧରଣର ଗବେଷଣାମୂଳକ ଗ୍ରନ୍ଥାଗାର ଏବଂ ଭ୍ରାମ୍ୟମାଣ ଲାଇବ୍ରେରୀ ଭାବରେ ଏହାକୁ ବୃଦ୍ଧି କରାଯିବାର କଳ୍ପନା ରହିଛି । ଏଥିରେ ସମସ୍ତଙ୍କର ସହଯୋଗ କାମନା କରୁଛୁ ।

ଆଜି ତାରିଖରେ 'ଶ୍ରଦ୍ଧାଞ୍ଜଳି' ସ୍ମରଣିକାଟି ସାଧାରଣଙ୍କ ହାତରେ ଅର୍ପଣ କରାଯାଉଛି । ଏଥି-ନିମନ୍ତେ ଏକ ସମ୍ପାଦକମଣ୍ଡଳୀ ଗଠନ କରାଯାଇଥିଲା । ତହିଁରେ ମୁଁ ଥିଲି ମୁଖ୍ୟ ସମ୍ପାଦକ ଏବଂ ସଭ୍ୟ ଥିଲେ ଶ୍ରୀ ନରେଶ ଚନ୍ଦ୍ର ନାୟକ, ଡକ୍ଟର ସୋମନାଥ ମିଶ୍ର, ଡକ୍ଟର ଗଣେଶ୍ୱର ଦାସ, ଶ୍ରୀ ଧୀରେନ୍ଦ୍ର ତ୍ରିପାଠୀ, ଶ୍ରୀ ରଜନୀକାନ୍ତ ଦାସ । ଏସିଆ ଶ୍ରମିକ ବିକାଶ ପ୍ରତିଷ୍ଠାନ ବା "ଆଦି"ର ଡିରେକ୍ଟର ଡକ୍ଟର ଭବଗ୍ରାହୀ ମିଶ୍ର ହୋଇଥିଲେ ପରିକଳ୍ପନା ସମ୍ପାଦକ ।

ସ୍ମରଣିକାଟି ଏକ ଜୀବନୀଗ୍ରନ୍ଥ ନ ହେଲେ ସୁଦ୍ଧା ନବ ବାବୁଙ୍କ ଜୀବନ ଓ କାର୍ଯ୍ୟର ବିଭିନ୍ନ ଦିଗରୁ ଏଥିରେ ବିଶିଷ୍ଟ ଲେଖକମାନେ ଲେଖିଛନ୍ତି । ଆମେ ସ୍ଥିର କରିଥିଲୁ, ଏଥିରେ ବିଜ୍ଞାପନ ବା ବାର୍ତ୍ତା ଛପାଇବୁ ନାହିଁ । ଯେଉଁମାନେ ତାଙ୍କ ଜୀବନୀ ଓ କର୍ମସହ ସମ୍ପୃକ୍ତ ଏବଂ କିଛି ପ୍ରତ୍ୟକ୍ଷ ଅନୁଭୂତି ରହିଛି, ସେମାନଙ୍କୁ ଅନୁରୋଧ କରିବା ନିମନ୍ତେ ଶ୍ରୀ ଶରତଚନ୍ଦ୍ର ମହାରଣା, ଗାନ୍ଧୀ ଶାନ୍ତି ପ୍ରତିଷ୍ଠାନର ଶ୍ରୀ ରାଧାକୃଷ୍ଣ ଏବଂ ବିଭୂତିଭୂଷଣ ମହାନ୍ତିଙ୍କ ପରାମର୍ଶ ନେଇ ଆମେ ଓଡ଼ିଶା ଓ ଓଡ଼ିଶା ବାହାରର ତାଙ୍କର ବହୁ ବନ୍ଧୁ, ସହଯୋଗୀ, ରାଜନୀତିକ ସାଥୀ ଓ ଆତ୍ମୀୟସ୍ୱଜନମାନଙ୍କୁ ଅନୁରୋଧ ଜଣାଇଥିଲୁ । ଜୁଲାଇ ମାସଠାରୁ ପତ୍ର ବିନିମୟ ହୋଇଥିଲା । ଅନେକ ବିଶିଷ୍ଟ ବନ୍ଧୁ ସହାନୁଭୂତିସୂଚକ ପତ୍ର ଦେଇ ସୁଦ୍ଧା ସମୟ ଭିତରେ ଲେଖା ପଠାଇ-

ପାରିଲେ ନାହିଁ । ଆମେ ଅନୁଭବ କଲୁ କାର୍ଯ୍ୟବ୍ୟସ୍ତ ସମାଜସେବୀଙ୍କଠାରୁ ଲେଖା ପାଇବା ବଡ଼ କଷ୍ଟ । ତଥାପି ଯେଉଁମାନେ ପଠାଇଲେ, କେତେକ ଡାକରେ ହଜିଗଲା । ଉଦାହରଣ ସ୍ୱରୂପ, ହରିହର ମହାପାତ୍ରଙ୍କ ଓଡ଼ିଆ ଲେଖା ଆମ ପାଖରେ ପହଞ୍ଚିଲା ନାହିଁ । ଆମ ଅନୁରୋଧରେ ସେ ଏକ ଇଂରେଜୀ ଲେଖା ଦେଲେ; ତାହା ଛପାଯାଇଛି । ତାଙ୍କ ପୁତୁରା ମନମୋହନ ଚୌଧୁରୀ ଆମେରିକାରେ । ସେ ମଧ୍ୟ ପ୍ରତିଶ୍ରୁତି ଦେଇଥିଲେ; ମାତ୍ର ପ୍ରେସକୁ କପି ଦେବା ପରେ ତାଙ୍କ ଲେଖାଟି ପହଞ୍ଚିବାରୁ ଦିଆଯାଇପାରିଲା ନାହିଁ । ତାଙ୍କର ଆଉ ଏକ ପୂର୍ବ ଲେଖା "I remember" ଏଥିରେ ଦିଆଯାଇଛି । ଯାହାଙ୍କର ଦେଇପାରିଲୁ ନାହିଁ, ସେଥିରେ ମନରେ ଦୁଃଖ ରହିଗଲା ।

କେତେକ ବନ୍ଧୁ ଆଗ୍ରହ ସହକାରେ କବିତାମାନ ପଠାଇଲେ । ମାତ୍ର କବିତା ନ ଦେବାର ସିଦ୍ଧାନ୍ତ ନେବାରୁ ସେଗୁଡ଼ିକ ଦିଆଯାଇପାରିଲା ନାହିଁ । ଲେଖକମାନଙ୍କଠାରୁ କ୍ଷମା ମାଗି ନେଉଛୁ ।

ଯେତେ ଇଂରେଜୀ ଓଡ଼ିଆ ଲେଖା ଓ ବୃତ୍ତାନ୍ତ ଦିଆଯାଇଛି, ତାହା ତାଙ୍କ ଜୀବନୀ ଓ କର୍ମର ବିଭିନ୍ନ ବିଷୟରେ ଆଲୋକପାତ କରୁଛି । ପୁସ୍ତକଟି ଅଧ୍ୟୟନ କଲେ ନବକୃଷ୍ଣ ଚୌଧୁରୀଙ୍କର କର୍ମମୟ ଜୀବନର ଅନେକ ଅଜଣା ତଥ୍ୟ ପାଠକମାନେ ପାଇପାରିବେ । ସ୍କୁଲ, କଲେଜ, ବିଶ୍ୱବିଦ୍ୟାଳୟ ଓ ଲାଇବ୍ରେରୀଗୁଡ଼ିକ ଲାଗି ଏହା ଏକ ଉପାଦେୟ ଗ୍ରନ୍ଥ ହେବ ବୋଲି ଆମେ ଆଶା କରୁ ।

ଏଥିରେ କିଛି ଫଟୋଗ୍ରାଫ୍ ଦିଆଯାଇଛି । ସେଗୁଡ଼ିକ ବିଭୂତିଭୂଷଣ ମହାନ୍ତି, ଜ୍ଞାନଦେବ ମହାରଣା ଓ ଓଡ଼ିଶା ସରକାରଙ୍କ ପବ୍ଲିକ ରିଲେସନ ଅଫିସରୁ ସଂଗୃହୀତ ହୋଇଛି । ସେମାନଙ୍କୁ ଧନ୍ୟବାଦ ।

ନବ ବାବୁ ସାଧାରଣତଃ ବେଶି ଚିଠିପତ୍ର ଲେଖୁ ନ ଥିଲେ । ଏଥିରେ ଯେଉଁ ୨ଟି ଓଡ଼ିଆ ଚିଠିର ଅବିକଳ ନକଲ ଦିଆଯାଇଛି, ତାହା ଶ୍ରୀ କରୁଣାକର ପତ୍ରୀଙ୍କ ଶ୍ରଦ୍ଧା ଯୋଗୁଁ ଆମେ ପାଇଛୁ । ତହିଁରେ ତାଙ୍କ ମନର କିଛି ଝଲକ ମିଳୁଛି । ଇଂରେଜୀରେ ଜୟପ୍ରକାଶ ନାରାୟଣଙ୍କର ଯେଉଁ ପତ୍ର ଦିଆଯାଇଛି, ସେଇଟି ନବ ବାବୁଙ୍କ ପାଖରେ ଥିବା ପୁରୁଣା କଂଗ୍ରେସ ସୋସଲିଷ୍ଟ ପାର୍ଟି ଫାଇଲରୁ ମୁଁ ସଂଗ୍ରହ କରିଥିଲି । ତାହା ଏବେ ନେହରୁ ମିଉଜିୟମ ଓ ଲାଇବ୍ରେରୀରେ ସୁରକ୍ଷିତ ହୋଇ ରହିଛି ।

ଶ୍ରୀ ଜ୍ୟୋତିଚନ୍ଦ୍ର ମୋହନ ଜୋଆରଦାର ବହି ପ୍ରସ୍ତୁତ କରିବା ଓ ପ୍ରୁଫ୍ ଦେଖିବାରେ ସାହାଯ୍ୟ କରିଥିବାରୁ ବିଶେଷ ଧନ୍ୟବାଦାର୍ହ ।

ସ୍ମରଣିକା ଲାଗି ଯେଉଁ ବନ୍ଧୁମାନେ ବିଭିନ୍ନ ପ୍ରକାରେ ସାହାଯ୍ୟ କରିଛନ୍ତି ଏବଂ ରାଉରକେଲା ମଜଦୁର ସଂଘ, ବର୍ତ୍ତିଆ ମେମୋରିଆଲ ଟ୍ରଷ୍ଟ ଓ ଶ୍ରମିକ ବିଦ୍ୟାପୀଠର କର୍ମୀମାନେ ଅକୁଣ୍ଠିତ ଚିତ୍ତରେ ସାହାଯ୍ୟ କରିଥିବାରୁ, ସମସ୍ତଙ୍କଠାରେ ଆମେ କୃତଜ୍ଞ ।

ଶେଷରେ ଅର୍ଚ୍ଚନା ପ୍ରେସର ସ୍ୱତ୍ତ୍ୱାଧିକାରୀ ଶ୍ରୀ ବିଜୟ ଚନ୍ଦ୍ର ମହାପାତ୍ର ଯେପରି ଦକ୍ଷତା ଓ ତତ୍ପରତା ସହକାରେ ଅତି ଅଳ୍ପଦିନ ଭିତରେ ସ୍ମରଣିକାଟି ପ୍ରକାଶ କରିବାର ଦାୟିତ୍ୱ ନେଲେ, ତାହା ଅତୀବ ପ୍ରଶଂସନୀୟ । ସେତିକି ସାହାଯ୍ୟ ବିନା ପୁସ୍ତକଟି ଠିକ୍ ସମୟରେ ପ୍ରକାଶ କରିବା କଷ୍ଟକର ହୋଇଥାଆନ୍ତା ।

A 76, Sector 5
Rourkela-769002

ସୁରେନ୍ଦ୍ରନାଥ ଦ୍ୱିବେଦୀ
୨୩-୧୧-୮୪

# ସୂଚୀ

---

## Contents of Photographs and Facsimile

"ପ୍ରାୟ ଦୀର୍ଘ ଷାଠିଏ ବର୍ଷକାଳ ଏକ ମହାନ୍ ବ୍ୟକ୍ତିଙ୍କ ସହ କାଳଯାପନ କରିବାର ଏକ ମହତ୍ ସୁଯୋଗ ମତେ ମିଳିଥିଲା । ସେଥିପାଇଁ ଆଜି ନିଜକୁ ଧନ୍ୟ ମନେ କରୁଛି । ମୃତ୍ୟୁ ତ ଅବଶ୍ୟମ୍ଭାବୀ । ଦୁଃଖରେ କାତର ହେବା ଅନୁଚିତ । ପରିଣତ ବୟସରେ କୌଣସି ବିଶେଷ ଦୈହିକ କଷ୍ଟ ନ ସହି ତାଙ୍କର ନାତିନାତୁଣୀଙ୍କ ଦ୍ୱାରା ପରିବୃତ ହୋଇ ସଜ୍ଞାନରେ ସେ ଚାଲିଯାଇଛନ୍ତି । ଏପରି ସୁଖ-ମୃତ୍ୟୁ ହିଁ ତାଙ୍କର କାମ୍ୟ ଥିଲା । ମୋର ଗୋଟିଏ ମାତ୍ର ସାନ୍ତ୍ୱନା ଯେ ଆମେ ଦିହେଁ ପରସ୍ପରର ଅତି ଘନିଷ୍ଠ ବନ୍ଧୁ ଥିଲୁ । ମୋର ଜୀବନର କୌଣସି ମନୋଭାବ ତାଙ୍କଠାରୁ ଲୁଚେଇ ନାହିଁ ବା ସେ ମଧ୍ୟ ମୋ'ଠାରୁ ତାଙ୍କ ଜୀବନର କୌଣସି କଥା ଲୁଚେଇ ରଖି ନ ଥିଲେ । ବୋଧହୁଏ ସେଥିପାଇଁ ସମୟ ପଡ଼ିଲେ ଘୋର ଦାରିଦ୍ର୍ୟ ଭିତରେ ଏବଂ ସଂସାରର ବହୁତ ଆଘାତ ସହି ଆମେ ଦିହେଁ ଅତି ଆନନ୍ଦରେ ଦିନ କଟେଇଛୁ ।"

—ମାଳତୀ ଚୌଧୁରୀ

# କୁଳପଞ୍ଜୀ

- ଚୌଧୁରୀ ଗୋବର୍ଦ୍ଧନ ମଙ୍ଗରାଜ
  - ଚୌଧୁରୀ ବ୍ରଜସୁନ୍ଦର ମଙ୍ଗରାଜ = କୋକିଳ ଦେବୀ
    - ରାଘବାନନ୍ଦ ଚୌଧୁରୀ
    - ବାଳକୃଷ୍ଣ ଚୌଧୁରୀ
    - ଗୋକୁଳାନନ୍ଦ ଚୌଧୁରୀ = ପଦ୍ମାବତୀ ଦେବୀ
      - ଗୋଲାପସୁନ୍ଦରୀ
      - ଗୋପବନ୍ଧୁ = ରମା ଦେବୀ
      - ନବକୃଷ୍ଣ = ମାଳତୀ ଦେବୀ
        - ଉତ୍ତରା = ନାରାୟଣ ଦେଶାଇ
          - ସଙ୍ଘମିତ୍ରା
          - ନଚିକେତା
          - ଆଫ୍ଲାତୁନ୍
        - ୬ ବିନାୟକ
        - କୃଷ୍ଣା = ବିଭୂତିଭୂଷଣ ମହାନ୍ତି
          - କଳ୍ପନା
          - କସ୍ତୁରୀ
          - ୬ ଅସୀମ
          - ଅମ୍ଳାନ
      - ବସନ୍ତକୁମାରୀ
    - ପରମାନନ୍ଦ ଚୌଧୁରୀ
    - ବ୍ରହ୍ମାନନ୍ଦ ଚୌଧୁରୀ

# ଜୀବନ-ପଞ୍ଜିକା

| | |
|---|---|
| ୧୯୦୧ ନଭେମ୍ବର ୨୩ | —ଜନ୍ମ |
| ୧୯୧୫ ଫେବୃୟାରୀ | —ପିତୃବିୟୋଗ |
| ୧୯୧୭ | —ଏଣ୍ଟ୍ରାନ୍ସ ପାସ୍ |
| ୧୯୨୧ ଜାନୁୟାରୀ | —ଅସହଯୋଗ ଆନ୍ଦୋଳନରେ ଯୋଗଦାନ |
| ୧୯୨୨ | —ସାବରମତୀ ସତ୍ୟାଗ୍ରହ ଆଶ୍ରମରେ ତାଲିମ |
| ୧୯୨୫ | —ଶାନ୍ତିନିକେତନରେ ଅଧ୍ୟୟନ |
| ୧୯୨୬ | —କଟକ ଜିଲ୍ଲା ତରକୁନ୍ଦଠାରେ ଅବସ୍ଥାନ ଓ କୃଷିପ୍ରୟୋଗ ଆରମ୍ଭ |
| ୧୯୨୭ ଜୁଲାଇ | —ମାଳତୀ ସେନ୍‌ଙ୍କ ସହ ବିବାହ |
| ୧୯୨୮ ଜୁନ | —ଉତ୍ତରାର ଜନ୍ମ |
| ୧୯୩୦ | —ଲବଣ ସତ୍ୟାଗ୍ରହ, ପ୍ରଥମ କାରାଦଣ୍ଡ |
| ୧୯୩୧ | —କରାଚୀ କଂଗ୍ରେସ ଅଧିବେଶନ ନିମନ୍ତେ ସ୍ୱେଚ୍ଛାସେବକ ପ୍ରଶିକ୍ଷଣ |
| — ନଭେମ୍ବର | —ବିନାୟକ (କାଲୁ)ର ଜନ୍ମ |
| ୧୯୩୨ | —ଆଇନ ଅମାନ୍ୟ ଆନ୍ଦୋଳନ, କାରାଦଣ୍ଡ |
| ୧୯୩୩ ଫେବୃୟାରୀ | — ଓଡ଼ିଶା କଂଗ୍ରେସ ସାମ୍ୟବାଦୀ କର୍ମୀସଙ୍ଘର ସ୍ଥାପନା<br>କୃଷକ ଆନ୍ଦୋଳନ ଆରମ୍ଭ<br>'ସାରଥି' ସାପ୍ତାହିକ ପ୍ରକାଶନ |
| ୧୯୩୪ ଅକ୍ଟୋବର | —ନିଖିଳ ଭାରତ କଂଗ୍ରେସ ସୋସଲିଷ୍ଟ ପାର୍ଟିରେ ଯୋଗଦାନ |
| ୧୯୩୫ | — ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟିର ସାଧାରଣ ସମ୍ପାଦକ |
| ୧୯୩୭ | —ଓଡ଼ିଶା ବିଧାନ ସଭାର ସଦସ୍ୟ |
| ୧୯୩୮ | —କୃଷ୍ଣାର ଜନ୍ମ |
| ୧୯୩୮ ଓ ୧୯୩୯ | —ଓଡ଼ିଶା ଗଡ଼ଜାତ ପ୍ରଜା ଆନ୍ଦୋଳନ |

| | |
|---|---|
| ୧୯୪୦ | —ବ୍ୟକ୍ତିଗତ ସତ୍ୟାଗ୍ରହ, କାରାଦଣ୍ଡ |
| ୧୯୪୧ | —କଂଗ୍ରେସ ସୋସାଲିଷ୍ଟ ପାର୍ଟି ସହିତ ସମ୍ପର୍କ ଛେଦ୍ |
| ୧୯୪୨ | —'ଭାରତ ଛାଡ଼' ଆନ୍ଦୋଳନ, କାରାଦଣ୍ଡ |
| ୧୯୪୬ | —ସମ୍ବିଧାନ ସଭା ସଦସ୍ୟ, ରାଜସ୍ୱ ମନ୍ତ୍ରୀ ପଦବୀ ଗ୍ରହଣ |
| ୧୯୪୮ | —ପୁତ୍ରଶୋକ, ମନ୍ତ୍ରୀତ୍ୱ ତ୍ୟାଗ |
| ୧୯୪୯ | —ମୌଳିକ ଶିକ୍ଷା ସଂଗଠକ |
| ୧୯୫୦ ମଇ | —ଓଡ଼ିଶାର ମୁଖ୍ୟମନ୍ତ୍ରୀ<br>କଂଗ୍ରେସ କାର୍ଯ୍ୟକାରୀ ସମିତି ସଦସ୍ୟ |
| ୧୯୫୬ ଅକ୍ଟୋବର | —ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା |
| ୧୯୫୬ | —ସର୍ବସେବା ସଂଘର ଅଧ୍ୟକ୍ଷ |
| ୧୯୬୪-୬୫ | —ନାଗାଲାଣ୍ଡ, କାଶ୍ମୀର ଓ ରାଉରକେଲାଠାରେ ଶାନ୍ତି ମିଶନ କାର୍ଯ୍ୟ |
| ୧୯୬୭ | —କଂଗ୍ରେସ ବିରୋଧ ନିର୍ବାଚନ ଅଭିଯାନ |
| ୧୯୭୨ | —ଚମ୍ପଝରିମୁଣ୍ଡା ଉତ୍ତର ମୌଳିକ ବିଦ୍ୟାଳୟରେ ଶିକ୍ଷକତା |
| ୧୯୭୪ | —ଜୟପ୍ରକାଶଙ୍କ ଆନ୍ଦୋଳନର ଓଡ଼ିଶା ନେତୃତ୍ୱ |
| ୧୯୭୫ | —'ଏମର୍ଜେନ୍ସି'ରେ ଅଟକବନ୍ଦ |
| — ନଭେମ୍ବର ୨୩ | —ଅସୁସ୍ଥତା ହେତୁ କାରାମୁକ୍ତ |
| ୧୯୮୪ ଜୁନ୍ ୨୪ | —ବାଜିରାଉତ ଛାତ୍ରାବାସସ୍ଥ କୁଡ଼ିଆଘରେ ମୃତ୍ୟୁ |

# ମାନବିକତାର ଅଭୁଲା ପ୍ରତୀକ

## ଗୋପୀନାଥ ମହାନ୍ତି

ନବକୃଷ୍ଣ ଚୌଧୁରୀ ଗୋପବନ୍ଧୁ ଚୌଧୁରୀଙ୍କ ସାନ ଭାଇ, କଟକର ଜଣେ ବରିଷ୍ଠ ଓକିଲ, ତାଙ୍କ ସମୟର ଜଣେ ନେତା ଓ ଧନୀ ଜମିଦାର ଗୋକୁଳାନନ୍ଦ ଚୌଧୁରୀଙ୍କ ପୁଅ । ସେ ୨୩-୧୧-୧୯୦୧ ରେ କଟକ ଜିଲ୍ଲାର ଜଗତ୍‌ସିଂହପୁର ପାଖ ଖେରସ୍‌ରେ ଜନ୍ମ ହୋଇଥିଲେ ଓ ୨୪-୬-୧୯୮୪ ରେ ଅନୁଗୁଳରେ ପ୍ରାଣତ୍ୟାଗ କଲେ । ସେ ଜଣେ ଆଦର୍ଶ ମନୁଷ୍ୟ, ଆଦର୍ଶ ଦେଶସେବକ ଓ ଆଦର୍ଶ ନେତା ଥିଲେ । ସେ ନିଜ ବିଶ୍ୱାସରେ ଓ ଆଚରଣରେ ମୁକ୍ତ, ଉଦାର, ସ୍ୱାଧୀନ ଓ ନିର୍ଭୀକ ଥିଲେ । ଆଜୀବନ ଦରିଦ୍ର ଶୋଷିତ ଜନଶ୍ରେଣୀର ବନ୍ଧୁ ଓ ପ୍ରତିନିଧି ଥିଲେ ଏବଂ ଅନ୍ୟାୟ, ଶୋଷଣ, ଅତ୍ୟାଚାର ବିରୁଦ୍ଧରେ ସଂଗ୍ରାମ କରୁଥିଲେ । ସେ ନିଜ ଜୀବନରେ ଅଟଳ ଥିଲେ । ଆଦର୍ଶ ଆତ୍ମତ୍ୟାଗୀ ଥିଲେ, ଭୋଗବିଳାସହୀନ ସରଳ ନିରାଡ଼ମ୍ବର ଶ୍ରମକ୍ଳିଷ୍ଟ ଜୀବନଯାପନ କରୁଥିଲେ । ସେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥିଲା ବେଳେ ସୁଦ୍ଧା ତହିଁରେ ବ୍ୟତିକ୍ରମ ନ ଥିଲା । ସେ ନିଜର ଜନ୍ମଗତ ଶ୍ରେଣୀ, ଜାତି, ଧର୍ମ ଆଦି କୌଣସି ସଂକୀର୍ଣ୍ଣ ଗଣ୍ଡିରେ ଆବଦ୍ଧ ନ ଥିଲେ । ସମଗ୍ର ମାନବ ସମାଜ ହିଁ ତାଙ୍କ ସମାଜ ଥିଲା ।

କଟକ ପ୍ୟାରୀମୋହନ ଏକାଡେମୀରେ ସ୍କୁଲ ପାଠ ସାରି ରେଭେନ୍‌ସା କଲେଜରେ ପଢ଼ିଥିଲେ । ଆଇ.ଏ. ପାସ୍ କରି ବି.ଏ. ପଢ଼ୁଥିଲେ । ଏତିକିବେଳେ ୧୯୨୧ ରେ ସେ କଂଗ୍ରେସ ଆନ୍ଦୋଳନରେ ଯୋଗ ଦେଲେ ଓ ଜେଲ୍ ଗଲେ । ଜେଲ୍‌ରୁ ଖଲାସ ହୋଇ ୧୯୨୩ ରେ ସେ ଶାନ୍ତିନିକେତନ ଗଲେ ଓ ସେଠି କଲେଜରେ ପଢ଼ିଲେ । ସେହି ସମୟରେ ସେଠି ଆଉ ଜଣେ ଛାତ୍ରୀ ଜଣେ ବଙ୍ଗୀୟ ଯୁବତୀ କୁମାରୀ ମାଳତୀ ସେନ୍‌ଙ୍କୁ ସେ ବିଭା ହେବାକୁ ମନସ୍ଥ କଲେ । ସେମାନେ ଭାଷା, ଜାତି ଆଦି ସଂସ୍କାରରେ ବିଶ୍ୱାସ କରୁ ନ ଥିଲେ । ସେ ମା'ଙ୍କର କି ବନ୍ଧୁବାନ୍ଧବଙ୍କର ସମର୍ଥନ ପାଇଲେ ନାହିଁ; କିନ୍ତୁ ବଡ଼ଭାଇ ଓ ଭାଉଜ ଶ୍ରୀମତୀ ରମା ଦେବୀଙ୍କ ସମର୍ଥନ ପାଇଲେ । ୧୯୨୩-୨୪ ଯାଏ ଦୁହେଁ ସେ ଓ ଶ୍ରୀମତୀ ମାଳତୀ ଦେବୀ ମହାତ୍ମାଙ୍କ ସାବରମତୀ ଆଶ୍ରମରେ ଶିକ୍ଷା ଲାଭ କଲେ । ପରେ ୧୯୨୭ ରେ ସେମାନଙ୍କର ବିବାହ ନିଷ୍ପନ୍ନ ହେଲା ।

ସେମାନେ ଫେରିଆସି ଜଗତ୍‌ସିଂହପୁର ଅଞ୍ଚଳର ଅଣଶିଆ ପାଖ ଭରିକୁନ୍ଦ ଗ୍ରାମରେ ରହିଲେ । ସେଠି ତାଙ୍କର କିଛି ପୈତୃକ ଜମି ଥିଲା । ସାଧାରଣ ଶ୍ରମିକଙ୍କ ପରି ବସ୍ତ୍ର ଖଟି ସେମାନେ ଅନ୍ୟମାନଙ୍କୁ ଭେଳେଇ ସେଠି ଗୋଟିଏ ଆଦର୍ଶ ଫାର୍ମ୍ କରି ରହିଲେ । ସେମାନେ ସେଠି ରହି ଗାଁ ଗାଁ ବୁଲି କଂଗ୍ରେସ ଆନ୍ଦୋଳନ ବାର୍ତ୍ତା ପ୍ରଚାର କରୁଥାନ୍ତି । ଧନୀ, ଜମିଦାର, ଶୋଷକଙ୍କ ବିରୁଦ୍ଧରେ ପ୍ରଚାର କରନ୍ତି ଓ ବିଶେଷତଃ ଚାଷୀ, ମୂଲିଆ, ଛୋଟଜାତି, ହରିଜନ ଆଦିଙ୍କ ସଙ୍ଗେ ଅନ୍ତରଙ୍ଗ ହୋଇ ମିଶି ଶୋଷକଙ୍କ ବିରୁଦ୍ଧରେ ସେମାନଙ୍କୁ ସଂଗଠିତ କରୁଥାନ୍ତି । ସେମାନଙ୍କ ଭୟ ଦୂର କରୁଥାନ୍ତି ଓ ସେମାନଙ୍କୁ ନୂଆ ଚେତନାରେ ଉଦ୍‌ବୁଦ୍ଧ କରୁଥାନ୍ତି । ସେ ଓଡ଼ିଶାରେ କମ୍ୟୁନିଜିମ୍‌ର ଆଦ୍ୟ ସଙ୍ଗଠକ ଓ ନେତାମାନଙ୍କ ଭିତରେ ଅନ୍ୟତମ । କାଳକ୍ରମେ ୧୯୩୪ ରେ ସେ କଂଗ୍ରେସ-ସୋସିଆଲିଷ୍ଟ ଦଳର ଓଡ଼ିଶାରେ ଅନ୍ୟତମ ପ୍ରତିଷ୍ଠାତା ହେଲେ । ଅଣଶିଆର ଭରିକୁନ୍ଦ ଫାର୍ମ୍ କରିଆରେ ସେ ଅଞ୍ଚଳରେ ସେ ଉନ୍ନତ ଓ ଲାଭଜନକ ଚାଷର ପ୍ରବର୍ତ୍ତନ କଲେ । କୋବି, ବିଲାତି ବାଇଗଣ, ମଟର, ଆଳୁ ଆଦି ପରିବା ନୂଆ ହୋଇ ତାହାର ମାଧ୍ୟମରେ ଢେର ପ୍ରଚାର ପାଇଲା ।

୧୯୩୦ ରେ ସେ ବାଲେଶ୍ୱର ଜିଲ୍ଲାରେ ଚୌକିଦାରି ଟିକସ ଦେବା ବିରୁଦ୍ଧରେ ଆନ୍ଦୋଳନ କଲେ ଓ ଜେଲ୍ ଗଲେ ।

କଂଗ୍ରେସ ସାମ୍ୟବାଦୀ ଦଳର ଅନ୍ୟତମ ପ୍ରତିଷ୍ଠାତା ହୋଇ ସେ 'ସାରଥି' ପତ୍ରିକାର ସମ୍ପାଦନା କରୁଥିଲେ ।

ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେଲା ପରେ ୧୯୩୭ ରେ ସେ କଂଗ୍ରେସ ପକ୍ଷରୁ ଓଡ଼ିଶା ଆସେମ୍ବ୍ଲିର ସଭ୍ୟ ନିର୍ବାଚିତ ହେଲେ । ସେତେବେଳେ କଂଗ୍ରେସ ସାମ୍ୟବାଦୀ ଦଳ ନିଷ୍ପତ୍ତି ନେଇଥିଲା ଯେ ତା'ର ସଭ୍ୟମାନେ ମନ୍ତ୍ରିତ୍ୱ ଆଦି ପଦପଦବୀରେ ରହିବେ ନାହିଁ, ତେଣୁ ସେ ମଧ୍ୟ ସେଭଳି ପଦପଦବୀ ଗ୍ରହଣ କଲେ ନାହିଁ; କିନ୍ତୁ ପ୍ରଧାନତଃ ତାଙ୍କର ଗ୍ରୁପ ଫଳରେ ଶ୍ରୀ ବିଶ୍ୱନାଥ ଦାସଙ୍କ ମନ୍ତ୍ରିମଣ୍ଡଳର ଶାସନ ବେଳେ ପ୍ରଜାମାନେ ନିଜ ଜମି ଉପରେ ଗଛ ମାଛ ଅଧିକାର ପାଇଲେ ।

୧୯୩୮ ରେ ଢେଙ୍କାନାଳ ଓ ତାଳଚେର ରାଜା ଦ୍ୱୟଙ୍କ ଅତ୍ୟାଚାର ବିରୁଦ୍ଧରେ ଶ୍ରୀ ସାରଙ୍ଗଧର ଦାସଙ୍କ ସହିତ ସେ ଗଡ଼ଜାତ ପ୍ରଜାମଣ୍ଡଳର ନେତୃତ୍ୱ ନେଇଥିଲେ ଓ ସେଥିପାଇଁ ଅକ୍ଳାନ୍ତ ପରିଶ୍ରମ କରିଥିଲେ ।

ସେତେବେଳେ ଯେଉଁମାନେ ସେହି ଆନ୍ଦୋଳନ କରି ସର୍ବସ୍ୱାନ୍ତ ହେଲେ କି ଜେଲ୍ ଗଲେ, ସେମାନଙ୍କ ପରିବାର ଓ ସନ୍ତାନମାନଙ୍କୁ ଆଶ୍ରୟ ଦେବା ପାଇଁ ଏବଂ ସେମାନଙ୍କ ରକ୍ଷଣାବେକ୍ଷଣ, ଶିକ୍ଷା ଆଦି ବନ୍ଦୋବସ୍ତ ପାଇଁ ସେ ଅନୁଗୁଳରେ ଜମି ନେଇ "ବାଜିରାଉତ ଛାତ୍ରାବାସ" ପ୍ରତିଷ୍ଠା କରିଥିଲେ । କାଳକ୍ରମେ ଆଦିବାସୀ, ହରିଜନ ଓ ଶୋଷିତ ଅତ୍ୟାଚାରିତବର୍ଗଙ୍କ ଦୁର୍ଦ୍ଦଶା ନିରାକରଣ ଉଦ୍ଦେଶ୍ୟରେ ସେଠି ଅନ୍ୟ କେତେପସ୍ତ ଓ ସେ ମିଶି ଉତ୍କଳ ନବଜୀବନ ମଣ୍ଡଳ ପ୍ରତିଷ୍ଠା କଲେ । ତାହା ଏକ ଅଦ୍ୱିତୀୟ କର୍ମକେନ୍ଦ୍ର ଓ କର୍ମସଂସ୍ଥା ହୋଇ ରହିଆସିଛି । ତାହା ମଧ୍ୟ ହେଲା ତାଙ୍କର ଓ ପୂଜ୍ୟା ମାଳତୀ ଦେବୀଙ୍କ କର୍ମକେନ୍ଦ୍ର । ସେହିମାନେ ତା'ର ମୁଖ୍ୟ ପ୍ରେରଣାଦାତା ଓ ସଞ୍ଚାଳକ ।

ଉତ୍କଳ ନବଜୀବନ ମଣ୍ଡଳର ମହିଳା ଓ ପୁରୁଷ କର୍ମୀମାନେ ନାନା ବିପଦ ଓ ଦୁଃଖକଷ୍ଟ ବରଣ କରି ଅସୀମ ତ୍ୟାଗ ସ୍ୱୀକାର କରି ଓଡ଼ିଶା ସାରା ଅଗମ୍ୟ ବଣ ପାହାଡ଼ରେ ରହି ଆଦିବାସୀଙ୍କ ଶୋଷଣ ନିରାକରଣ ଓ ସେମାନଙ୍କ ବିଭିନ୍ନ ସମସ୍ୟାରେ ସେମାନଙ୍କୁ ସାହାଯ୍ୟ କରିଆସିଛନ୍ତି, ତାଙ୍କର ସେବା କରିଆସିଛନ୍ତି ।

୧୯୪୦ ରେ ସେ ବ୍ୟକ୍ତିଗତ ସତ୍ୟାଗ୍ରହ କରି ୮ ମାସ ଜେଲ୍ ଗଲେ । ଅଗଷ୍ଟ ୧୯୪୨ ରେ ଭାରତ ଛାଡ଼ ଆନ୍ଦୋଳନ ବେଳେ ପୁଣି ସେ ଜେଲ୍ ଗଲେ ଓ ୧୯୪୫ ରେ ଖଲାସ ହେଲେ ।

୧୯୪୬ ରେ ପୁଣି ସେ କଂଗ୍ରେସ ତରଫରୁ ଓଡ଼ିଶା ଆସେମ୍ବ୍ଲିର ସଭ୍ୟ ନିର୍ବାଚିତ ହେଲେ । ଡ. ହରେକୃଷ୍ଣ ମହତାବଙ୍କ ଅନ୍ତର୍ବର୍ତ୍ତୀ ମନ୍ତ୍ରିମଣ୍ଡଳରେ ସେ ଓଡ଼ିଶାର ରାଜସ୍ୱ ମନ୍ତ୍ରୀ ହେଲେ । ସେ ଓଡ଼ିଶାରେ ଯାନ୍ତ୍ରୀ ପରିବହନ ବ୍ୟବସ୍ଥାର ଜାତୀୟକରଣ କରାଇଲେ । ସେ ରାଜସ୍ୱ ଓ ଭୂସ୍ୱତ୍ୱ କମିଟିର ଚେୟାରମ୍ୟାନ୍ ହୋଇ ଜମିଦାରୀ ପ୍ରଥାର ବିଲୋପ ପାଇଁ ସୁପାରିଶ୍ କଲେ । ସେ ଶାସନର ବିକେନ୍ଦ୍ରୀକରଣ ପାଇଁ 'ଅଞ୍ଚଳ ଶାସନ' ବ୍ୟବସ୍ଥା ପ୍ରତିଷ୍ଠା କରାଇଲେ । ଏଗୁଡ଼ିକ ଥିଲା ତତ୍କାଳୀନ ଭାରତରେ ଅତ୍ୟନ୍ତ ସାହସିକ ଓ ଅଗ୍ରଗାମୀ ପଦକ୍ଷେପ ।

ଦୁର୍ଭାଗ୍ୟକୁ ୧୯୪୮ ରେ ତାଙ୍କର ଏକମାତ୍ର ପୁତ୍ରର କିଶୋର ବୟସରେ ଅକାଳ ବିୟୋଗ ଘଟିଲା ଓ ସେ ମନ୍ତ୍ରିତ୍ୱରୁ ଇସ୍ତଫା ଦେଇ ଅନୁଗୁଳ ବାଜି ରାଉତ ଛାତ୍ରାବାସରେ କାଳାତିପାତ କଲେ ।

ଡ: ମହତାବ ୧୯୪୬ ରୁ ୧୯୫୦ ଯାଏଁ ମୁଖ୍ୟମନ୍ତ୍ରୀ ଥିଲେ ଓ ପୁଣି ୧୯୪୮ ନିର୍ବାଚନରେ ମୁଖ୍ୟମନ୍ତ୍ରୀ ହେଲେ । କଂଗ୍ରେସ୍ 'ହାଇ କମାଣ୍ଡ'ଙ୍କ ପରାମର୍ଶ ଅନୁସାରେ ସେ ୧୯୫୦ ମେ' ୧୨ ତାରିଖରେ ଇସ୍ତଫା ଦେଲେ ।

ପଣ୍ଡିତ ନେହେରୁଙ୍କ ଅନୁରୋଧରେ ଡ: ମହତାବଙ୍କ ପରେ ଶ୍ରୀ ନବକୃଷ୍ଣ ଚୌଧୁରୀ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେଲେ । ୧୯୫୨ ନିର୍ବାଚନ ପରେ ମଧ୍ୟ ସେ ପୁଣି ମୁଖ୍ୟମନ୍ତ୍ରୀ ରହିଲେ; କିନ୍ତୁ କ୍ରମେ କଂଗ୍ରେସ୍ ଅନୁଷ୍ଠାନ ଉପରୁ ତାଙ୍କର ଆସ୍ଥା ତୁଟିଥାଏ । ସେ ସର୍ବୋଦୟ ଓ ଭୂଦାନ ଆଡ଼କୁ ବେଶି ବେଶି ଆଗ୍ରହ ଦେଖାଉଥାନ୍ତି । ବାରମ୍ବାର ଇସ୍ତଫା ଦେବାକୁ ଚାହୁଁଥାନ୍ତି ଓ ଅନ୍ୟମାନଙ୍କ ଅନୁରୋଧ କ୍ରମେ ଅଟକୁଥାନ୍ତି । ଶେଷରେ ସେ ୧୯.୧୦.୫୬ ରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେଇ ଚାଲିଗଲେ । ସେ ଏକାଦିକ୍ରମେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥିଲେ ୧୨.୫.୫୦ ରୁ ୧୯.୧୦.୫୬ ଏକାଦିକ୍ରମେ ଏତେକାଳ ଓଡ଼ିଶାରେ କେହି ମୁଖ୍ୟମନ୍ତ୍ରୀ ରହିନାହାନ୍ତି । ସେ ୧୯୫୧ ରୁ ୧୯୫୬ ଯାଏ କଂଗ୍ରେସ ଓ୍ୱାର୍କିଂ କମିଟିର ମେମ୍ବର ଥିଲେ । ୧୯୫୧ ପୂର୍ବରୁ ମଧ୍ୟ ବହୁ ଦୀର୍ଘକାଳଠାରୁ ସେ ନିଖିଳ ଭାରତ କଂଗ୍ରେସ କମିଟିର ମେମ୍ବର ଥିଲେ ।

ତାଙ୍କ ବଡ଼ ଭାଇ ପୂଜ୍ୟ ଗୋପବନ୍ଧୁ ଚୌଧୁରୀ ବିଶୁଦ୍ଧ ଗାନ୍ଧୀବାଦୀ ଥିଲେ ଓ ଗାନ୍ଧୀଜୀଙ୍କ ପରି ତାଙ୍କ ରଚନାତ୍ମକ କର୍ମକୁ ହିଁ ପ୍ରାଧାନ୍ୟ ଦେଉଥିଲେ । ସେ କେବେ କଂଗ୍ରେସର କ୍ଷମତା ରାଜନୀତିରେ ପଶି ନାହାନ୍ତି କି ଏମ୍.ଏଲ୍.ଏ. ହେବାକୁ ମଧ୍ୟ ଲୋଡ଼ି ନାହାନ୍ତି; କିନ୍ତୁ ଅନ୍ତତଃ ୧୯୫୭ ପୂର୍ବରୁ ପୂଜ୍ୟ ନବବାବୁଙ୍କର ବିଶ୍ୱାସ ଥିଲା ଯେ ଶାସନ କାର୍ଯ୍ୟରେ ଅଂଶ ଗ୍ରହଣ କଲେ, ତାହା ଜରିଆରେ ଦୁଃଖୀ ଦରିଦ୍ର, ଅତ୍ୟାଚରିତଙ୍କର ନାନା ସମସ୍ୟାର ନିରାକରଣ କରି ହେବ । ଗାନ୍ଧୀଜୀଙ୍କ ପଦାଙ୍କ ଅନୁସରଣ କରି ପୂଜ୍ୟ ଗୋପବନ୍ଧୁ ଚୌଧୁରୀଙ୍କର ବିଶ୍ୱାସ ଥିଲା ଯେ ଦେଶର ସମସ୍ୟା ନିରାକରଣ ପାଇଁ ମୌଳିକ କ୍ଷେତ୍ର ହିଁ କର୍ମଭୂମି, ଯେଉଁ ଗାଁ ଗହଳରେ ସାଧାରଣ ମଲିମୁଣ୍ଡିଆ, ଦେଶର ଜନସମାଜର ମୁଖ୍ୟ ରହିଛନ୍ତି । ଉପାୟ ହେଉଛି ସର୍ବୋଦୟ ଓ ସେହି ମାଧ୍ୟମରେ ବିବିଧ ରଚନାତ୍ମକ କର୍ମ, ଅହିଂସ, ସ୍ୱାବଲମ୍ବୀ, ବିକେନ୍ଦ୍ରିତ, ଶୁଦ୍ଧ-ଚରିତ୍ର ସମାଜ ପ୍ରତିଷ୍ଠିତ ହେବ, ସତ୍ୟ ଓ ଅହିଂସା ବ୍ୟକ୍ତିଠାରେ ଓ ସମାଜରେ ପ୍ରତିଷ୍ଠିତ ହେବ, ତେବେ ଯାଇ ଦେଶର ସମସ୍ୟାମାନଙ୍କର ସମାଧାନ ହେବ । ବସ୍ତୁତଃ ୧୯୪୭ ପରେ ଶାସକ କଂଗ୍ରେସଗୋଷ୍ଠୀ ସହିତ ସର୍ବୋଦୟବାଦୀମାନଙ୍କର ମତାନ୍ତର ବଢ଼ି ବଢ଼ି ଚାଲିଥିଲା ଓ ସେମାନେ ଦିନୁ ଦିନ ଦେଖି ନିରାଶ ହେଉଥିଲେ ଯେ ଶାସକ କଂଗ୍ରେସ ଗାନ୍ଧୀ ନୀତିରୁ ଓହରି ଯାଉଛି, ବଦଳି ବଦଳି ଯାଉଛି, ଦେଶରେ ଅଶାନ୍ତି ବଢ଼ି ବଢ଼ି ଚାଲିଛି । ସ୍ୱାଧୀନତା ଫଳରେ ସାଧାରଣ ଲୋକର ଦୁରବସ୍ଥା ସୁଧୁରିବା ପରିବର୍ତ୍ତେ ଆହୁରି ଅଭାବ ଆହୁରି ସମସ୍ୟା ଆହୁରି ଦୁର୍ଦ୍ଦଶା ଦେଖାଯାଉଛି । ଇସ୍ତଫା ଦେଲା ବେଳକୁ ଶ୍ରୀ ନବକୃଷ୍ଣ ଚୌଧୁରୀ ମଧ୍ୟ ଏହି ସିଦ୍ଧାନ୍ତରେ ପହଞ୍ଚି ସାରିଥିଲେ; ଯେଉଁଥି ପାଇଁ ତାଙ୍କର ବିରକ୍ତି ଓ ଇସ୍ତଫା । ସେ ମୁଖ୍ୟମନ୍ତ୍ରୀ ଥିଲାବେଳେ ମଧ୍ୟ ବିନୋବାଜୀଙ୍କ ଭୂଦାନ ପନ୍ଥାକୁ ସମର୍ଥନ କରୁଥିଲେ । ସେ ଆଜୀବନ ନିଜ ଆଗ୍ରହରେ ସର୍ବୋଦୟର ମୌଳିକ ବିଷୟକୁ ଭଲ ପାଉଥିଲେ, ନିଜେ ସେହିପରି ଚାଲୁଥିଲେ । ସବୁଦିନେ ସେ ନିଷ୍ଠାପରଭାବେ ସଚ୍ଚୋଟ, ସବୁଦିନେ ସେ ଅତି ସରଳ ନିରାଡ଼ମ୍ବର ଜୀବନଯାପନ କରୁଥିଲେ ବିଳାସବ୍ୟସନଠୁଁ ବହୁ ଦୂରରେ । ମଲିମୁଣ୍ଡିଆଙ୍କ ସଙ୍ଗେ ମଲିମୁଣ୍ଡିଆ, ଯେପରି ଦେଶର ସବୁଠୁ ଦୀନ, ଅବହେଳିତ, ଦରିଦ୍ର, ନିମ୍ନତମ ବ୍ୟକ୍ତିଙ୍କ ଭିତରୁ ସେ ଜଣେ । ଯେକୌଣସି ଚାଷୀ, ମୂଲିଆ, ହରିଜନଠୁଁ ଅଭିନ୍ନ । ସେ ଏ ଦୀକ୍ଷା ନେଇଥିଲେ ୧୯୨୧ ରୁ, ମୁଖ୍ୟମନ୍ତ୍ରୀ ଥିଲାବେଳେ ବି ସେହିପରି ଯେକୌଣସି 'ବାଦ' ଅପେକ୍ଷା ତାଙ୍କ ପକ୍ଷରେ ପ୍ରିୟତର ଥିଲା ନିଜ ବିଷୟରେ କୌଣସି ମୌଳିକ ଶ୍ରେଷ୍ଠ କୌଶଳ ଯହିଁରେ ଦୁଃଖୀ ଦରିଦ୍ରଙ୍କ ସମସ୍ୟାର ଶୁଭ ସମାଧାନ ହୋଇପାରିବ, ସେହି ଉପାୟ ସେ ଖୋଜି ଲାଗିଥିଲେ । ଅବହେଳିତ ଜନଗଣ ହିଁ ତାଙ୍କ ଦେବତା । ତେଣୁ କୌଣସି ଏକ ମତବାଦରେ ସେ ବନ୍ଧା ନ ଥିଲେ, ବିଚାରକୁ ମୁକ୍ତ ରଖିଥିଲେ । ସେ କଂଗ୍ରେସମ୍ୟାନ, ଗାନ୍ଧୀବାଦୀ, ଅଥଚ ସେ ଓଡ଼ିଶାରେ କଂଗ୍ରେସ-ସାମ୍ୟବାଦୀ ଦଳର ପ୍ରତିଷ୍ଠାତା । କମ୍ୟୁନିଜିମ୍‌ର ବିପ୍ଳବ ଓ ମାନବବାଦ ତାଙ୍କୁ ଆକୃଷ୍ଟ କରିଥିଲା; କିନ୍ତୁ ଏକଚ୍ଛତ୍ରବାଦ ନୁହେଁ । ସେ ଅହିଂସାକୁ ନୀତି ହିସାବରେ ଗ୍ରହଣ କରିଥିଲେ, କିନ୍ତୁ ଅନୀତି, ଅତ୍ୟାଚାର, ଶୋଷଣ ଦେଖିଲେ ସେ ବିପ୍ଳବରେ ଜଳି ଉଠୁଥିଲେ । ନିଜର ଭଲ ମନ୍ଦକୁ ସେ ଖାତିର କରୁ ନ ଥିଲେ । ମୋଟାମୋଟିରେ ତାଙ୍କ ଛବି ଫୁଟି ଉଠେ ଏକ ମହାନ୍ ମାନବପ୍ରେମୀ ମାନବବାଦୀ ସରଳ ଆତ୍ମତ୍ୟାଗୀ ସ୍ୱାଧୀନ ମୁକ୍ତଚେତା ବିପ୍ଳବୀ ରୂପରେ । କାର୍ଯ୍ୟରେ ସେ କୁଶଳୀ ଥିଲେ, କିନ୍ତୁ ଆଦର୍ଶବାଦୀ ଥିଲେ ଗୋଟାପଣେ ।

୧୨-୫-୫୦ ରୁ ୧୯-୧୦-୫୬ ପର୍ଯ୍ୟନ୍ତ ସେ ଓଡ଼ିଶାରେ ମୁଖ୍ୟମନ୍ତ୍ରୀ ଥିଲେ । ତାଙ୍କ ନେତୃତ୍ୱରେ ସେତେବେଳେ ଓଡ଼ିଶାରେ ଯେଉଁ କେତେକ ସ୍ମରଣୀୟ ଘଟଣା ଘଟିଥିଲା, ତହିଁରେ ଥିଲା :

(୧) ଓଡ଼ିଶାରେ ଜମିଦାରୀ ଉଚ୍ଛେଦ

(୨) ଓଡ଼ିଶା ଭାଗଚାଷ ଆଇନ, ଭାଗଚାଷୀ ପାଇବ ଫସଲର ୨/୩ ଭାଗ

(୩) ଭୂସଂସ୍କାର ପାଇଁ ପ୍ରାଥମିକ ବ୍ୟବସ୍ଥା

(୪) ଓଡ଼ିଶା 'ଅଞ୍ଚଳ ଶାସନ ଆଇନ'

(୫) ୧୯୫୨ ରେ "ଓଡ଼ିଶା ଅଫିସିଆଲ୍ ଲାଙ୍ଗୁଏଜେସ୍ ଆକ୍ଟ" ଯହିଁରେ ଓଡ଼ିଆକୁ ସରକାରୀ ଭାଷା ବୋଲି ଘୋଷଣା କରାଗଲା । ଅବଶ୍ୟ ନାନା ସମସ୍ୟା ଓ ନାନା କାରଣ ଯୋଗୁଁ ତାହା ଏପର୍ଯ୍ୟନ୍ତ ସମ୍ପୂର୍ଣ୍ଣଭାବେ କାର୍ଯ୍ୟକାରୀ ହୋଇ ନାହିଁ; କିନ୍ତୁ ସେଥିପାଇଁ ଆଇନ୍ ପ୍ରଣୟନ କରି ପ୍ରଥମ ଉଦ୍ୟମ ତାଙ୍କ ସରକାର ହିଁ କରିଥିଲେ ।

(୬) ରାଉରକେଲାରେ ଷ୍ଟିଲ୍ ପ୍ଲାଣ୍ଟ୍ ବସିବ ବୋଲି କେନ୍ଦ୍ର ସରକାରଙ୍କ ନିଷ୍ପତ୍ତି, ଚିର ଅବହେଳିତ ଓଡ଼ିଶାର ଶିଳ୍ପୀକରଣ ପାଇଁ ଏହା ଏକ ଶୁଭ ଆରମ୍ଭ । ଏଥିପାଇଁ ଶ୍ରୀ ନବକୃଷ୍ଣ ଚୌଧୁରୀ ଓ ତାଙ୍କ ସହକର୍ମୀଙ୍କ ଉଦ୍ୟମ ଅଭିନନ୍ଦନୀୟ ।

ଓଡ଼ିଶାର ମୁଖ୍ୟମନ୍ତ୍ରିତ୍ୱ ଛାଡ଼ିଲା ପରେ ସେ ସମ୍ପୂର୍ଣ୍ଣରୂପେ ଭୂଦାନ ଓ ସର୍ବୋଦୟ ଆନ୍ଦୋଳନରେ ଯୋଗ ଦେଲେ ଏବଂ ଅଜୀବନ ସେହି କାର୍ଯ୍ୟରେ ବ୍ୟାପୃତ ରହିଲେ, ତହିଁରେ ସେ ଥିଲେ ସର୍ବଭାରତୀୟ ସ୍ତରରେ ଅନ୍ୟତମ ନେତା । ୧୯୫୭ରେ ସେ ନିଖିଳ ଭାରତ ସର୍ବସେବା ସଂଘର ସଭାପତି ହେଲେ ।

ନାଗାଲ୍ୟାଣ୍ଡରେ ବିଦ୍ରୋହୀମାନେ ହାଙ୍ଗାମା କରୁଥାନ୍ତି ଓ ଆତଙ୍କପ୍ରଦ ଅରାଜକତା ଭଳି ଅବସ୍ଥା ସୃଷ୍ଟି ହୋଇଥାଏ । ସେତେବେଳେ ବିନୋବାଜୀଙ୍କ ପ୍ରତିନିଧି ହିସାବରେ ସେଠି ସେ ଶାନ୍ତି ଓ ବନ୍ଧୁତା ପୁନଃପ୍ରତିଷ୍ଠା କରିବା ପାଇଁ ନାଗାଲ୍ୟାଣ୍ଡ୍ ଅଭ୍ୟନ୍ତରରେ ଘୂରିଅଞ୍ଚଳେ ଗସ୍ତ କଲେ ।

ସେ ଅନୁଭବ କଲେ ଯେ ଦରିଦ୍ର ଶୋଷିତ ଆଦିବାସୀ ଓ ହରିଜନମାନଙ୍କ ଦୁର୍ଦ୍ଦଶା ଘୁଞ୍ଚୁ ନାହିଁ । ଭୂସଂସ୍କାର ବିଫଳ ହେଉଛି । ଭୂମି ସମସ୍ୟା ସମାଧାନ ହେଉନାହିଁ କି ଭୂମିହୀନଙ୍କୁ ଭୂମି ମିଳୁନାହିଁ, କି ପ୍ରଚଳିତ ସ୍ଥିତାବସ୍ଥାରେ ଏଥିପାଇଁ କିଛି ଉପାୟ ଦିଶୁନାହିଁ । ସେ ସରକାରୀ ବ୍ୟବସ୍ଥା ପ୍ରତି ସମ୍ପୂର୍ଣ୍ଣ ଅଥିର ହୋଇଗଲେ ଓ କ୍ଷୁବ୍ଧ ହୋଇ ଉଠିଲେ । ଏହିପରି ଅବସ୍ଥାରେ ୧୯୬୦ ରୁ ସେ ନକ୍ସଲପନ୍ଥୀମାନଙ୍କ ପ୍ରତି ସହାନୁଭୂତିଶୀଳ ହେଲେ, ସେମାନଙ୍କ ହିଂସାମାର୍ଗ ପ୍ରତି ନୁହେଁ । ଶୋଷିତ ଦୁଃଖୀ-ଦରିଦ୍ରଙ୍କ ସହିତ ସେମାନଙ୍କ ଏକନିଷ୍ଠ ଏକାତ୍ମତା ଯୋଗୁଁ ଓ ସେହିମାନଙ୍କ ସମସ୍ୟା ନିରାକରଣ ଉଦ୍ଦେଶ୍ୟରେ ନକ୍ସଲପନ୍ଥୀମାନଙ୍କ ଆତ୍ମତ୍ୟାଗ ଓ ଆତ୍ମବଳି ଯୋଗୁଁ ।

ଶ୍ରୀ ଜୟପ୍ରକାଶ ନାରାୟଣଙ୍କ ଅନୁରୋଧକ୍ରମେ ୧୯୭୪ରେ ସେ ଓଡ଼ିଶାରେ କଂଗ୍ରେସ ଶାସନ ବିରୁଦ୍ଧରେ ବିରୋଧୀଦଳ-ମାନଙ୍କ ଆନ୍ଦୋଳନର ନେତୃତ୍ୱ ନେଇଥିଲେ । ୧୯୭୫ରେ 'ଏମର୍ଜେନ୍ସି' ଜାରି ହେଲାବେଳେ ତାଙ୍କୁ ୧୭ ମାସ ପର୍ଯ୍ୟନ୍ତ ଜେଲ୍‌ରେ ଅଟକବନ୍ଦୀ କରି ରଖାଗଲା । ସେହି କାରାବାସ ଭିତରେ ସେ ଗୁରୁତର ଅସୁସ୍ଥ ହୋଇପଡ଼ିଲେ, ତାଙ୍କ ମସ୍ତିଷ୍କରୁ ରକ୍ତସ୍ରାବ ହେଲା ଓ ତେଣୁ ତାଙ୍କୁ ଜେଲ୍‌ରୁ ଖଲାସ କରାଗଲା । ସେହି ସମୟରୁ ତାଙ୍କ ସ୍ୱାସ୍ଥ୍ୟ ଭାଙ୍ଗି ପଡ଼ିଲା । ସେ ସୁସ୍ଥ ହେଲେ, କିନ୍ତୁ ଦୁର୍ବଳ ହୋଇଗଲେ । ବୟସ ଅଶୀ ପାଖ ହୋଇଥାଏ । ସେ ଅନୁଗୁଳ ବାଜି ରାଉତ ଛାତ୍ରାବାସରେ ରହୁଥାନ୍ତି । କେତେ-ବେଳେ ଓଡ଼ିଶାରେ ବା ଭାରତର କେଉଁଅଞ୍ଚଳେ ଗସ୍ତରେ ଯାଉଥାନ୍ତି । ସେ ସର୍ବୋଦୟ ଓ ଭୂଦାନ କାର୍ଯ୍ୟରେ ନେତୃତ୍ୱ ଓ ପରାମର୍ଶ ଦେଉଥାନ୍ତି । ବହୁତ ପଢ଼ନ୍ତି, ଅନ୍ୟମାନଙ୍କ ସଙ୍ଗେ ନାନା ବିଷୟରେ ପରାମର୍ଶ ଓ ଆଲୋଚନା କରନ୍ତି । ସବୁବେଳେ ଚିନ୍ତା କରୁଥାନ୍ତି କିପରି ଦେଶର ଦୁଃଖୀ, ଦରିଦ୍ର, ଶୋଷିତ ଶ୍ରେଣୀର କୃଷି ମୂଲିଆ, ମଲମୁଣ୍ଡିଆଙ୍କର ବିଭିନ୍ନ ସମସ୍ୟାର ସମାଧାନ ହୋଇପାରିବ । ନାନା ବ୍ୟକ୍ତି ତାଙ୍କ ସଙ୍ଗେ ଆଲୋଚନା କରିବା ପାଇଁ ଯାଉଥାନ୍ତି ।

କିନ୍ତୁ ତାଙ୍କ ଶରୀର ଆହୁରି ରୁଗ୍‌ଣ ଓ ଜରାଗ୍ରସ୍ତ ହୋଇଗଲା । ଶେଷରେ ତାଙ୍କୁ ଦାରୁଣ ଆଘାତ ଦେଲା ଯୋଡ଼ିଏ ହଟାଯ଼ମାନ ଯୁବକ ନାତିଙ୍କର ଅକାଳ ମୃତ୍ୟୁ, ଗୋଟିଏ ତାଙ୍କ ସାନ ଝିଅର ପୁଅର ଓ ତା'ପରେ ଆଉଟି ତାଙ୍କ ପୁରୁଣା ସର୍ବୋଦୟ ନେତା ଶ୍ରୀ ମନମୋହନ ଚୌଧୁରୀଙ୍କର ଏକମାତ୍ର ପୁଅର ।

୧୯୮୪ ଜୁନ୍ ୨୪ ତାରିଖ ଆରମ୍ଭ ହେଲେ ରାତି ୨ଟା ୪୫ ରେ ଅନୁଗୁଳ ବାଜିରାଉତ ଛାତ୍ରାବାସରେ ତାଙ୍କର ଦେହାନ୍ତ ହେଲା ।

ନବକୃଷ୍ଣ ଚୌଧୁରୀ ଓଡିଶାର ମୁଖ୍ୟ ମନ୍ତ୍ରୀ ଥିଲା ବେଳେ ୧୯୫୨ରେ ଆଦିବାସୀବହୁଳ କୋରାପୁଟ ଜିଲ୍ଲାର ରାୟଗଡ଼ା ସବ୍‌ଡିଭିଜନ୍‌ର ଗୁଣୁପୁର ତାଲୁକ୍‌ରେ ବ୍ୟାପକ ଓ ସଙ୍ଗଠିତ ଭାବରେ ଆରମ୍ଭ ହୋଇଗଲା ଆଦିବାସୀମାନଙ୍କର "ଭୂ-ସତ୍ୟାଗ୍ରହ ଆନ୍ଦୋଳନ" । ସେ ଅଞ୍ଚଳର ଜନସଂଖ୍ୟାରୁ ଶତକଡ଼ା ମାତ୍ର ୫ ଜଣରୁ ୯ ଜଣ ଥିଲେ ଅଣଆଦିବାସୀ । ୯୧ ରୁ ୯୫ ଥିଲେ ଆଦିବାସୀ । ଅଧିକାଂଶ ହିଁ ସଉରା; କିନ୍ତୁ ସେହି ବିଶାଳ ଆଦିବାସୀଗୋଷ୍ଠୀ ଭିତରୁ ଶତକଡ଼ା ୫ଜଣ କି ୧୦ ଜଣଙ୍କର ଭୂମି ଥିଲା, ଅନ୍ୟମାନେ ଭୂମିହୀନ । ପ୍ରାୟ ସମୁଦାୟ ଭୂମିର ମାଲିକ ହୋଇଯାଇଥିଲେ ମୁଷ୍ଟିମେୟ ଶତକଡ଼ା ୫ ରୁ ୯ ଅଣଆଦିବାସୀ, ତହିଁରୁ

ଅଧିକାଂଶ ବ୍ରାହ୍ମଣ, କ୍ଷତ୍ରିୟ ବା ଶୁଣ୍ଡି ସାହୁକାର । ସେ ଅଞ୍ଚଳରେ ବେଶୀ ଭାଗ ବଂଶଧାରା ନଦୀର ଅବବାହିକା, ଅତ୍ୟନ୍ତ ଉର୍ବର । ତାକୁ କୁହାଯାଏ "ଓଡ଼ିଶାର ଭାତଥାଳି" । ଏକଦା ଜମିଗୁଡ଼ିକ ଆଦିବାସୀମାନଙ୍କ ପୂର୍ବପୁରୁଷଙ୍କର ହିଁ ଥିଲା । କାଳକ୍ରମେ ନାନା ଉପାୟରେ ଓ କୌଶଳରେ ସେଗୁଡ଼ିକ ହସ୍ତାନ୍ତରିତ ହୋଇଯାଇଥିଲା । ଆଦିବାସୀଗୁଡ଼ିକ ଥିଲେ ଶିଶୁ ପରି ସରଳ ଓ ସରଳ-ବିଶ୍ୱାସୀ, ଅଜ୍ଞ, ନିରକ୍ଷର, ଛନ୍ଦମନ୍ଦ କୁଟିଳତା ଭିତରେ ପଶି ପାରି ନ ଥିଲେ । ଅଧିକାଂଶଙ୍କ ଦୁର୍ବଳତା ଥିଲା ମଦ୍ୟ ପ୍ରତି ଆସକ୍ତି, ଚତୁର କନ୍ଧବଣିକମାନେ ତାହାର ସୁଯୋଗ ନେଇଥିଲେ । ଭୂମିର ମାଲିକ ହେଲେ ଅଣଆଦିବାସୀ; କିନ୍ତୁ ଜମିମାଲିକର ମୂଲିଆ, ଖମାରୀ (କୋଠିଆ), ଭାଗଚାଷୀ ଆଦି ହୋଇ ଜମି 'ମରାମତି' ଓ କୃଷିକାର୍ଯ୍ୟ କରୁଥିଲେ ଆଦିବାସୀ; କିନ୍ତୁ ଅଣଆଦିବାସୀ-ମାନଙ୍କର ସେମାନଙ୍କ ପ୍ରତି ଏଡ଼େ ନିଷ୍ଠୁର ଓ ଶଠତାପୂର୍ଣ୍ଣ ଆଚରଣ ଥିଲା ଯେ ସେମାନେ ନ୍ୟାଯ୍ୟ ପ୍ରାପ୍ୟରୁ ବଞ୍ଚିତ ହେଉଥିଲେ, ଅତି ଦରିଦ୍ର ରହି ଭୋକରେ ଛଟପଟ ହେଉଥିଲେ । ଭୂମିହୀନ ଆଦିବାସୀମାନଙ୍କ ମଧ୍ୟରୁ ଅଧିକାଂଶ ହିଁ ଥିଲେ ମୂଲିଆ । ସେମାନେ ମୂଲ ଲାଗିବା ଭଳି କୃଷିକାର୍ଯ୍ୟ ଛଡ଼ା ଅନ୍ୟ କୌଣସି ସୂତ୍ରରୁ ଚଳିବା ବ୍ୟବସ୍ଥା ତ ନ ଥିଲା । କୃଷିକାର୍ଯ୍ୟରେ ମଧ୍ୟ କେବଳ ଧାନଚାଷରେ ବର୍ଷରେ ୩ ମାସରୁ ୫ ମାସ ସେମାନଙ୍କୁ ମୂଲ ମିଳୁଥିଲା, ତାହା ମଧ୍ୟ ରୁଆ, ବଛା ଓ ଧାନକଟା ବେଳେ । ମୂଲର ପରିମାଣ ଅତି ଅଳ୍ପ ଥିଲା । ସକାଳ ସାଢ଼େ ୬ ଟାରୁ ଦିନ ଗୋଟାଯାକେ ଖଟୁଆଳି ଖଟେଇ କାମ କରାଇ ସାହୁକାରମାନେ ଓଳିଏ ଖୁଆଇ ଦେଉଥିଲେ, ସାଧାରଣତଃ ଓଳିକିଆ ମୂଲିଆ ଲଗାଉଥିଲେ ଓ ସେଥିପାଇଁ ଯାହା ମୂଲ ଦେଉଥିଲେ, ସେତିକ ଧାନରୁ ମିଳୁଥିଲା ପାଖାପାଖି ୬୪ ତୋଳା ଚାଉଳ, ଅଥଚ ଜଣକର ଦିନକ ଖୋରାକ ଲାଗି ୮୦ ତୋଳା ଚାଉଳ ଦରକାର । ତାହାଛଡ଼ା ପୋଷ୍ୟବର୍ଗ ତ ଅଛନ୍ତି । ସୁତରାଂ ସେମାନେ ଦୂରକୁ ଯାଇ ବଣଜଙ୍ଗଲରେ ବୁଲି ବୁଲି ଏଣୁତେଣୁ ଖାଦ୍ୟ ସଂଗ୍ରହ କରୁଥାନ୍ତି । ଆମ୍ବଟାକୁଆ, ତେନ୍ତୁଳି ମଞ୍ଜି, ଶାଳପ ଗଛର ଗୁଣ୍ଡି, ଛତୁ, ନାନା ପ୍ରକାର ମୂଳ (କନ୍ଦା), ଗଛକୁଣ୍ଡା ପତ୍ର ଇତ୍ୟାଦି । କାହାର କାହାର ଅଳ୍ପ ଟିକିଏ ଟିକିଏ ଟିପ ଜମି ଥିଲା । ଆଦିବାସୀଙ୍କ ଭିତରୁ ଶତକଡ଼ା ୮।୧୦ ଭାଗ ଲୋକ ଅଣଆଦିବାସୀ ଭୂମିମାଲିକଙ୍କ ପାଖେ ଖମାରି (କୋଠିଆ) କାମ କରୁଥିଲେ । ସେମାନେ ବର୍ଷଯାକ କାମ କରୁଥାନ୍ତି । ସପ୍ତାହକେ ଥରେ ବା ବର୍ଷକେ ଥରେ ମୂଲ ପାଆନ୍ତି ବର୍ଷକୁ ପାଉଥିଲେ ୨୫ ପୁଟି ଧାନ (ପୁଟିକ ୧ ମହଣ ୨୪ ସେର), ତାହା ମଧ୍ୟ ଅତି ଅଳ୍ପ । ସେତିକ ଆହୁରି ଅଳ୍ପ ହୋଇଯାଏ, କାରଣ ସାହୁକାର ଶସ୍ୟ ଦେଲାବେଳେ ଉଚିତ ଆକାରର ମାଣଠାରୁ ଅନ୍ତତଃ ପାଞ୍ଚ ଭାଗରୁ ଭାଗେ ସାନ, 'ସାନ ମାଣ'ରେ ମାପ କରିଦିଏ, ଓ କାହାଠୁଁ ନେଲାବେଳେ ଉଚିତ ଆକାରର ମାଣଠୁଁ ଅନ୍ତତଃ ପାଞ୍ଚ ଭାଗରୁ ଭାଗେ ବଡ଼, 'ବଡ଼ମାଣ'ରେ ମାପିନିଏ । କରଜ ଦେଲାବେଳେ ଓ ସୁଝାଣ ନେଲେ ବି ସେହିପରି ।

ଆଦିବାସୀଙ୍କ ଭିତରୁ ମାତ୍ର ଶତକଡ଼ା ପାଞ୍ଚ ଭାଗ କି ଛ'ଭାଗ ଲୋକ ଭୂମିମାଲିକମାନଙ୍କ ଜମିକୁ ଭାଗରେ ଚାଷ କରୁଥିଲେ । ଆଇନ ଅନୁସାରେ ୧-୯-୧୯୪୭ ରୁ ଭାଗଚାଷ ଆଇନ ଲାଗୁ ହେଲା । ସେହି ଆଇନ ଅନୁସାରେ ଭାଗଚାଷୀ ଫସଲର ୫ଭାଗରୁ ୩ ଭାଗ ପାଇବା କଥା, ତା ନ କରି ଜମି ମାଲିକମାନେ ଜମିକୁ ଚାଷୀକୁ ଚାଷ କରିବାକୁ ଦେବା ପୂର୍ବରୁ ତାଠୁଁ ସର୍ତ୍ତ କରି ନେଉଥିଲେ ଯେ ଫସଲ ଯାହା ହେଉ କି ନ ହେଉ, ସର୍ତ୍ତରେ ନିର୍ଦ୍ଦିଷ୍ଟ ଥିବା ପରିମାଣ ସେ ଭୂମି ମାଲିକଙ୍କୁ ଦେବ । ତାକୁ 'ଗୁଲ୍ଲା' ପ୍ରଥା କହୁଥିଲେ । ଅନ୍ୟ ଅଞ୍ଚଳର 'ସଞ୍ଜା' ପରି । ପରିମାଣଟା ପ୍ରକୃତ ପ୍ରାପ୍ୟଠୁଁ ବେଶି । ଅନେକ ସମୟରେ ଚାଷୀ ସର୍ବସ୍ୱାନ୍ତ ହେଉଥିଲେ । ଅନ୍ୟ ହିସାବରେ ଫସଲର ଅଧରୁ ବେଶି ଚାଷୀକୁ ଦେଉ ନ ଥିଲେ ଓ ନାନା ବାହାନା କାରଣ ଦେଖାଇ ଚାଷୀର ଭାଗରୁ ଆହୁରି ଥୋଡ଼ାଏ କାଟି ରଖୁଥିଲେ । ଧାନ, ମାଣ୍ଡିଆ କରଜ ଦେଲେ ଶତକଡ଼ା ୪୦।୫୦ ଭାଗ ହାରରେ ସୁଧ ନେଉଥିଲେ । ଟଙ୍କା କରଜ ଦେଲେ ମାସିକିଆ ଟଙ୍କା ଦୁଇ ଅଣା ସୁଧ ହାରରେ ସୁଧ ନେଉଥିଲେ । କରଜ ଓ ସୁଧ ଜରିଆରେ ସେମାନେ ନାନା ଫନ୍ଦି ଫିକର କରି ଆଦିବାସୀମାନଙ୍କୁ ଶୋଷଣ କରୁଥିଲେ ।

ଆଦିବାସୀମାନଙ୍କ ଦୁରବସ୍ଥା ଶୋଚନୀୟ ହୋଇରହିଥିଲା । ତାହା ସହିତ ଶୋଷକ ମୁଷ୍ଟିମେୟ ଅଣଆଦିବାସୀ ଭୂମ୍ୟଧିକାରୀ ସାହୁକାରଙ୍କର ସେମାନଙ୍କ ପ୍ରତି ଥିଲା ଘୃଣା, ଔଦ୍ଧତ୍ୟ, ଅପମାନସୂଚକ ଦୁର୍ବ୍ୟବହାର । ସେହିମାନେ ହିଁ ବାହାର ଲୋକଙ୍କ ଆଖିରେ, ବିଶେଷତଃ ସ୍ଥାନୀୟ କର୍ମଚାରୀଙ୍କ ଦୃଷ୍ଟିରେ ହୋଇଥାନ୍ତି ସେ ଅଞ୍ଚଳର 'ଭଦ୍ରଲୋକ', ବିଶ୍ୱାସଯୋଗ୍ୟଜନ, ମୁଖପାତ୍ର ଓ ଲୋକପ୍ରତିନିଧି । ସେ ଅଞ୍ଚଳର ୯୦ । ୯୫ ଭାଗ ଲୋକ ଯେ ଦରିଦ୍ର, ଶୋଷିତ, ଆଦିବାସୀ, ଅଧିକାଂଶ ସଓରା, ସେମାନେ ନୈରାଶ୍ୟରେ କୁହୁଳୁଥାନ୍ତି । ଏକମାତ୍ର ଦୈବ ହିଁ ସହାୟ । ୧୯୫୧ ରେ ବର୍ଷସାରା ସବଡିଭିଜନ୍‌ରେ ବୃଷ୍ଟିହୀନ ହୋଇଥାଏ । କେତେକ ଅଞ୍ଚଳରେ ଉତ୍କଟ ମରୁଡ଼ି, ଦୁଃଖ ଆହୁରି ବଢ଼ାଇଥାଏ ।

୧୯୩୯-୪୦ ରୁ ଗୁଣୁପୁର ସଓରା ଅଞ୍ଚଳରେ କୁଜେନ୍ଦ୍ର ଗ୍ରାମରେ ଜଣେ ଯୁବକ କର୍ମୀ ଶ୍ରୀ ବିଶ୍ୱନାଥ ପଟ୍ଟନାୟକ ବରିରୁ ଗୋପବନ୍ଧୁ ଚୌଧୁରୀଙ୍କ କର୍ମକେନ୍ଦ୍ରରେ ତାଲିମ ପାଇ ଆସି ଆଦିବାସୀମାନଙ୍କ ଭିତରେ ସୂତାକଟା, ଲୁଗାବୁଣା ସମେତ ନାନା ଗାନ୍ଧିବାଦୀ ରଚନାତ୍ମକ କର୍ମ କରୁଥାନ୍ତି ଓ ନୂତନ ଚେତନା ସଞ୍ଚାର କରୁଥାନ୍ତି । ଆଦିବାସୀଙ୍କ ଶୋଷଣ ଦୂରକରି ସେମାନଙ୍କ ମଦନିଶା ଆଦି ଛଡ଼ାଇବା, ଶିକ୍ଷିତ ଓ ପରିସ୍ଥିତି-ଚେତନ ହେବା, ସ୍ୱାବଲମ୍ବୀ ହେବା, ସେମାନଙ୍କର ଭୟ ଛଡ଼ାଇବା, ସଂଗଠିତ କରିବା ଆଦି କାର୍ଯ୍ୟ ସେ କରୁଥାନ୍ତି । କାଳକ୍ରମେ ଆଉ କେତେ ଜଣ କର୍ମୀ ଆସିଗଲେ ଓ ଆଦିବାସୀଙ୍କ ଭିତରେ କେତେକ କର୍ମୀ ତିଆରି ହେଲେ । ସେମାନେ ଆଦିବାସୀମାନଙ୍କୁ ସଂଗଠିତ କଲେ । ସେମାନଙ୍କ ସମସ୍ୟାଗୁଡ଼ିକ ବିଷୟରେ ବାରମ୍ବାର ସରକାରୀ କର୍ମଚାରୀଙ୍କୁ ଓ ସରକାରଙ୍କୁ ଜଣାଇଲେ; କିନ୍ତୁ ଆଦିବାସୀଙ୍କ ସମସ୍ୟା ସୁଧୁରିଲା ନାହିଁ । ବହୁକାଳରୁ ଆଦିବାସୀମାନେ ବିଭିନ୍ନ ଜମି ତାଙ୍କର ପୈତୃକ ଜମି ବୋଲି ଦାବି କରି ଅଣଆଦିବାସୀ ଭୂମିମାଲିକଙ୍କୁ ତାକୁ ଛାଡ଼ି ଦେବାକୁ କହୁଥାନ୍ତି, କିଛି ଫଳ ହେଉ ନ ଥାଏ । ଶେଷରେ ୧୯୫୬ ରେ ଶ୍ରୀ ବିଶ୍ୱନାଥ ପଟ୍ଟନାୟକଙ୍କ ନେତୃତ୍ୱରେ ଓ କେତେକ ଅନ୍ୟାନ୍ୟ କର୍ମୀଙ୍କ ସହନେତୃତ୍ୱରେ ଆଦିବାସୀମାନେ ଆରମ୍ଭ କଲେ "ଭୂ-ସତ୍ୟାଗ୍ରହ ଆନ୍ଦୋଳନ" । ଯେଉଁ ସବୁ ଜମି ସେମାନଙ୍କ ପୂର୍ବପୁରୁଷଙ୍କର ବୋଲି ସେମାନେ ଦାବି କରୁଥିଲେ, ଭୂମ୍ୟଧିକାରୀଙ୍କୁ, ବିଭିନ୍ନ ସରକାରୀ କର୍ମଚାରୀଙ୍କୁ ନିର୍ଦ୍ଦିଷ୍ଟ ତାରିଖ ଓ ସମୟରେ ସେମାନେ ତାକୁ ଦଖଲ କରିବାକୁ ସେ ଜମିରେ ପଶିବେ ବୋଲି ନୋଟିସ ଦେଇ ବହୁ ସଂଖ୍ୟାରେ ଏକାଠି ହୋଇ ହଳ ଧରି ସେମାନେ ସେପରି ନାନା ଜମିରେ ପଶି ହଳ କରିବାକୁ ଲାଗିଲେ । ଏ ଆନ୍ଦୋଳନ ୧୯୫୬ ର ଅପ୍ରେଲ ମାସରୁ ନାନା ସ୍ଥାନରେ ଆରମ୍ଭ ହୋଇଗଲା । ପୁଲିସ ପହଞ୍ଚିଲେ, ଆଦିବାସୀମାନେ ତାଙ୍କ ଦାବି ଉଠାନ୍ତି, କହନ୍ତି "ବେକ କଟିଗଲେ ବି ଜମି ଛାଡ଼ିବୁ ନାହିଁ, ଜମି ଆମର" । ଗିରଫ କଲେ ବି ଆପତ୍ତି କରନ୍ତି ନାହିଁ । ସେମାନେ ଜେଲ ଯିବାକୁ ପ୍ରସ୍ତୁତ । ୩୦୯୦ ଆଦିବାସୀ ଥିବା ୧୦ ଟି ଗାଁରେ ପୁଲିସ ୩୬ ଟି ଭୂସତ୍ୟାଗ୍ରହ ମକଦ୍ଦମା ରେକର୍ଡ଼ଭୁକ୍ତ କରିଥାନ୍ତି । ୯୪୦୦ ଆଦିବାସୀ ଥିବା ଆଉରି ୪୫ ଟି ଗାଁରେ ଭୂସତ୍ୟାଗ୍ରହ ଲାଗିବା ଉପରେ ଥାଏ । ଆନ୍ଦୋଳନ ହୁହୁ କରି ତେଜୁଥାଏ । ଦୂରକୁ ଦୂରକୁ ବଢ଼ୁଥାଏ । ଆଦିବାସୀଙ୍କ ଉତ୍ତେଜନା ଅଶାନ୍ତି ବଢ଼ି ବଢ଼ି ଚାଲିଥାଏ । ସରକାରୀ କର୍ମଚାରୀଙ୍କ ପ୍ରତି ସେମାନଙ୍କର ବିଶ୍ୱାସ ତୁଟିଯାଇଥାଏ । ସେମାନଙ୍କର ବଢ଼ି ବଢ଼ି ଧାରଣା ବଦ୍ଧମୂଳ ହୋଇଯାଇଥାଏ ଯେ ସରକାରୀ କର୍ମଚାରୀ କେବଳ ଧନୀ ସାହୁକାର ପକ୍ଷେ, ତାଙ୍କରି କଥା ଶୁଣନ୍ତି । ଆଦିବାସୀ ସେମାନଙ୍କଠୁଁ ନ୍ୟାୟ ପାଇବେ ନାହିଁ ।

ଏ ପରିସ୍ଥିତିରେ ଜିଲ୍ଲା କର୍ତ୍ତୃପକ୍ଷ ଚିରାଚରିତ ଆଇନ, ପୁଲିସ୍ ଗିରଫଦାରୀ ବିଶେଷତଃ ନେତାମାନଙ୍କ ଗିରଫଦାରୀ ଆଦି ପନ୍ଥାରେ ଏ ସମସ୍ୟାର ମୁହାଁମୁହିଁ ହେବାର ପରାମର୍ଶ ଦେଲେ । ସେ ସେହି ପନ୍ଥା ଯନ୍ତ୍ରରେ ଆଇନଶୃଙ୍ଖଳାଗତ ସମସ୍ୟାକୁ ସମ୍ଭାଳିବାକୁ ଚେଷ୍ଟା କରାଯାଇଥାଏ ।

କିନ୍ତୁ ମୁଖ୍ୟମନ୍ତ୍ରୀ ଥିଲେ ନବକୃଷ୍ଣ ଚୌଧୁରୀ । ସେ ରାଜି ହେଲେ ନାହିଁ । ସେ ଚାହିଁଲେ ଯେ ଆଦିବାସୀମାନଙ୍କର ପ୍ରକୃତରେ କି କି କାରଣ ପାଇଁ ମନରେ ଏ ଅଶାନ୍ତି ଓ ବିକ୍ଷୋଭ ଅର୍ଥାତ୍ ତାଙ୍କର ପ୍ରକୃତ ସମସ୍ୟା କ'ଣ କ'ଣ ଏ ବିଷୟରେ ଆଗ ତାଙ୍କର ବିଶ୍ୱାସ ଅର୍ଜନ କଲା ଭଳି ଜଣେ ନିରପେକ୍ଷ କର୍ମଚାରୀଙ୍କୁ ପଠାଇ ଅନୁସନ୍ଧାନ କରାଯିବ । ତା'ପରେ ତାଙ୍କ ରିପୋର୍ଟ ମିଳିଲା ପରେ ସବୁ ବିଚାରି ସେ ସବୁ ସମସ୍ୟାର ଯଥାଯଥ ସମାଧାନ ପାଇଁ ବ୍ୟବସ୍ଥା କରାଯିବ । ତାହେଲେ ଏ ଅଶାନ୍ତି ଓ ବିକ୍ଷୋଭ ଦୂର ହେବ । ଆଦିବାସୀମାନଙ୍କ ସାଧାରଣ ଦୁରବସ୍ଥା ଓ ସମସ୍ୟା ବିଷୟରେ ସେ ଅବହିତ ଥିଲେ । ଶୋଷିତ, ଅତ୍ୟାଚାରିତ, ଅବହେଳିତ ଆଦିବାସୀମାନଙ୍କ ପାଇଁ ତାଙ୍କ ହୃଦୟ କାନ୍ଦୁଥିଲା । ମୁଖ୍ୟତଃ ଆଦିବାସୀଙ୍କ ଶୋଷଣ ଦୂରକରି ସବୁ ପ୍ରକାରେ ସେମାନଙ୍କ ଉନ୍ନୟନ କରିବାକୁ ଯେଉଁ "ନବଜୀବନ ମଣ୍ଡଳ" ୧୯୪୭ ରୁ ପ୍ରତିଷ୍ଠିତ ହୋଇଥିଲା, ତା'ର ସେ ଅନ୍ୟତମ ପ୍ରତିଷ୍ଠାତା ଥିଲେ ଓ ତାଙ୍କ "ବାଜିରାଉତ ଛାତ୍ରାବାସ" ତାର କର୍ମକେନ୍ଦ୍ର ଥିଲା ଓ ୧୯୫୦-୫୧ ରୁ ତାଙ୍କର ଓ ଶ୍ରୀମତୀ ମାଳତୀ ଦେବୀଙ୍କର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ତାହା ଚାଲିଆସୁଥିଲା । ତାଙ୍କ ଦୃଷ୍ଟିରେ ଅନ୍ୟ ଗୋଟିଏ ଦିଗ ଥିଲା ଯେ ଯଦି ଭୂ ସତ୍ୟାଗ୍ରହ ଆନ୍ଦୋଳନର ସହାନୁଭୂତିଶୀଳ ଶାନ୍ତିପୂର୍ଣ୍ଣ ସମାଧାନ ନ ହୁଏ, ତେବେ ସେ ନିଆଁ ଓଡ଼ିଶାର ଆଦିବାସୀ ବହୁଳ ଅଞ୍ଚଳମାନଙ୍କରେ ଚାରିଆଡ଼େ ବ୍ୟାପିବାର ଆଶଙ୍କା କରାଯାଇପାରେ ।

ସେହି ପରିସରିବେଳେ ତାଙ୍କର ସେ ଦୃଷ୍ଟିରୁ ତାଙ୍କର ମହାନୁଭବ ଚରିତ୍ର ଓ ଦୂରଦର୍ଶିତାର ଦୃଷ୍ଟାନ୍ତ ମିଳେ ।

ଜୁନ୍ ୧୯୫୬ ରେ ଭୂଦାନ୍ତ୍ୟାଗ୍ରହ ଏନ୍‌କ୍ୱାଇରି କରିବା ପାଇଁ ମୁଁ ବ୍ୟସ୍ତ ହେଲି; କିନ୍ତୁ ସେତେବେଳେ ମୋର ସ୍ତ୍ରୀ ଗୁରୁତର ଭାବେ ଅସୁସ୍ଥ ଥିଲେ । ତେଣୁ ମୁଁ ଯାଇ ପାରିଲି ନାହିଁ । ସେଥିପାଇଁ ଅନ୍ୟ ଜଣେ କର୍ମଚାରୀ ଶ୍ରୀ ଜଗନ୍ନାଥ ଦାସ କୁଜେନ୍ଦ୍ର ଯାଇ କେତେକ ଆଦିବାସୀଙ୍କୁ ଓ ଆନ୍ଦୋଳନର ନେତାମାନଙ୍କୁ ଭେଟି କଥାବାର୍ତ୍ତା କରି ସେମାନଙ୍କୁ କହିଦେଇ ଆସିଲେ ଯେ ଏନ୍‌କ୍ୱାଇରି ହେବ, କିନ୍ତୁ ଆଉ କିଛିମାସ ସମୟ ଦରକାର । ସେ ପର୍ଯ୍ୟନ୍ତ ଆନ୍ଦୋଳନ ମୁଲତବି ରଖାଗଲା ।

ଅଗଷ୍ଟ ୧୧ ତାରିଖ ୧୯୫୬ ରେ ମୁଁ ଗୁଣୁପୁର ପଦ୍ମପୁର ଓ ବିଷମକଟକ ଅଞ୍ଚଳଯାକ ବୁଲି ବୁଲି ସହସ୍ର ସହସ୍ର ଆଦିବାସୀଙ୍କୁ ବିବିଧ ଗ୍ରାମରେ ଭେଟି ସେମାନଙ୍କ ସଙ୍ଗେ ରହି ସେମାନଙ୍କ ଅବସ୍ଥା ବିଷୟରେ ଅନୁସନ୍ଧାନ କଲି । ସାହୁକାର-ମାନଙ୍କୁ ବି ଭେଟିଲି, ସରକାରୀ କର୍ମଚାରୀମାନଙ୍କ ସଙ୍ଗେ ଆଲୋଚନା କଲି ଓ ବିବିଧ ନଥିପତ୍ର ଦେଖିଲି । ଅଗଷ୍ଟ ୨୭ ରେ କଟକ ଫେରିଆସିଲି ଓ ତା'ପରେ ମୋର ରିପୋର୍ଟ ପ୍ରସ୍ତୁତ କରି ଦାଖଲ କଲି । ଆଦିବାସୀମାନଙ୍କ ଶୋଚନୀୟ ଦୁରବସ୍ଥା, ସେମାନଙ୍କ ବିଭିନ୍ନ ସମସ୍ୟା, ସରକାରୀ କର୍ମଚାରୀଙ୍କ ଉଦାସୀନତା ଓ ଆଦିବାସୀମାନଙ୍କ ଦୁଃଖ ଦୂର କରିବାରେ ସରକାରୀ ବ୍ୟବସ୍ଥାର ଅପାରଗତା ଯାହା ଯାହା ଦେଖିଲି ବୁଝିଲି, ସବୁ ମୋ ରିପୋର୍ଟରେ ସ୍ଥାନ ପାଇଲା ଓ ତାହା ସହିତ ବିବିଧ ସମସ୍ୟା ସମାଧାନ ବିଷୟରେ ମୁଁ ମୋର ପରାମର୍ଶମାନ ମଧ୍ୟ ଦେଲି ।

ନବକୃଷ୍ଣ ଚୌଧୁରୀଙ୍କ ସହିତ ସେତେବେଳକୁ ମୋର ବ୍ୟକ୍ତିଗତ ସମ୍ପର୍କ ନ ଥିଲା । ମୁଁ ଭାବି ନ ଥିଲି ଯେ ସରକାରୀ କର୍ତ୍ତୃପକ୍ଷ ମୋ ରିପୋର୍ଟ ପଢ଼ି ଖୁସି ହେବେ, ବରଂ ଓଲଟା ହିଁ ଆଶଙ୍କା ଥିଲା । ତେଣୁ ଆଶ୍ଚର୍ଯ୍ୟ ହେଲି, ଯେତେବେଳେ ଶୁଣିଲି ଯେ ରିପୋର୍ଟ ପାଇ ମୋ ସୁପାରିସଗୁଡ଼ିକୁ ସରକାର ଗ୍ରହଣ କରି ସେ ସବୁ କାର୍ଯ୍ୟରେ ରୂପାନ୍ତରିତ କରିବା ପାଇଁ ମତେ ରାୟଗଡ଼ା ସବ୍‌ଡିଭିଜନ୍‌ର ଏସ୍. ଡି. ଓ. କରି ଅବସ୍ଥାପିତ କଲେ । ମୁଁ ପହଞ୍ଚିଲି । ଆନ୍ଦୋଳନ ବନ୍ଦ ହୋଇଗଲା । ନୂଆ କାର୍ଯ୍ୟକ୍ରମମାନ ଆରମ୍ଭ ହୋଇଲେ । ଦିନ ରାତି କାର୍ଯ୍ୟ ଚାଲିଲା, ଲାଗିଗଲା ନାନା ଦିଗରୁ ଆଦିବାସୀମାନଙ୍କ ସମସ୍ୟାମାନଙ୍କର ସମାଧାନ କଲେ ନାନା ଉଦ୍ୟମ । ତନ୍ମଧ୍ୟରେ ଥିଲା ପ୍ରଚଳିତ ଆଦିବାସୀ ଭୂମି ହସ୍ତାନ୍ତର ନିଷେଧକ ଆଇନ୍ ୧୯୧୭, ଓଡ଼ିଶା ଭାଗ ଚାଷ ଆଇନ୍ ୧୯୪୭, ଓଡ଼ିଶା ମହାଜନୀ ଆଇନ ୧୯୩୯ ଆଦି ଅନୁସାରେ ଆଦିବାସୀମାନଙ୍କ ବିବିଧ ଅଭିଯୋଗର ଉଦ୍‌ଘାଟନ ଓ ବିଚାର, ସେଥିପାଇଁ ଆଉ ଦୁଇଜଣ କର୍ମଚାରୀ ବି ନିଯୁକ୍ତ ହେଲେ । ଆଦିବାସୀମାନଙ୍କୁ କୋର୍ଟ ଫି ଛାଡ଼ ହେଲା ଓ ତାଙ୍କ ତରଫରୁ ସରକାରୀ ଖର୍ଚ୍ଚରେ ଓକିଲ ନିଯୁକ୍ତ ହେଲେ । ଆଦିବାସୀଙ୍କୁ ପଡ଼ିଆ ଜମି ଖୋଜି ବିତରଣ ଓ ତାକୁ ଚାଷ କରିବା ପାଇଁ ସବୁ ପ୍ରକାର ସାହାଯ୍ୟ ବଣ୍ଟନ, ସରକାରରୁ ସେମାନଙ୍କ ପାଇଁ ବିବିଧ ଋଣ ବ୍ୟବସ୍ଥା, ଧାନ କରଜ ଦେବା ବ୍ୟବସ୍ଥା । ଓ ହେଲ୍‌ଥ୍‌ ସେଣ୍ଟର୍‌, ବିବିଧ ସାହାଯ୍ୟ ବ୍ୟବସ୍ଥା, ଖୋଜି ଖୋଜି ସବୁ ପ୍ରକାର ଅନ୍ୟାୟ ଅତ୍ୟାଚାରର ନିରାକରଣ, ସେମାନଙ୍କ ସୁବିଧା ପାଇଁ କୂଅ, ପୋଖରୀ, ରାସ୍ତା, କ୍ଷୁଦ୍ର ଜଳସେଚନ ବ୍ୟବସ୍ଥା ଆଦି ତିଆରି କରିବା ଓ ବିବିଧ କର୍ମସଂସ୍ଥାନ ନିବିଡ଼ ଅଭ୍ୟନ୍ତରରେ ବାରମ୍ବାର ବୁଲି ବୁଲି ସେମାନଙ୍କ ସହିତ ସମ୍ବନ୍ଧ ପ୍ରତିଷ୍ଠା, ସେମାନଙ୍କର ଭୟଭଞ୍ଜନ, କୃଷି ଓ ଶିକ୍ଷାବିସ୍ତାର, ଉଚିତ ମୂଲ୍ୟ ଓ ଉଚିତ ଦର ପ୍ରଚଳନ, ଉଚିତ ମାପ ପ୍ରଚଳନ ଓ ଠକେଇ ମାଣ ଧ୍ୱଂସ, ଉଚିତ ମୂଲ୍ୟର ଦୋକାନ, ଇତ୍ୟାଦି ଇତ୍ୟାଦି ବହୁବିଧ ଉନ୍ନତିମୂଳକ କାର୍ଯ୍ୟହେଲା । ସେମାନେ ଅନେକ ଜମି ଓ ଅନେକ ଅନ୍ୟାନ୍ୟ ଉପକାର ପାଇଲେ । ଭାଗଚାଷ ଆଇନ ଅନୁସାରେ ମକଦ୍ଦମା ହୋଇ ଭାଗଚାଷୀ ରଇତଙ୍କୁ ସଂପୃକ୍ତ ବର୍ଷର ଓ ଅତୀତ ବର୍ଷମାନଙ୍କର ଭୂମିମାଲିକ ଅନ୍ୟାୟଭାବେ ବଳକା ନେଇଯାଇଥିବା ପରିମାଣର ଫସଲ ମଧ୍ୟ ଲେଉଟାଇ ଦିଆଗଲା । ଅନ୍ୟାୟ ଋଣ ବକେୟା ଅନୁସନ୍ଧାନ କରି କାଟିଦିଆଗଲା ।

ଆଦିବାସୀମାନେ ନାନା ଭାବରେ ଉପକୃତ ହେଲେ, ସେମାନଙ୍କ ଅବସ୍ଥାରେ ଦ୍ରୁତ ପରିବର୍ତ୍ତନ ହେଲା । ସାହୁକାରମାନଙ୍କ ପ୍ରତି ସେମାନଙ୍କ ଭୟ ଦୂର ହେଲା । ଯେଉଁ ଭୂମିଗୁଡ଼ିକ ତାଙ୍କର ବୋଲି ବିଶ୍ୱାସ କରି ସେମାନେ ଆନ୍ଦୋଳନ କରୁଥିଲେ, ନ୍ୟାୟ ବିଚାର ହୋଇ ତହିଁରୁ ଯେଉଁଗୁଡ଼ିକ ସେମାନଙ୍କୁ ଫେରାଇ ଦେବା ଆଇନ ଅନୁସାରେ ଅସମ୍ଭବ ହେଲା, ସେ ବିଷୟରେ ବି ସେମାନଙ୍କର ଅଭିଯୋଗ କି ଅଶାନ୍ତି ରହିଲା ନାହିଁ ।

ଏସବୁ ଘଟିଥିଲା ନବକୃଷ୍ଣ ଚୌଧୁରୀ ମୁଖ୍ୟ ମନ୍ତ୍ରୀ ଥିଲାବେଳେ । ସେ କେତେ ଥର ଆସି ଏ ପରିବର୍ତ୍ତନ ଦେଖି ଅତ୍ୟନ୍ତ ପ୍ରୀତ ହୋଇଥିଲେ ଓ ଆଦିବାସୀମାନଙ୍କଠାରୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ପାଇଥିଲେ ।

ସେତେବେଳେ ମୁଁ ଦେଖିଛୁ ଓଡ଼ିଶାରେ ସେହି ଜନଗଣପ୍ରାଣ, ସାଧୁ ଋଷିପ୍ରତିମ ମୁଖ୍ୟମନ୍ତ୍ରୀ କିଭଳି ଚଳୁଥିଲେ, କିଭଳି ଗସ୍ତ କରୁଥିଲେ । କୌଣସି ପ୍ରକାର ଆଡ଼ମ୍ବର, ବିଳାସିତା, ବିଳାସବ୍ୟସନ କି ଆଳସ୍ୟ ତାଙ୍କୁ ସ୍ପର୍ଶ କରୁ ନ ଥିଲା । ସେ ନିଜ ନିତ୍ୟ ନୈମିତ୍ତିକ କାର୍ଯ୍ୟ ବିଷୟରେ ସ୍ୱାବଲମ୍ବୀ ଥିଲେ । ଅତି ସାଧାରଣ ବ୍ୟକ୍ତି ପରି ତାଙ୍କ ଚଳଣି ଥିଲା । ନିଜ ଶୋଇବା ବିଛଣା ନିଜେ ଉଠାଉଥିଲେ, ନିଜେ ଘର ଓଳାଉଥିଲେ । ସେ ଗସ୍ତରେ ବାହାରିଲେ ସୁଟ୍ ଓ ପୋଷାକ ପିନ୍ଧି ବିବିଧ କର୍ମଗୃଷ୍ଟି ଗାଡ଼ିମାନଙ୍କରେ ବସି ତାଙ୍କ ପଛେ ପଛେ ଧାଇଁଥାନ୍ତି । ସେମାନେ କେତେ ଆଡ଼ମ୍ବରରେ ରହନ୍ତି, ଚଳନ୍ତି, ତାଙ୍କର ବେଶ କିନ୍ତୁ ସେହି ସାନ ଝିଅଡ଼ ଲୁଗା ଖଣ୍ଡିଏ, କାମିଜଟିଏ, ଭୋଜନ ଅତି ସରଳ । ଯାଉ ଯାଉ ହଠାତ୍ କେଉଁଠି ସେ ଗାଡ଼ି ଅଟକାନ୍ତି. ଓହ୍ଲେଇପଡ଼ି ସଡ଼କ ଛାଡ଼ି ଅମଡ଼ା ମାଡ଼ି ତରତର ହୋଇ ଚାଲିଯାଆନ୍ତି ଅଭ୍ୟନ୍ତରକୁ । ବାଟରେ ପାଣି କାଦୁଅ ପଡ଼େ, ନାଳ ପଡ଼େ, ଟିପ କି ପାହାଡ଼ ପଡ଼େ । ସେ ଯାଆନ୍ତି ନିଜ ଆଖିରେ ଲୋକଙ୍କ ଅବସ୍ଥା ଦେଖିବାକୁ, ସେମାନଙ୍କଠୁଁ ତାଙ୍କ ସମସ୍ୟା ନିଜେ ବୁଝିବାକୁ, ସେମାନଙ୍କୁ ସନ୍ତୋଷିବାକୁ । ହଠାତ୍ ହାବୁଡ଼େ କେଉଁ ଚଷା ଲୋକଟିଏ, କେଉଁ 'ଭାଇ' କେଉଁ କର୍ମୀ, କେତେ ସ୍ନେହ ! ଗୃଲୁ ଗୃଲୁ କେତେ ଦୁଃଖ ସୁଖ । ପଛରେ ଅଫିସରମାନେ ଧଇଁସଇଁ ହୋଇ ଆସୁଥାନ୍ତି, ପ୍ୟାଣ୍ଟ ପିନ୍ଧି ପାଣି କାଦୁଅରେ ପଶିବା ତାଙ୍କ ପକ୍ଷେ ଅସୁବିଧା । କେତେ ଥର କେଉଁ କର୍ମୀଙ୍କ 'ଆଶ୍ରମ'ରେ ମୁଖ୍ୟମନ୍ତ୍ରୀ ଏହିପରି ହଠାତ୍ ପହଞ୍ଚିଯାଇଛନ୍ତି । ଅଫିସରମାନଙ୍କୁ ପରିଚିତ କରାଇ ଦେଇଛନ୍ତି । ମନେପଡ଼େ ଏହିପରି ଥରେ ଯାଇ ସେ ମୁଣ୍ଡିଲା ଗାଁରେ ଗୋଟିଏ ନାରୀକର୍ମୀଙ୍କ ଆଶ୍ରମରେ ପହଞ୍ଚିଥିଲେ । ବଣ ପାହାଡ଼ ତଳେ ଗାଁଟି । ଆଦିବାସୀଙ୍କ ସଙ୍ଗେ ନାନା ଦୁଃଖସୁଖ ହେଲେ । ଦ୍ୱିପ୍ରହର ହୋଇଥାଏ, ଜିଣାମଣି ଅପା (ନାରୀକର୍ମୀ) ଅଥିଆ ଛାଡ଼ିଲେ ନାହିଁ । କଥାବାର୍ତ୍ତା ହେଉ ହେଉ ଆଦିବାସୀ ମହିଳାମାନଙ୍କ ସାହାଯ୍ୟରେ ସେ ସମସ୍ତଙ୍କ ପାଇଁ ଖେଚେଡ଼ି କରି ସାରିଥିଲେ । ପରିଷ୍କାର ମାଟିଘର, ଚଉଡ଼ା ହୋଇ ସତରଞ୍ଜି ପରିଗଲା, ଧାଡ଼ି ହୋଇ ସମସ୍ତଙ୍କ ପାଇଁ ବଢ଼ା ହେଲା । ମୁଖ୍ୟମନ୍ତ୍ରୀ ସମସ୍ତଙ୍କୁ ନିମନ୍ତ୍ରଣ କଲେ "ବସନ୍ତୁ" । ସେ ଲାଇଟି କେଉଁ ଚପରାସି କି ସେହିପରି ଆଡ଼େଇ ହୋଇ ଠିଆ ହେଲେ କାହିଁକି ? ଏଇଠି ବସନ୍ତୁ" ବସିପଡ଼ିଲେ ସମସ୍ତେ, କ୍ଷୁଦ୍ର, ମଧ୍ୟମ, ଉଚ୍ଚ, ପ୍ରକାର ପ୍ରକାର କର୍ମଗୃଷ୍ଟି ଓ ମୁଖ୍ୟମନ୍ତ୍ରୀ, ଉଚ୍ଚନୀଚ ପଦଭେଦ, ଜାତି ଧର୍ମ ଆଦିର ଭେଦ, କୌଣସି ଭେଦାଭେଦ ନାହିଁ, ସମସ୍ତେ ମନୁଷ୍ୟ । ପ୍ରାର୍ଥନାଟିଏ ହେଲା, ହାତ ଚାଲିଲା, କଦଳୀ ପତ୍ରରେ ଭାତ ଓ ଡାଲମା, କାନ୍ଦୁଲ ଡାଲିରେ ପଡ଼ିଥାଏ କଖାରୁ, କଦଳୀ, ଦ୍ରବ୍ୟ ଆହାର, ପରମ ପରିତୃପ୍ତିରେ ଖାଦ୍ୟକୁ ପ୍ରଶଂସା କରି କରି ମୁଖ୍ୟମନ୍ତ୍ରୀ ଖାଇଯାଉଥାନ୍ତି ।

ପରେ ଅନ୍ୟଙ୍କ ଦେଖିଛି, ସେ ମୁଢ଼ି ଖାଉଥିବେ, ଯେ ଆସିଲେ ସେଇଥିରୁ ନେଇ ଖାଇବାକୁ ଆମନ୍ତ୍ରଣ କରିବେ । ଖାଉ ଖାଉ ଚାଲିଥିବ ଆଲୋଚନା ।

ରାଯ୍ୟଗଡ଼ାରୁ ମୁଁ ୧୯୫୪ ରେ ଆସିଲି । ତାଙ୍କର ମନ୍ତ୍ରିତ୍ୱ ପରେ ତାଙ୍କ ସଙ୍ଗେ କେତେ ଥର ମୋର ସାକ୍ଷାତ୍ ହୋଇଛି । ସେ ବହୁତ ବହି ପଢ଼ୁଥିଲେ, ବହୁ ଉନ୍ନତ ଓ ଗଭୀର ଚିନ୍ତା କରୁଥିଲେ, ବହୁତ ଜାଣିଥିଲେ । ପରଦୁଃଖରେ ପର ପ୍ରତି ସେ ଅତ୍ୟନ୍ତ ସହାନୁଭୂତିଶୀଳ ଥିଲେ । ତାଙ୍କର ବ୍ୟବହାର ଅତ୍ୟନ୍ତ ସ୍ନେହୀ ଓ ସୌଜନ୍ୟପୂର୍ଣ୍ଣ ଥିଲା । ଗର୍ବ ଅହଂକାର ତାଙ୍କୁ ସ୍ପର୍ଶ ହିଁ କରି ନ ଥିଲା । ବେଳେ ବେଳେ ସାମାନ୍ୟ କଥାରେ ସେ ରହସ୍ୟ କରୁଥାନ୍ତି । ମନେପଡ଼ୁଛି ଥରେ ସେ ଠାଏ ଅନ୍ୟମାନଙ୍କ ସଙ୍ଗେ ମିଶି ଗୋଟାଏ ବଡ଼ ସତରଞ୍ଜିକୁ ଝାଡ଼ୁଥାନ୍ତି, ବହୁତ ଧୂଳି ଉଡ଼ୁଥାଏ, ସେ ହସିଦେଇ କହିଲେ "ଏଇ ଦେଖନ୍ତୁ ସଂସ୍କାରବାଦୀ ସମାଜ" ।

ସେ ଥିଲେ ସ୍ୱାଧୀନତାର, ପ୍ରାଣପ୍ରାଚୁର୍ଯ୍ୟର ଓ ମାନବିକତାର ଗୋଟିଏ ଅତୁଳ ପ୍ରତୀକ, ମୁକ୍ତ ଓ ଅପରାଜେୟ । ତାଙ୍କ ପବିତ୍ର ସ୍ମୃତିକୁ ମୋର ପ୍ରଣାମ ।

# ଟୁକି ବାହାଘର

ରମା ଦେବୀ

ଦିନରେ ଭାତଖାଇ ସବୁଦିନ ପରି ଉପରକୁ ଶୋଇବାକୁ ଗଲି । ମା, ବେଙ୍ଗ, ତାଙ୍କ ପିଲା ଓ ଚୁନ୍ନି, ବୁଲୁ ତଳେ ଥାଆନ୍ତି । ଉପରକୁ ଯାଇ ଶୋଇବାପରେ ଗୋଡ଼ଦେବା ମାତ୍ରେ ଗୋପବାବୁ ମୋ ହାତକୁ ଖଣ୍ଡେ ଚିଠି ବଢ଼ାଇଦେଇ କହିଲେ, ପଢ଼ି ଦେଖ । କଥାଟା ଗମ୍ଭୀର ସ୍ୱରରେ କହିଲେ । ଖୁବ ଚିନ୍ତିତ ଥିଲା ପରି ମୁହଁ ଦେଖାଯାଉଥାଏ । ମୁଁ ଚିଠିଖଣ୍ଡ ଭାଙ୍ଗି ଫିଟାଇ ଦେଖିଲି ଟୁକିଙ୍କ ଅକ୍ଷର । ଏକା ନିଃଶ୍ୱାସକେ ପଢ଼ିଗଲି । ଚିଠିର ସାରମର୍ମ ହେଲା, ସେ ଶାନ୍ତିନିକେତନର ଜଣେ ଗୁଣୀଙ୍କୁ ବାହାହେବା ପାଇଁ ଠିକ୍ କରିଛନ୍ତି । ସବୁ କଥା ବିସ୍ତାରିତ ଭାବରେ ଲେଖିଛନ୍ତି । ଟୁକି ବାହାଘର ହେଉ ନ ଥିବାରୁ ମା' ନିଜେ ବ୍ୟସ୍ତ । ଅନ୍ୟମାନେ ବାହାଘର ଉଦ୍ୟମ ହେଉନାହିଁ, ଝିଅଖୋଜା ହେଉନାହିଁ ଆଦି କହି ଦୁଃଖ ପ୍ରକାଶ କରି ମା'ଙ୍କ ବ୍ୟସ୍ତତା ଆହୁରି ବହୁଗୁଣ ବଢ଼ାଇ ଦେଉଥାନ୍ତି । ମୁଁ ଭାବିଲି ଟୁକି କନ୍ୟା ଠିକ୍ କରିଛନ୍ତି, ଏକଥା ଶୁଣି ମା' ଆଶ୍ୱସ୍ତ ହେବେ । କାରଣ ସେ କେତେ ଥର ଦୁଃଖକରି କହୁଛନ୍ତି—ପାଣି, ପଠାଣ ଝିଅ ଆସି ପଡ଼ିବ ଟୁଆଁ ହାତକୁ ଦ'ହାତ ହେଉ । ଚିଠି ଖଣ୍ଡ ନେଇ ତଳକୁ ଗଲି । ମା' ଓ ବେଙ୍ଗ ଚେୟାରରେ ଶୋଇ କଥାବାର୍ତ୍ତା ହେଉଛନ୍ତି । ମୁଁ ଚିଠିଖଣ୍ଡେ ଧରି ଠିଆହେଲାରୁ ମା ଟିକିଏ ଆଶ୍ଚର୍ଯ୍ୟ ହେଲା ପରି କହିଲେ—କିଏ ଚିଠି ଦେଇଛି ? ମୁଁ ଚିଠିଟା ବେଙ୍ଗ ହାତକୁ ଦେଇ କହିଲି—ପଢ଼ । ମା' ତ ବ୍ୟଗ୍ରତାର ସହିତ ଚାହିଁଥାନ୍ତି ଚିଠିକୁ । ବେଙ୍ଗ ପଢ଼ିଦେଇ କହିଲେ, ବୋଉ ! ଟୁଆଁଭାଇ କନ୍ୟା ଠିକ୍ କରିଛି ବାହାହେବା ପାଇଁ, ସେ କନ୍ୟା ଶାନ୍ତିନିକେତନରେ ପଢ଼େ । ବଙ୍ଗାଳୀ ଘରର ଝିଅ । ବେଙ୍ଗଠାରୁ କଥାଟା ଶୁଣି ଦଶ ପନ୍ଦର ସେକେଣ୍ଡ ଚୁପ୍ ରହି ମା' ହଠାତ୍ କାନ୍ଦିଉଠି କହିଲେ, ଟୁଆଁ କ'ଣ କଲା ? ମୋ ମରିବାଯାଏ ରହିଲା ନାହିଁ । ମୁଁ ମରିଯାଇଥିଲେ ଯାହା ଇଚ୍ଛା କରିଥାନ୍ତା । ମୁଁ ଏବେ କରିବି କ'ଣ ? ମା' ଏପରି କାନ୍ଦିକଟା କରିବେ, ଏହା ମୋ କଳ୍ପନାରେ ନ ଥିଲା । ବେଙ୍ଗଙ୍କର ସନ୍ତାନ-ସମ୍ଭାବନା, ତାହା ଛଡ଼ା ତାଙ୍କୁ ମ୍ୟାଲେରିଆ ଜ୍ୱର ହେଉଥିବାରୁ ସେ ଚିକିତ୍ସା ପାଇଁ ତାଙ୍କ ଦୁଇପୁଅ ରବି ଓ ଟୁନାକୁ ନେଇ ଆସିଥାନ୍ତି । ମା'ଙ୍କ କନ୍ଦାକଟା ଦେଖି ସେ ବିଚରା କ'ଣ କରିବେ ? ବାମୀଦିଦି ପ୍ରଭୃତି ଏ କଥା ଶୁଣିଲେ । ବାମୀଦିଦି ଶୁଣିଲେ ଅର୍ଥ ଚାରିଆଡ଼େ ସମସ୍ତେ ଜାଣିଲେ । ମାଗଅପା ଓ ଦେବେନ୍ଦ୍ରବାବୁ ଆସିଲେ । ପ୍ରଶ୍ନ ଉଠିଲା କ'ଣ କରାଯିବ ? ମା'ଙ୍କୁ ବୋଧ ଦେବା ପାଇଁ ଯାହା ମୁଣ୍ଡକୁ ଯାହା ଆସୁଥାଏ, ସେ ତାହା କହୁଥାଏ । ମାଗଅପାଙ୍କ ଘର ଆତ୍ମୀୟମାନେ ଗୋଟିଏ ପ୍ରସ୍ତାବ ବାହାର କଲେ ଯେ ଟୁକିଙ୍କୁ ଡରେଇଦେବାକୁ ହେବ ଯେ ସେ ଅନ୍ୟ ଜାତି ଝିଅ ବାହାହେଲେ ଏ ସମ୍ପତ୍ତିରୁ ଭାଗ ପାଇବେ ନାହିଁ । ଏ ମସୁଧାକୁ ଗୋପବାବୁଙ୍କ ଆଗରେ କହିବ କିଏ ? ଅନେକ ବିଚାରବିଚାର ହୋଇ ଗୋପବାବୁଙ୍କ କାନରେ କଥାଟା ପକା ଗଲା । ଶୁଣିବାମାତ୍ରେ ଗୋପବାବୁ ତତ୍‌କ୍ଷଣାତ୍ କହିଦେଲେ, ସମ୍ପତ୍ତି ଭାଗ ହେବ କ'ଣ ? ବରଂ ସେ ନେଉ, ଏ କଥା ମୁଁ ସିନା କହିପାରିବି, ସମ୍ପତ୍ତିରୁ ଟୁକି ଭାଗ ପାଇବ ନାହିଁ, ଏ କଥା ମୁଁ କେମିତି କହିବି ? ଏ କଥା ଶୁଣି ସମସ୍ତେ ଚୁପ ହୋଇଗଲେ । ବାହାଘର ଭାଙ୍ଗିଦେବାର କିଛି ଉପାୟ ନ ପାଇ ମା'ଙ୍କର ରାଗଗୁଡ଼ାକ ସବୁ ମୋ ଉପରେ ପଡ଼ିଲା । ସେ ପ୍ରକାରାନ୍ତରେ ସବୁବେଳେ କହିଲେ ଯେ, ମା'ଙ୍କ ଦୋହାଇ ନ ଦେଇ ମୁଁ ଅନ୍ୟ କୌଣସି ପନ୍ଥା ବାହାରକରି ବାହାଘର ଭାଙ୍ଗିଦିଏ । ଅଥଚ ସେ ବାହାଘର ଭାଙ୍ଗିବାରେ ସମ୍ପୃକ୍ତ ଏକଥା ଟୁକି ଜାଣନ୍ତୁ, ଏହା ତାଙ୍କର ଇଚ୍ଛା ନୁହେଁ ।

ଦ'ପହରବେଳେ ପାଖର ସ୍ତ୍ରୀଲୋକମାନଙ୍କ ପାଖରେ ମା' କଥାବାର୍ତ୍ତା କରନ୍ତି । ସେମାନେ ଟିହାଇ ଦେଇ କହନ୍ତି ଯେ, ବଡ଼ପୁଅ ବୋହୂ ମନ କଲେ କ'ଣ ବାହାଘର ଭାଙ୍ଗିଦେଇ ପାରନ୍ତେ ନାହିଁ ? ପୁଅମାନଙ୍କୁ ତ ମା' କେବେ କିଛି ମନର ଦୁଃଖ କହନ୍ତି ନାହିଁ । ସବୁ ରାଗ ପଡ଼େ ମୋ ଉପରେ । ମୋ ଉପରେ ସେ ଅନବରତ ଚିଡ଼ିଲେ । ଦିନେ ଦିନେ ହଠାତ୍ ପାଟିକରି କାନ୍ଦିଉଠନ୍ତି । ପାଖର ସ୍ତ୍ରୀଲୋକମାନେ ଦୌଡ଼ିଆସି ମୋତେ ଖୁବ୍ କଥା ଶୁଣାନ୍ତି, ଯେପରି ସବୁ ଦୋଷ ମୋର । ଏଣେ ମା'ଙ୍କ ମତ ଅନୁସାରେ ମୁଁ ଘର ଚଳାଇବି । ବେଙ୍ଗଙ୍କ ପିଲା ଦୁହେଁ ମ୍ୟାଲେରିଆରେ ଭୋଗୁଥାନ୍ତି । ସେ ପିଲା ଦୁହିଁଙ୍କୁ ଜଳ-ଚିକିତ୍ସାରେ ରଖାଯାଇଥାଏ । ଜ୍ୱରରୋଗୀ ଜଳ ଚିକିତ୍ସାରେ ରହିବା ବଡ଼ ନଟଖଟିଆ କଥା । ବେଙ୍ଗଙ୍କ ଝିଅ ଶଙ୍ଖୀ ଜନ୍ମ ହେଲା । ସେ ତାଙ୍କ ଘରକୁ ଗଲେ । ସେ ଥିବାବେଳେ କଥାବାର୍ତ୍ତା କରିବାକୁ ଏ ଦୁଃସହ ପରିସ୍ଥିତିବେଳେ ଜଣେ ସାଥୀ ଥିବାରୁ ଯାହା ଟିକିଏ

ଭଲ ଲାଗୁଥାଏ, ସେ ଗଲାରୁ ତାହା ବି ଗଲା । ବାହାଘର ଭାଙ୍ଗିବାର କୌଣସି ଲକ୍ଷଣ ନ ଦେଖି ମା' ପୁରୀ ପଳେଇଯିବି ବୋଲି କହିଲେ । ମୁଁ ଭୟରେ ଅସ୍ଥିର ହେଲି । ଏକମାତ୍ର ମାଉଅପାଙ୍କୁ ସବୁ କହେ । ସେ ବା କରିବେ କ'ଣ ? ମା'ଙ୍କର ତାଙ୍କ ଉପରେ ଅବିଶ୍ୱାସ ଯେ, ମୁଁ ଓ ମାଉଅପା ଏକ ମେଣ୍ଟ ହେଲୁଣି । ଟୁକ ବାହାଘର ଅଜାଡ଼ିରେ ହେବ, ଆମେ ମଜା ଦେଖିବୁ । ମୋ ମା' ବା ମୋ ମାଈଁ ବା ମାଉସୀଙ୍କୁ ମା' ଏ କଥା କହିଲେ ନାହିଁ । ଏହିପରି ଦେଢ଼ବର୍ଷ କଟିଗଲା । ଦିନେ ସାମାନ୍ୟ କାରଣରୁ ସେ ଜିଦ୍ ଧରିଲେ ପୁରୀ ଯିବେ । ମାଉଅପା ମୋତେ କହିଲେ, ସେ ପୁରୀ ଯାଉ । ଏଠା ଛାଡ଼ି ବାହାରେ ରହୁ । ତା ମନ ବଦଳି ଯାଇପାରେ । ମା' ପୁରୀ ଗଲେ । ସେ ପୁରୀରେ ରହିଥିବା ସମୟରେ ମୋର ବଡ଼ ମଉଳାଶୁର ଶ୍ରୀ ହରେକୃଷ୍ଣ ମହାନ୍ତି କଟକ ଆସି ଆମ ଘରେ ରହିଲେ । ତାଙ୍କର ଖାଇବା ରୋଗୀର ପଥ୍ୟ । ଅତି ସୁକୁମାରିଆ ଖାଇବା । ଠିକ୍ ସମୟରେ ସବୁ ହେବା ଚାହି । ସେ ଭାବିଥିଲେ, ତାଙ୍କ ଭଉଣୀ ନ ଥିବାରୁ ତାଙ୍କୁ ଅସୁବିଧା ଭୋଗ କରିବାକୁ ପଡ଼ିବ । ମାତ୍ର ମୁଁ ତାଙ୍କ କାମ ଭଲ ଭାବରେ କରିଦେବାରୁ ସେ ଖୁବ୍ ସନ୍ତୁଷ୍ଟ ହେଲେ । ମୁଁ ତାଙ୍କ ସାମନାକୁ ଯାଉ ନ ଥାଏ । ସେ ତ ସବୁ କଥା ଶୁଣିଥିଲେ ଓ ମା'ଙ୍କ ମନୋବୃତ୍ତି ଜାଣିଥିଲେ । ମୋତେ ସେ ଶୁଣେଇକରି କହିଲେ ଯେ, ଏଥର ପୁରୀଯାଇ ଅପାକୁ (ମୋ ଶାଶୁ) ଯେକୌଣସିମତେ ବୁଝାଇଦେବେ ଯେ, ଟୁକଙ୍କର ବାହାଘର ହେଉ, ଏହା ତାଙ୍କର ଇଚ୍ଛା ଏବଂ ଯେକୌଣସିମତେ ସେ ଭଉଣୀକୁ ରାଜି କରାଇବେ । ଆସିବା ପାଇଁ ଅନେକ ଖବର ଦେଇ ଦେଇ ମା' କିଛୁଦିନ ପରେ କଟକ ଆସିଲେ । ମନର ବିଚାର ଅନ୍ୟ ପ୍ରକାରର ବୋଲି ଆମେ ଜାଣିଥିଲେ ମଧ୍ୟ ସେ ଜଣାଇଦେଉ ନ ଥାନ୍ତି । ମାଉଅପା କହିଲେ, 'ଭାଇ କ'ଣ ମନ୍ତ୍ର ଫୁଙ୍କିଛି, ସେ କାଟୁ କରୁଛି । ଲୁଚଉଛି ସିନା; କିନ୍ତୁ ତା ମନ ବଦଳିଛି ।'

ଏହିପରି କିଛୁଦିନ କଟିବା ପରେ ମଉଳାଶୁର କଟକ ଆସିଲେ । ମୋତେ ଡାକିଲେ । ମୁଁ କବାଟ ଉଢ଼ାଳରେ ବସିଲି । ସେ ଭାଇଭଉଣୀ ଏକାଠି ବସିଲେ । ମାମୁ ମତେ ଉଦ୍ଦେଶ୍ୟ କରି କଥା ଆରମ୍ଭ କଲେ । ପ୍ରଥମେ ମା'ଙ୍କୁ କହିଲେ— ଅପା ! ତୁ ବସି ଶୁଣ୍ । ମୋର ବୋହୂକୁ ଯାହା କହିବାର, ତାହା ଆଗ କହିଦିଏ । ମା'ଙ୍କର କାନ୍ଦଣା ଆରମ୍ଭ ହୋଇଯାଇଥାଏ । ମତେ ମାମୁ କହିଲେ—ଅପା ନ ବୁଝି ଅଧୈର୍ଯ୍ୟ ହେଉଛି । ଏପରି ହେବାର କାରଣ କିଛି ନାହିଁ । ପୁଅ ଯାହାକୁ ବାହା ହେବା ପାଇଁ ଚାହୁଁଛି, ସେଥିରେ ଆମର ବାଧା ଦେବା ଅସୁନ୍ଦର କଥା । ପୁଅ ଯାହାକୁ ବାହାହେବ, ତାକୁ ଘେନ ଘରକରିବ । ପୁଅ ଯାହାକୁ ଘରକୁ ଆଣିବ, ଆମେ ତାକୁ ଆମର କରିନେବା କଥା । ଅପାର ଆଶଙ୍କା—ସେ ଝିଅ କାଳେ ବିଧବା କନ୍ୟା ହୋଇଥିବ । ମୁଁ ତ ଜାଣେ ନାହିଁ । ଯଦି ତାହା ହୋଇଥିବ ତେବେ ସେ ତ ଗୋଟିଏ ସଂସ୍କାରକର କାମ । ଆମେ ଜାଣିବା ଟୁଆଁ ଜଣେ ସଂସ୍କାରକ । ମାମୁ ଏହିପରି ବୁଝାଇ କହିବା ପରେ ମା' କହିଲେ, ଯେ ମୁଁ ତାଙ୍କ ମୁଣ୍ଡ ଛୁଇଁ କହିବି ଯେ, ସେ ବୋହୂ ଛୁଆଁ ମୁଁ ଖାଇବି ନାହିଁ । ଏକଥା ଶୁଣି ମୁଁ ସ୍ତମ୍ଭିତ ହେଲି । ଏତେ ବଡ଼ ସଙ୍କଳ୍ପ ମୁଁ କରିବି କେମିତି ? ବୋହୂ ଘରକୁ ଆସିବ, ତା' ରନ୍ଧା ଜିନିଷ ମୁଁ ଖାଇବି ନାହିଁ । ଏ ଗୋଟାଏ କେଡ଼େ ବଡ଼ ଅସୁନ୍ଦର କଥା ହେବ । ସେ ବୋହୂ ପକ୍ଷରେ କେଡ଼େ ଅପମାନ-ଜନକ କଥା ହେବ ! ତା ବାପଘର ଲୋକେ ଏ କଥା ଶୁଣିଲେ ଆମକୁ କେତେ ଛୋଟଲୋକ ନ ଭାବିବେ । ମୁଁ ତୁନିରହିବା ଦେଖି ମା' ଭାବିଲେ—ଟୁକ ବାହାହେବ, ଆମେ ସବୁ ଏକ ହୋଇ ଏକାକାର କରିଦେବୁ । ସେ ଏକୁଟିଆ ରହିବେ । ମା' ଖୁବ୍ ପାଟିକରି କାନ୍ଦି ଉଠିଲେ । ମଉଳାଶୁର ଥିବାରୁ ସେ କଥା ସମ୍ଭାଳିପଡ଼ିଲା ! ସେ ଖୁବ୍ ପାଟିକରି କହିଲେ—"ଅପା ! ତୁ ଏପରି ଅଧୈର୍ଯ୍ୟ କାହିଁକି ହେଉଛୁ ? ତୁ ସବୁବେଳେ ଏପରି ଅବୁଝାମଣା କଥା କହିଲେ କେମିତି ହେବ ? ବୋହୂକୁ ଟିକିଏ କହିବାକୁ ଦେ । ତୁ ସବୁବେଳେ ଏପରି କନ୍ଦାକଟା କଲେ ସେ ବିଚରା କ'ଣ କରିବ ?" ଏମିତି କେତେ କଥା କହିଲାରୁ ମା' ତୁନି ହେଲେ । ମାମୁ ମତେ ଲକ୍ଷ୍ୟ କରି କହିଲେ, "ମା, ତମେ ଅଉ ଭାବୁଛ କ'ଣ ? ତମେ ଯେତେବେଳେ ବଡ଼ବୋହୂ, ତମକୁ ଅନେକ ଦାୟିତ୍ୱ ମୁଣ୍ଡାଇବାକୁ ପଡ଼ିବ । ତମେ ଏ କଥାକୁ ସମ୍ଭାଳିନିଅ । ବାହାଘରଟା ହୋଇଯାଉ । ତମେ ଆଉ ଆଗପଛ ନ ହୋଇ ଗୋପାଳଙ୍କ ନାଁ ନେଇ ଅପାକୁ ଜବାବ୍ ଦିଅ ଯେ ତମେ ସେ ବୋହୂ ହାତରେ ଖାଇବ ନାହିଁ ।" ମୁଁ ଆଉ କ'ଣ କରିବି ? ମା' ସଙ୍ଗେ ସଙ୍ଗେ ଉଠିଆସି ମୋ ହାତ ନେଇ ତାଙ୍କ ମୁଣ୍ଡରେ ରଖିଲେ ଏବଂ ମାମୁ କହିଲେ—"ବୋହୂ କହୁଛି, ସେ ତା ହାତରେ ଖାଇବ ନାହିଁ । ତୁ ଯେପରି ବାରଣ କରିବୁ, ସେ ସେହିପରି ବାରଣ କରିବ ।" ନୀରବରେ ସବୁ ମାନିନେଲି । ଏତେ-ଦିନ ଯାଏଁ ମୋ ମନରେ ଯେଉଁ ଧାରଣା ନ ଥିଲା ତାହା ମାମୁ କହିଲେ । ମା' ନିଜେ ଭାବୁଥାନ୍ତୁ ବା ତାଙ୍କ ମନରେ କେହି ଧାରଣା ଦେଇଥାଉ ଯେ ତାଙ୍କର ଧାରଣା ହୋଇଥାଏ, ଟୁକ ଯାହାକୁ ବାହା ହେବାକୁ ସ୍ଥିର କରିଛନ୍ତି, ସେ ଝିଅଟି ବିଧବା । ମାମୁ କହିଲେ ଯେ, ଜାତି ଧର୍ମ ଯାହା ହେଉ, ବିଧବା ବୋଲି ତା ମନରେ ଧାରଣା ହେବାରୁ ସେ ବ୍ୟସ୍ତ ।

ବାହାଘର କଥା ଚାଲିଲା । ମା' ପୁରୀରେ ଥିବା ସମୟରେ ମିନୁ ବଡ଼ଭାଉଜ କଟକ ଆସି ମୋହନମୋହନ ସେନାପତିଙ୍କ ଘରେ ରହି ଆମ ଘରକୁ ଆସି ମୋ ସାଙ୍ଗରେ କଥାବାର୍ତ୍ତା କରି ଯାଇଥାନ୍ତି । ମା' ଏକଥା ଶୁଣି ରାଗିଲେ । ମୋର ବା ଏଥିରେ ଦୋଷ କ'ଣ ? ଏଇକଥା ଉପରେ କେତେ ଟୀକାଟିପ୍ପଣୀ ହେଲା । ଅନ୍ନପୂର୍ଣ୍ଣା ଦାଦା ଓ ନାଲିଆ ମା' ମୋ ପକ୍ଷହୋଇ କହିବାକୁ ଯାଇ ଦେଖିଲେ ଆଉ ରକ୍ଷା ନାହିଁ । ଶେଷରେ ମାଗଅପା ଓ ଦେବେନ୍ଦ୍ର ବାବୁ ଆସି ସମାଧାନ କରିଲେ ଯେ, ମିନୁ ଭାଉଜ ଆସିବାରେ ମୋର ହାତ ନାହିଁ କି ଦୋଷ ନାହିଁ । ଏଥର ଝୁଙ୍କ ଉଠିଲା, ବାହାଘର ବିଧିବିଧାନରେ ହେବ । ମାଗଅପା, ଅନ୍ନପୂର୍ଣ୍ଣା ଦାଦା ଏମାନେ ଅନେକ କଷ୍ଟରେ ମା'ଙ୍କୁ ବୁଝାଇ ପାରିଲେ ଯେ ମହାପ୍ରସାଦବନ୍ଧ, ସ୍ୱୀକାର ଆଦି ଓଡ଼ିଶାରେ ଚଳେ ସିନା, ଅନ୍ୟଠି ଚଳେ ନାହିଁ । ମୋ ମା' ଓ ମାଇଁ ଏକଥାରେ ପାଟି ଫିଟାଉ ନ ଥାନ୍ତି ।

ବେଙ୍ଗଙ୍କ ବାହାଘର ବେଳେ ବିଧିବିଧାନ ଦେଖେଇ ବଢେଇଦେଲେ—ମୁକ୍ତାବୋଉ ଅପା ସବୁ କଲେ । ମୁକ୍ତାବୋଉ ଅପା ଉପରେ ବିଧିବିଧାନ ପାଳନ ବିଷୟରେ ମା'ଙ୍କର ଷୋଳଅଣା ବିଶ୍ୱାସ । ତେଣୁ କଥାହେଲା ମୁକ୍ତାବୋଉ ଅପା ନିଶ୍ଚୟ ଆସିବେ । ବିଧିବିଧାନ ବିଷୟରେ ମୋ ମା' ଓ ମାଇଁ ଉପରେ ମା'ଙ୍କର ବିଶ୍ୱାସ ନ ଥାଏ, କାରଣ ରୂପ ବାହାଘରକୁ ସତ୍ୟଭାମାପୁର ଯାଇ ମା' ଦେଖିଲେ ବାଉରାଣୀ ପରିବା ବନଉଛନ୍ତି । କଥାକଥାକେ ମୋତେ ଖୁଣ୍ଟା ଶୁଣିବାକୁ ପଡ଼େ ଯେ, ମୋ ମା' ଓ ମାଇଁ ଅଯୋଗ୍ୟ, ତାଙ୍କର ବାରଣ, ଚାରଣ କିଛି ନାହିଁ । ବାଉରାଣୀ ହାତରେ ଖାଉଛନ୍ତି । ଅନେକ କଷ୍ଟରେ ମାଗଅପା ବୁଝାଇଲେ ଯେ, ଜାଇ ଅନୁକୂଳ ପ୍ରଭୃତି ଅଲଗା ଅଲଗା ନ କରି ଏକା ଦିନକେ ସବୁ କରାଯାଏ । କାର୍ତ୍ତିକ ନନ୍ଦଙ୍କ ବୋଉ ପ୍ରଭୃତିଙ୍କ ପରାମର୍ଶ ନେଇ ମା' ବୁଝିଲେ ଯେ ମଙ୍ଗଳପାକ ପ୍ରଭୃତି ଏକାଦିନେ କଲେ ଦୋଷ ନାହିଁ ।

ଟୁକି ବାହାଘର ପୂର୍ବରୁ ବଡ଼ ଖୁଡ଼ୁତାଶୁରଙ୍କ ପୁଅ ଗୋବିନ୍ଦଙ୍କ ବାହାଘର ହେଲା । ଟୁକି ବାହାଘର ମୁଣ୍ଡ ଉପରେ, ସେମାନଙ୍କ ମନ ନେବାକୁ ହେବ ବୋଲି ବାହାଘରକୁ ମୁଁ ଗଲି । ବଡ଼ଖୁଡ଼ୀ ଭାରି ଖୁସି ହେଲେ । ମୋତେ ଖୁବ୍ ସମ୍ମାନ ଦେଲେ, ଅର୍ଥାତ୍ ମୋ ହାତରେ ସବୁ କରାଇଲେ । ସେ ପଦପଦକେ କହୁଥାନ୍ତି, କଂଗ୍ରେସରେ ତ ଜାତି ବାରଣ ନାହିଁ—ମୁଁ ତ ଶିରସ୍ଥାନ ଘର ଝିଅ ଇତ୍ୟାଦି । ସେଠାରୁ କେତେ ଜଣଙ୍କୁ ଆଣିବା ପାଇଁ ତିନି ଚାରି ଦିନ ରହିଲି । ମୁକ୍ତାବୋଉ ଅପା ପୂର୍ବରୁ ମା'ଙ୍କଠାରୁ ନାନାପ୍ରକାର ସାହାଯ୍ୟ ପାଇଥିବାରୁ ସେ, ନେଳମଣି ଅପା ଓ ଆଉ ଦୁଇ ତିନି ଜଣ ଆସିଲେ । ଗୋଟିଏ ହାଫ୍‌ଟନ୍ ମୋଟର ବସ୍ ରିଜର୍ଭ କରାଗଲା । ସେମାନେ ରାତିରେ ପହଞ୍ଚିଲେ । ଗାଁରୁ ପୁରୋହିତ, ବାରିକ ଆସିଥାନ୍ତି । ତାଙ୍କ କଥାରେ କାମଦାମ ହେଉଥାଏ । ମାଗଅପା ମଙ୍ଗଳହାଣ୍ଡି ବସାଇବାକୁ ଆସିଲେ, ବର ବିଦା ପରେ ସେ ଗଲେ । ବେଙ୍ଗ କଟକରେ ଥାଇ ମଧ୍ୟ ଆସିଲେ ନାହିଁ । ବରଯାତ୍ରୀରେ ଗଲେ ମୁକୁଭାଇ, ରୂପ, ଟୁଙ୍କ, ଭାଗୀରଥି ମହାପାତ୍ରଙ୍କ ବାପା ଦୁର୍ଗାଚରଣ ମହାପାତ୍ର (ସେ ଆମ ଦେଢ଼ଶୁରଙ୍କର ବଡ଼ ଜ୍ୱାଇଁ ଓ ମୋ ଶାଶୁଶ୍ୱଶୁର ତାଙ୍କୁ ଭାରି ଆଦର ସମ୍ମାନ କରୁଥିଲେ) । ଦେଢ଼ଶୁରଙ୍କ ପୁଅ ମଧୁସୂଦନ ଚୌଧୁରୀ, କାଳୀଚରଣ ମଙ୍ଗରାଜ (ମୁକ୍ତାବୋଉ ଅପାଙ୍କ ସ୍ୱାମୀ), ପୁରୋହିତ ଓ ବାରିକ, ବର, ସନ୍ଧ୍ୟା ପରେ ପୁରୀ ଏକ୍‌ସପ୍ରେସ୍‌ରେ କଲିକତା ଯିବା ପାଇଁ ବାହାରି ଗଲେ । ତାହାପରେ ଖେରସବାଲି ମତ ଦେଲେ ଯେ ବୋହୂ ତ ଘରକୁ ଆସିବ, ସେମାନଙ୍କର ଆଉ ରହିବାର ପ୍ରୟୋଜନ କ'ଣ ? ସେମାନେ ତ ସର୍ଭିସ ବସ୍‌ରେ ଯିବେ ନାହିଁ । ଖଣ୍ଡେ ଗ୍ରେଟ ଗାଡ଼ି ରିଜର୍ଭ କରି ତାଙ୍କୁ ପଠାଗଲା । ମା' ଭୀଷଣ ବିରକ୍ତ ହେଲେ; କିନ୍ତୁ କହିବେ କାହାକୁ କ'ଣ ? ସେମାନେ ଚାଲି ଯିବାରୁ ଘର ଶୂନ୍‌ଶାନ ।

ବାହାଘର ପରଦିନ ମାଡ୍ରାଜ ମେଲ୍‌ରେ ବରକନ୍ୟା ଆସିବେ । ସେତେବେଳେ ରାତି ଏଗାରଟାରୁ ବାରଟା ଭିତରେ । କଲିକତା ଆଡ଼ୁ ମାଡ୍ରାଜ ମେଲ ଆସୁଥାଏ । ପୁଅ ବୋହୂ ଆସିବାବେଳେ ଗରିବଘର, ବଡ଼ଲୋକଘର, ସହର ମଫସଲ, ସବୁଠି ଲୋକ ଭର୍ତ୍ତି ହୋଇଯାନ୍ତି । ବାହାଘରକୁ ଆସିଥିବା ବନ୍ଧୁକୁଟୁମ୍ବ ତାହା ଛଡ଼ା ବାହାର ଲୋକ ସମସ୍ତେ ଥାନ୍ତି । ମାତ୍ର ଏ ବୋହୂ ଆସିବା ବେଳକୁ କେହି କୁଆଡ଼େ ନାହାନ୍ତି । ମୋତେ ତ ଭାରି ଖରାପ ଲାଗୁଥାଏ । ମାଗଅପା ବି ବୋହୂ ଆସିବା ବେଳକୁ ଆସିଲେ ନାହିଁ । ମୋ ଭାଉଜମାନଙ୍କୁ ଆଣିବାକୁ ମା' ଇଚ୍ଛା କଲେ ନାହିଁ । ବଡ଼ ମାଇଁ ସେତେବେଳେ ପୁରୀରେ ଥାନ୍ତି । ଅପା କଟକରେ ନ ଥିଲା । ମା ଜାଣନ୍ତି ଟୁକିଙ୍କର ଏ ଅସବର୍ଣ୍ଣ ବିବାହର କଥାରେ ମୋ ମାମୁ ଓ ମା' ବିରୋଧ କରିବେ ନାହିଁ । ମାମୁ ଓ ମା' ମତ ପ୍ରକାଶ କରିଥିଲେ ଯେ ପୁଅ ସେତେବେଳେ ବୁଝାଶୁଝା କରି ଚାହୁଁଛି ସେଥିରେ ବାଧା ଦେବାରେ କ'ଣ ଅଛି ? ମା' ସେତେବେଳେ ଜାଣିଲେ ଏ ବାହାଘରରେ ମାମୁଙ୍କର ଆପତ୍ତି ନାହିଁ, ସେ ଭାରି ବିରକ୍ତ ହେଲେ । ମାତ୍ର ବରଯାତ୍ରୀ ହୋଇ ଯିବା ପାଇଁ ଜ୍ୱାଇଁମାନେ ସେତେବେଳେ କେହି ବାହାରିଲେ ନାହିଁ, ମୋ ଭାଇମାନେ ହିଁ ଆଗ ବାହାରିଲେ, ସେତେବେଳେ ମା'ଙ୍କ ମନ ଟିକିଏ ନରମ ହେଲା । ତଥାପି ବୋହୂ ଆସିବା ବେଳକୁ ମୋ ମାମୁଘର କାହାରିକୁ ଡାକିଲେ ନାହିଁ ।

ଏସବୁ ଭିତରେ ମା' ଇଚ୍ଛା ବ୍ୟକ୍ତ କରୁଥାନ୍ତି ଯେ ବୋହୂ ଆସିବାବେଳେ ଶିଉଳି ଲେଖା, ଦେଇପିଣ୍ଡି ଓଳଗି ଆଦି ସବୁ ବିଧିବିଧାନ ହେବ, ଦହି ହାଣ୍ଡିରେ ମୁଦି ପଡ଼ିବ ଇତ୍ୟାଦି । ବୋହୂ ଯେ ଆସିବ, ସେ ତ ଓଡ଼ିଆ ଘର ଝିଅ ନୁହେଁ । ସେ ତ ଏଗୁଡ଼ାକ କେବେ ଦେଖି ନ ଥିବ । ସେ ଯାଇ ଦେଇପିଣ୍ଡି ପାଖରେ ଶିଉଳି ଲେଖିବ, ଦହିହାଣ୍ଡିରୁ ମୁଦି କାଢ଼ିବ । କଥା ହୋଇଥାଏ ଯେ ଭୁବନାନନ୍ଦ ତାହାଙ୍କ ସ୍ତ୍ରୀ ରୁକୁଣା ବୋହୂ ଆସିବା ବେଳକୁ ଆସିବେ । ଖେଳସବାଳି ତ ଚାଲିଯାଇଛନ୍ତି । ମୋତେ ଏକୁଟିଆ ଅସହାୟ ବୋଧ ହେଲା । ମୁଁ ଯଦି ସେତେବେଳେ ବର୍ତ୍ତମାନ ପରି ବାହାରେ ବୁଲାବୁଲି କରୁଥାନ୍ତି, ତେବେ ତ କେତେ ଲୋକ ଆଣି ଜୁଟାଇ ଦେଇଥାଆନ୍ତି । ମାତ୍ର ସେତେବେଳେ ତ କୁଆଡ଼େ ବାହାରକୁ ଯାଉ ନ ଥିଲି । ଯାହା ବା ଚେଷ୍ଟା କରିଥାନ୍ତି, ଆଉ ପାଞ୍ଚଦଶଙ୍କୁ ଡାକିବା ପାଇଁ ମା' ଚାହୁଁ ନ ଥାନ୍ତି । ଆମର ପରିଚିତ ବନ୍ଧୁବାନ୍ଧବ କେତେ ଲୋକ କଟକରେ ରହୁଥିଲେ । ଆମର ଯିବା ଆସିବା ମଧ୍ୟ ଥିଲା । ବାହାଘରର କିଏ ସପକ୍ଷ ଓ କିଏ ବିପକ୍ଷ, ତାହା ଜାଣିବା ମୁସ୍କିଲ । ମୁଁ ଅସହାୟ ଅବସ୍ଥାରେ ପଡ଼ି ରୁକୁଣାଙ୍କ କଥା ଭାବିଲି । ତାଙ୍କୁ ସାଙ୍ଗରେ ନେଇ ଜଳେ ଭୁବନାନନ୍ଦ ବାବୁ ଆସି ପହଞ୍ଚିଲେ । ରୁକୁଣା ନିରଞ୍ଜନ ବାବୁଙ୍କ (ଗଞ୍ଜାମର ସେତେବେଳେ ବିଶିଷ୍ଟ କଂଗ୍ରେସ କର୍ମୀ ନିରଞ୍ଜନ ପଟ୍ଟନାୟକ) ଭଉଣୀ ହୋଇଥିବାରୁ ମା'ଙ୍କର ଝିଅ ସ୍ୱଭାବ ହେଉଥିଲେ । ରୁକୁଣା ଆସି କହିଲେ — ମୁଁ ନନ୍ଦେପୁଅଳୀ ଶାଢ଼ୀ ନେବାକୁ ଆସିଛି । ତାଙ୍କୁ ଦେଖି ମୋ ମନରେ ସାହସ ହେଲା । ସେ କଥାବାର୍ତ୍ତା ଛଳରେ ମା'ଙ୍କୁ ବୁଝାଇ ଦେଲେ ଯେ ସ୍ତ୍ରୀ-ଆଚାର କେତେଗୁଡ଼ିଏ ବାଦ ଦେବାକୁ ହେବ । ବରକନ୍ୟା ଆସିବା ପରେ ରୁକୁଣା ଘରକୁ ଗଲେ । ଘରେ ଆମେ ଯେତିକ, ସେତିକ । ବୋହୂ ଆସିଲା, ଲୋକ, ଗହଳି ନାହିଁ । ଅଭ୍ୟାସ ଦୋଷ ମନକୁ ଖରାପ କରୁଥାଏ ।

ବାହାଘର ପର୍ଯ୍ୟନ୍ତ ତ ସରିଲା । ତା' ପର କଥା ଆହୁରି ମୁସ୍କିଲ । ମା' ଚାହିଁଲେ — ବୋହୂ ଆମ ଢଙ୍ଗରେ ଚାଲିବ । ଆମ ଖାଇବା ସେ ପସନ୍ଦ କରିବ । ମାଛ ମାଂସ ଖିଆ ତ ପ୍ରାୟ ଦଶ ବର୍ଷ ପୂର୍ବରୁ ବନ୍ଦ ହୋଇ ସାରିଥାଏ । ନିରାମିଷ ଖାଇବାରେ ମଧ୍ୟ ତାଙ୍କ ଖାଇବା ଆମ ଖାଇବାରେ ଅନେକ ପ୍ରଭେଦ ଅଛି । ସେ ସବୁ ଯାହା ଚାଲିଥାଏ, ମାତ୍ର ମିନୁର ଛୁଆଁ ରନ୍ଧା ଜିନିଷ ମୁଁ ଓ ମା' ଖାଇଲୁ ନାହିଁ । ଏହା ମୋ ପାଇଁ ବଡ଼ ସମସ୍ୟା ହେଲା । ମିନୁ ସେତେବେଳେ ସେ କଥାକୁ ସମ୍ଭାଳି ନେଲେ ମଧ୍ୟ ତା ମନରେ ଗୋଟିଏ ଗଣ୍ଠି ହୋଇ ରହିଲା । ମା'ଙ୍କର ମୋ ଉପରେ ତୀକ୍ଷ୍ଣ ଦୃଷ୍ଟି ବରାବର ରହିଥାଏ, କାଳେ ମୁଁ ମିନୁ ଛୁଆଁ ଖାଇଦେବି । ['ଜୀବନ-ପଥେ' ବହିରୁ]

"ଚୁକ୍"- }
"ଚୁଆଁ" } ନବ ବାବୁଙ୍କର ଡାକ ନାଁ ।

ମିନୁ— ମାଳତୀ ଦେବୀଙ୍କର ଡାକ ନାମ

# ତାଙ୍କ ନିଜ ମୁହଁରୁ

## ପ୍ରଶ୍ନୋତ୍ତର

ପ୍ର—ଆପଣଙ୍କର ରାଜନୈତିକ ଜୀବନ ଆରମ୍ଭ ହେଲା କେବେ ?

ଉ—ପିଲାଦିନୁ ତ ଆମ ଘରେ ରାଜନୀତି ଚର୍ଚ୍ଚା ଚାଲିଥାଏ ; ତେଣୁ ସେହି ବୟସରେ ଆମେ ଉତ୍କଳ ସମ୍ମିଳନୀକୁ ସମସ୍ତଙ୍କ ସହିତ ଯାଉଥିଲୁ । ବୟସ ତ ହୋଇ ନ ଥିଲା ବୁଝିବାର କିଛି, ତଥାପି ଯୋଗ ଦେଉଥିଲୁ । ସେତେବେଳେ ସ୍ୱରାଜ୍ୟ ଆନ୍ଦୋଳନ ମଧ୍ୟ ଚାଲୁଥାଏ । ଆମ ଘରକୁ ଆସୁଥାନ୍ତି ଆଚାର୍ଯ୍ୟ ମହାଶୟ (ଆଚାର୍ଯ୍ୟ ହରିହର ଦାସ) । ଆମ ବାପା ଏବଂ ହିତାକାଂକ୍ଷୀମାନେ ମୋର ପାଠପଢ଼ା ନେଇ ତାଙ୍କର ମତାମତ ପଚାରିଲେ । କେଉଁ ସ୍କୁଲରେ ଦେବା ! କଲେକ୍ଟରେଟରେ ନାମ ଲେଖାଯାଇ ପାରୁନାହିଁ । ସରକାରୀ ସ୍କୁଲ୍ କି ନା ! ପ୍ୟାରୀମୋହନ ଏକାଡ଼େମୀରେ ନାମ ଲେଖା ସ୍ଥିର ହେଲା ଏବଂ ସେଠାରେ ହିଁ ପଢ଼ିଲି । ୧୯୧୩ ରେ ବୋଧହୁଏ ମୋ ନାମ ଲେଖା ହେଲା, କାରଣ ଯୁଦ୍ଧ ମୋ ନାମ ଲେଖା ପରେ ପରେ ହିଁ ଆରମ୍ଭ ହେଲା । ଏହି ସମୟରୁ ମୋର conscious ରାଜନୈତିକ ଜୀବନ ଆରମ୍ଭ ହେଲା ବୋଲି କହିପାରନ୍ତି ।

ପ୍ର—କ୍ଷମତା ରାଜନୀତିରୁ ବିଦାୟ ନେବା ପରେ ହଠାତ୍ ଆପଣ କାହିଁକି ସମଗ୍ର ପ୍ରକାର ସକ୍ରିୟ ରାଜନୀତିରୁ ଓହରିଗଲେ ? ସୀମା ଆନ୍ଦୋଳନ ମୁଖ୍ୟମନ୍ତ୍ରୀଭାବେ ଆପଣଙ୍କୁ ଅପ୍ରିୟ କରାଇଦେଲା ଏବଂ ସେହି ବିଭ୍ରାଟ ପରଠାରୁ ଆପଣ ରାଜନୀତିରୁ ଓହରିଗଲେ ବୋଲି ସାଧାରଣଙ୍କ ଧାରଣା, ଆପଣଙ୍କ ମତ କଣ ?

ଉ—ତା ତ ସାଧାରଣ ଧାରଣା । ସେତେବେଳେ ବି ଜାଣିଥିଲି ; କିନ୍ତୁ do'nt care କାରଣ ରାଜନୀତିରୁ ଓହରିଯିବାର ଧାରଣା ଯେ ଏହି ବିଭ୍ରାଟ ପରେ ହଠାତ୍ ମୋ ମନକୁ ଆସିଲା, ତା ନୁହେଁ । ଏ ଘଟଣା ତ ଘଟିଲା ୧୯୫୫-୫୬ରେ ; କିନ୍ତୁ ଏହାର ଯଥେଷ୍ଟ ପୂର୍ବରୁ ଅର୍ଥାତ୍ ୧୯୪୮ ରୁ ମୁଁ ସକ୍ରିୟ ରାଜନୀତିରୁ ଓହରିଯିବା ପାଇଁ ଚେଷ୍ଟା କଲିଣି – ତେଣୁ ମୁଁ ୧୯୪୮ ରୁ ମନ୍ତ୍ରିମଣ୍ଡଳରୁ ଇସ୍ତଫା ଦେଇଥିଲି । କାରଣ ଆମେ ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ଯାହାସବୁ ଭାବି ଚାଲିଥିଲୁ, ମୁଁ ଦେଖିଲି ମନ୍ତ୍ରିମଣ୍ଡଳରେ ସେ ଆଭିମୁଖ୍ୟ ରହିପାରିଲା ନାହିଁ, ବରଂ ଠିକ୍ ଓଲଟା ହେଲା । ତେଣୁ ଲୋକଙ୍କ ସହିତ କିଛି ସମ୍ପର୍କ ରହିଲା ନାହିଁ । ସବୁ ମୂଳରେ ଲୋକ । ସେମାନେ ଯଦି ତାଙ୍କ ବଳ ଅନୁଭବ ନ କରନ୍ତି, ସେମାନେ ଯଦି ନ ଭାବନ୍ତି ଯେ ସେମାନେ ହିଁ ମୂଳ, ତାହାହେଲେ ସ୍ୱରାଜ୍ୟ ଆଉ କ'ଣ ହେଲା ? ସେତିକିବେଳେ ଠିକ୍ ଗାନ୍ଧୀଙ୍କର ହତ୍ୟା ଓ ମୋ ପୁଅର ମୃତ୍ୟୁ ପ୍ରାୟ ଏକ ସଙ୍ଗରେ ହେଲା । ମୁଁ ଭାରି ବିବ୍ରତ ହୋଇ ପଡ଼ିଥିଲି । ତାହାର ଭିତରେ ରାଜନୀତି ପ୍ରତି ଗୋଟିଏ disillusionment ମଧ୍ୟ ଅତି ତୀବ୍ର ହେଉଥାଏ । ମୋର ଧାରଣା ହେଲା ଯେ ଆମର ରାଜନୀତିରେ ରହିବାଟା ଭୁଲ । ତେଣୁ ମୁଁ ୧୯୪୮ ରେ ମନ୍ତ୍ରିମଣ୍ଡଳରୁ ଇସ୍ତଫା ଦେଇ ବେସିକ୍ ଶିକ୍ଷା ପ୍ରଚାରର ଦାୟିତ୍ୱରେ ରହିଲି । ଏହି ଦାୟିତ୍ୱରେ ଥିବା ସମୟରେ ମହତାବ ବାବୁଙ୍କୁ କେନ୍ଦ୍ରକୁ କ୍ୟାବିନେଟ୍ ମନ୍ତ୍ରୀ କରିନେବା ପାଇଁ ନେହରୁଙ୍କ ପ୍ରଚେଷ୍ଟା ଚାଲିଲା । ସେ ସବୁର ବିଶ୍ଳେଷଣ ଆମେ ବର୍ତ୍ତମାନ ବୁଝୁଁଛୁ ଯେ, That was a very deep game. ଏହା ଅଭିସନ୍ଧିମୂଳକ ଥିଲା । ଯେଉଁମାନେ ଚିନ୍ତା ଜଗତରେ ନେହରୁଙ୍କ ବିରୋଧୀ ଥିଲେ ଅର୍ଥାତ୍ ମହାତ୍ମା ଗାନ୍ଧୀଙ୍କ ପରି ଭାବୁଥିଲେ, ସେ ତାର ଓଲଟା ଭାବୁଥିଲେ । ସେହିମାନଙ୍କ ଭିତରୁ ଯେଉଁମାନେ Prominent (ପ୍ରଧାନ) ଲୋକ ଥିଲେ, ସେମାନଙ୍କୁ ପାଲରେ ପକାଇବା ପାଇଁ ନେହରୁ ଚକ୍ରାନ୍ତ କରୁଥିଲେ । ମହତାବ ବାବୁ ଥିଲେ (Working Committee) କାର୍ଯ୍ୟକାରୀ କମିଟିର ସଭ୍ୟ । ଏହି କାର୍ଯ୍ୟକାରୀ କମିଟିରେ ଯେଉଁ voting ଇତ୍ୟାଦି ହୁଏ, ମହତାବ ବାବୁ ଏବଂ ଅନ୍ୟ କେତେଜଣ ମହାତ୍ମା ଗାନ୍ଧୀଙ୍କ line support କରୁଥିଲେ । ମହତାବ ବାବୁଙ୍କର ଖୁବ୍ ମହତ୍ତ୍ୱ ଥିଲା । ତେଣୁ ନେହରୁ ମୂଳରୁ ଦେଖିଲେ ଏ ଲୋକଟାକୁ ନିଜ ଆଡ଼କୁ ନେବାକୁ ହେବ । ମହତାବ ବାବୁ ଚକ୍ରାନ୍ତର

ଶିକାର ହେଲେ । ସେଠାକୁ ଯାଇ ସେ ଗୋଳମାଳରେ ପଡ଼ିଲେ । ତେଣୁ ମହତାବ ବାବୁ ଯଦି କେନ୍ଦ୍ରକୁ ଯାଆନ୍ତି, ତାହେଲେ ଏଠାରେ କିଏ ରହିବ । ଏହାହିଁ ଖୋଜା ଗୁଲ୍‌ଲା, ଧନେ ବନମାଳୀ ପଟ୍ଟନାୟକ ଆସି ମତେ କହିଲେ ଯେ ନେହରୁଙ୍କ ସହିତ କଥାବାର୍ତ୍ତା ପାଇଁ ମହତାବ କହିଛନ୍ତି । ମତେ ଏଥିପାଇଁ ପୁଣିକୁ ଡାକିନେଲେ । ନେହରୁଙ୍କ ସହ ଲେଡି ମାଉଣ୍ଟବ୍ୟାଟେନ ମଧ୍ୟ ଆସିଥାନ୍ତି । ନେହରୁ ମୋତେ ବୁଝାଇ କହିଲେ ଯେ ତୁମେ ଭଲ କାମ କରୁଛ । ପୁଣି ଆମ ଦେଶ କାମ ତ କରିବାକୁ ପଡ଼ିବ । ବହୁ ଆଲୋଚନା ହେଲା । ୧୯୫୦ ରେ ମୁଁ ଅନିଚ୍ଛା ସତ୍ତ୍ୱେ ରାଜି ହେଲି । ଏହି ରାଜି ହବାଟା ଗୋଟିଏ illusion, weakness ହେଲା ବୋଧହୁଏ । ମୁଁ ଭାବିଲି କ୍ଷମତା ବାହାରେ ରହି କିଛି କରି ପାରୁନାହିଁ । କ୍ଷମତା ଭିତରେ ରହି କିଛି କରିହେବ । ସେତେବେଳେ ୨ । ୩ଟା ମଧ୍ୟବର୍ତ୍ତୀକାଳୀନ ନିର୍ବାଚନ ହେଲା । କଂଗ୍ରେସ ପ୍ରାର୍ଥୀମାନେ ହାରିଗଲେ । ସେଥିପାଇଁ ଲେଖିଥିଲି ଯେ ଆମ ଭିତରେ top ranking ଲୋକେ (କ୍ଷମତା) ବାହାରେ ରହିବା ଉଚିତ । Congress is to deliver the goods —ବାହାରେ ନ ରହିଲେ କିଛି କରିହେବ ନାହିଁ, ସେଇ କଥା କାମରାଜ ୧୦ ବର୍ଷ ପରେ ଅବଶ୍ୟ କହିଲେ । ସେତେବେଳେ ନେହରୁ ଗୋଟିଏ double game ଖେଳୁଥାନ୍ତି । ତାଙ୍କର ଗୋଟିଏ କାଇଦା ଯେ, ସବୁଥିରେ ସେ ରାଜି ହେଉଥିଲେ; କିନ୍ତୁ କାର୍ଯ୍ୟରେ କିଛି କରୁ ନ ଥିଲେ । ଏହିସବୁ ଦୃଷ୍ଟିରୁ ମୋର ପୁନର୍ବାର disillusionment ହେବା ସ୍ୱାଭାବିକ । ସୀମା ଆନ୍ଦୋଳନ ତ ୩ ବର୍ଷ ପରେ ହେଲା । ଏହା ମୋତେ ସୁବିଧା ଦେଲା ରାଜନୀତିରୁ ଓହରି ଆସିବାକୁ ।

ପ୍ର—ଆପଣ କ'ଣ ଭାବନ୍ତି ନାହିଁ ଯେ ସରେଇକଲା, ଖରସୁଆଁ ଓଡ଼ିଶାରେ ମିଶୁ, ଦାବି କରି ହୋଇଥିବା ସୀମା ଆନ୍ଦୋଳନ ଏକ ଯଥାର୍ଥ ଆନ୍ଦୋଳନ ?

ଉ—ସୀମା ଆନ୍ଦୋଳନରେ ଦାବି କ'ଣ ଥିଲା ? ସରେଇକଲା, ଖରସୁଆଁର ଦାବି ? ତା ଆଗରୁ ଆମର ଯେଉଁ ଦାବି ରହିଆସିଛି ଯେ ସିଂହଭୂମି ଓଡ଼ିଶା ସହିତ ମିଶୁ, ତାହା ପାଇଁ ଆମେ ଦାବି କରିବୁ ନା ସରେଇକଲା, ଖରସୁଆଁ ମିଶୁ ବୋଲି ଦାବି କରିବୁ ? ବିଶେଷ କରି ଗୋପବନ୍ଧୁ, ଗୋଦାବରୀଶ ସବୁ କହୁଥିଲେ ସିଂହଭୂମି ଆମର । ସିଂହଭୂମିର କର୍ମୀମାନେ ବିଶେଷ କରି ବିଜୟ ପାଣି, କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ ଯାଇ ସରେଇକଲା, ଖରସୁଆଁର ଆନ୍ଦୋଳନରେ ଭାଗ ନେଲେ । ସିଂହଭୂମିରେ ଓଡ଼ିଆ ବେଶି, ଅଥଚ ସଂପୂର୍ଣ୍ଣ ସିଂହଭୂମି ମିଶ୍ରଣର ଦାବି ନ କରି ଆମେ ଦାବି କଲୁ କେବଳ ସରେଇକଲା, ଖରସୁଆଁର ମିଶ୍ରଣ ପାଇଁ ।

ପ୍ର—ଆଚ୍ଛା, ସରେଇକଲା, ଖରସୁଆଁ ଯେ ବିହାର ଅଞ୍ଚଳରେ ରହିଗଲା, ଏଥିପାଇଁ ଦାୟୀ କିଏ ?

ଉ—ସରେଇକଲା, ଖରସୁଆଁ ଓଡ଼ିଶାରେ ମିଶିଥିଲା merger (ଗଡ଼ଜାତ ମିଶ୍ରଣ) ବେଳେ । ସେଠାକାର ଯେତେ ଓଡ଼ିଆ ଲୋକ ଥିଲେ, ସେମାନେ ମଧ୍ୟ ରାଜା ସହିତ ଏହା ମିଶ୍ରଣର ବିରୋଧ କଲେ । ସେମାନଙ୍କର ଉଦ୍ଦେଶ୍ୟ ଥିଲା ସରେଇକଲା, ଖରସୁଆଁ ମିଶାଇ ନ ଦେବା ପାଇଁ । ସରେଇକଲା ରାଜା ଏହି ଆନ୍ଦୋଳନକୁ ଏପରି କରିବାକୁ ଚାହିଁଲେ, ଯେପରି କି ସାରା ଓଡ଼ିଶାରେ ଗଡ଼ଜାତ ମିଶ୍ରଣ ଭାଙ୍ଗିଯିବ । ଏଥିପାଇଁ ସେ ଆଦିବାସୀ ନେତା ଜୟପାଲ ସିଂଙ୍କୁ ଝାଡ଼ଖଣ୍ଡ ଦାବି କରି ଆନ୍ଦୋଳନ କରିବାକୁ ମତାଇଲେ । ଏହି ଦୁଇଟି ଆନ୍ଦୋଳନ ମିଶିଯାଇ ପରିସ୍ଥିତି ଅସମ୍ଭବ ହେଲା । ସରେଇକଲା, ଖରସୁଆଁ ସିଂହଭୂମି ସହିତ ସଂଯୋଗ କରିଦିଆଯାଇ ବିହାରରେ ରଖିଦିଆଗଲା ।

ଶିକ୍ଷା ଓ ସଂସ୍କୃତି :

ପ୍ର—ଆମେ ଭାବୁ ଭାରତରେ ଦାରିଦ୍ର୍ୟ ବିରୁଦ୍ଧରେ ଯେପରି ଏକ ଅର୍ଥନୈତିକ ବିପ୍ଳବର ଆବଶ୍ୟକତା ରହିଛି, ସେହିପରି ଗଣତନ୍ତ୍ରକୁ ବଜାୟ ରଖିବା ଓ ସାଧାରଣ ଜନତାକୁ ସ୍ୱାଧୀନତାର ବାସ୍ତବିକ ଅର୍ଥ ବୁଝାଇବା ପାଇଁ ଏକ ସାଂସ୍କୃତିକ ବିପ୍ଳବର ମଧ୍ୟ ଆବଶ୍ୟକତା ରହିଛି । ଆପଣଙ୍କର ମତ କ'ଣ ?

ଉ—ସାଂସ୍କୃତିକ ଜାଗରଣର ଆବଶ୍ୟକତା ରହିଛି । ଏଥିପାଇଁ ମାତୃଭାଷାକୁ ମହତ୍ତ୍ୱ ଦିଆଯିବା ଉଚିତ । ସମସ୍ତ କାର୍ଯ୍ୟକ୍ରମ ମାତୃଭାଷାରେ ହିଁ ହେବା ଉଚିତ, କାରଣ ନିଜ ଭାଷାରେ ଜଣେ ଯେତେ ଉପରକୁ ଯାଇପାରିବ, ତାହା ଅନ୍ୟ ଭାଷା ମାଧ୍ୟମରେ ସମ୍ଭବ ନୁହେଁ । ମାତୃଭାଷାର ଉନ୍ନତିରେ ହିଁ ଦେଶର ସର୍ବାଙ୍ଗୀନ ଉନ୍ନତି ସମ୍ଭବ ।

fled her Matriculation on and her brother thrown up college for Surul. Now he sat at the feet of the Gurudev to whom she too had pilgrimmaged, to the poet who sang—

"From the Slavery of fear, oh my God, let me be born again
Unto fearlessness at Thy Feet."

With hindsight we know now that Naba Babu's meeting there with Minoo Sen was to be an event of at least as much significance in his life as perhaps all his other experiences taken together at that great meeting place of East and West.

When the proposal of his marriage with Shrimati Sen was mooted at the Cuttack home, the reaction of some of the family's relations by marriage and of the Karan community in general was one of shocked propriety. The main objection of course centred round caste—or its absence. The head of the family, however, was Gopabandhu who, with his worthy wife Rama Devi, has demonstrated through the revolutionary lives of peace they have lived their capacity to welcome the unconventional and the new : witness their rejection of formal education for their children and discarding of considerations of caste and creed in marriage as also of ostentation of all kinds at all social functions. Some leading men of the Karan society would almost stop at nothing to prevent the marriage. But force of character carried everything before it. With the maternal uncles of Gopabandhu and of Rama Devi and the father of another prominent Gandhian throwing their weight on the side of the proposal, the marriage finally took place in the July of 1927, a couple of years after the pair had first met. It may be mentioned in passing that on the other side Mrs. Sen Gupta's misgivings centred mainly round the future prospects of her would-be son-in-law who had thrown over college and a life of comfort to work for the country's freedom and was now, amidst fierce controversy, to take to wife her daughter, accustomed on the whole to a life of ease—barring of course her years at Shantiniketan where, as became evident later, the natural setting and the wholesome rigours of a simple way of living had fitted her for the kind of life she was to lead in a not too distant future as a freedom fighter *par excellence*.

One must, at the same time, try and imagine the anguish of Naba Babu's fond, long-widowed mother who had lost seven of her eleven children and whose life had since become one ceaseless prayer sent up to Lord Jagannath through an endless string of pujas and fasts for taking her away from this mortal coil lest she should live to see the death of another child. After such a perfect bride as Rama Devi for her 'Gopo' she was now to see her dear 'Tuan' consorted with a 'casteless' girl of alien upbringing ! She went away to Puri where she would take up her *guhari* (great grievance) with the Lord personally.

And the Lord sent it—if in His own inscrutable way that she should live to see the day when her Tuan's *bohu* should make her another illustrious daughter-in-law, true consort of the Naba Babu we know. Their life together has been in the spirit in which they began it—

"For we are bound where no mariner has dared to go,
And we shall risk the ship, ourselves and all."

---

## Naba Bhai

**Justice H. Mohapatra**

I sought his acquaintance soon after I came to Cuttack to join the Intermediate Arts class in Ravenshaw College in 1921 July. He had, by then, left that college in response to Gandhiji's call to boycott the schools and colleges, as a plank in the national movement based upon non-violent non-cooperation. I felt a sense of guilt because I was entering into the college which some young men had thought proper to abandon to join the fight for freedom. In a stage of wavering, I met him one afternoon. My first impression was, he was sure his action was just, irrespective of the consequence that might follow, but he was not sure if he should ask another to follow the same course. He left me more undecided than before. Two days after, I saw him in a football field and we chatted again. My second impression was, he was light-hearted and took everything for fun. The same day, in the evening we again met on the river bank, in front of their palatial house. A thin, bare-bodied youth with wandering thoughts, he exposed a serious mind, prepared to swim or sink in uncharted waters, either alone or in company. I queried and expected, he would ask me to desist from continuing in the college, which I had joined ten days before. But he took the wind out of my sail. He said, why are you wavering, you have got a scholarship (I had stood second in the matriculation examination of the Patna University); you continue; we must have men on every front. Right or wrong, that settled me then : since that time he became Naba Bhai to me.

Essentially, he was an individualist, expressing much less than what he thought or believed. He pursued idealism more than politics. That was why others were impressed and inspired by him but did not, rather could not, follow him exactly. Whether in Congress or in Socialist party, or in the ministry or in Bhoodan, he felt disenchanted and withdrew into an isolation. Books were his best companions. He had a sense of value and had anchored his faith on that at every level and in every situation. A strong band with political following, therefore, could not gather round and under him, though he was an idol of admiration of all sections of adherents to politics.

Human dignity was dear to him. Political opponents or persons strongly opposed to the line of his activities never received the scar of his wrath. I saw him chatting with them, not casually, but with genuine concern about them and their families. A streak of uncertainty and vagueness always surrounded him ; but inside, his vision was distinct and distant. He lived more within himself than outside—a sensitive heart and piercing mind.

---

# TRIBUTES

( 1 )

Neelam Sanjiva Reddy
8th August '84

My dear Shri Dwivedy,

Your kind letter.

I am glad that you are publishing a 'Souvenir' in honour of late Nababubu. I had the honour of visiting him at Angul in 1981, when I was the President of the Republic.

As member of the Congress Working Committee and Chief Ministers of our respective States, we have had very close association. My admiration for his transparent sincerity and simplicity was unbounded. He lived a life of personified truth.

He was a saint. May his soul rest in peace.

Regards to you,

Yours sincerely
Sd/-

**Sanjiva Reddy**

( 2 )

Dr. Sugata Dasgupta writes before his own death in August 16, 1984 :

"He was the greatest man produced by this century, which however is a barren one. Even Sarvodayees fail to fathom his depth.

It is Bapi who is the real founder of the 'School' of research that the Gandhian Institute represents."

---

# ପତ୍ରେ ଶ୍ରଦ୍ଧାଞ୍ଜଳି

ତା ୧୫ । ୭ । ୮୪

ପ୍ରିୟ ସୁରେନ୍ଦ୍ର ବାବୁ,

ଆପଣଙ୍କ ତାରିଖ ଉଲ୍ଲେଖ ନ ଥିବା ଚିଠି ଖଣ୍ଡି ମୁଁ ଚଳିତ ମାସ ୧୨ ତାରିଖରେ ପାଇଲି । ଖୁବ୍ ଖୁସି ହେଲି, ଜାଣିଲି ଯେ, ନବ ବାବୁଙ୍କ ଆସନ୍ନ ଜନ୍ମଦିନକୁ ଏକ ସ୍ମରଣିକା ପ୍ରକାଶ ଲାଗି ଉଦ୍ୟମ କରୁଛନ୍ତି ଆପଣ । ସେଥି ସଙ୍ଗେ ନବ ବାବୁଙ୍କ ବିଚ୍ଛେଦ-ଦୁଃଖ ଅଧିକ ଘନୀଭୂତ ହେଲା । "ଦୂର ପର୍ବତ ସୁନ୍ଦର ଦୂର ବନ୍ଧୁ ସୁନ୍ଦର" ବୋଲି ଓଡ଼ିଆରେ ଗୋଟିଏ ଢଗ ରହିଛି । ବନ୍ଧୁ ଭାବରେ ନବବାବୁଙ୍କୁ ମୁଁ ଏତେ ନିକଟ ଆତ୍ମୀୟ ପରି ପାଇଥିଲି ଯେ, ଦୂରରୁ ତାଙ୍କୁ ଦେଖିବା ସୁଯୋଗ ମତେ ମିଳିଲା ନାହିଁ । ରାଜନୀତିରେ ଯୋଗଦେବା ଆହ୍ୱାନକୁ ମଧ୍ୟ ଗ୍ରହଣ କରିବାକୁ ଅସମର୍ଥ ହେଲି । ତାଙ୍କ ତିରୋଧାନ ସମ୍ବାଦ ପାଇବା ମାତ୍ରେ ଅନୁଭବ କଲି—ଅନେକ ପୂର୍ବରୁ ଆତ୍ମାର ମୋର ମଧ୍ୟ ତିରୋଧାନ ଘଟିସାରିଛି । ନିଜେ ଜୀବିତ ରହିବାର ସାର୍ଥକତା ଅବା ଲୋପ ପାଇଗଲା—ମୋର ନବବାବୁ ଆଉ ସ୍ୱଦେହରେ ନାହାନ୍ତି, ଶୁଣିବା ମାତ୍ରେ ।

ଅଳ୍ପ ଦିନର ବ୍ୟବଧାନରେ ଓଡ଼ିଶାର ରାଜନୈତିକ ଆକାଶରୁ ଯୋଡ଼ିଏ ଉଜ୍ଜ୍ୱଳତମ ନକ୍ଷତ୍ର ଖସି ପଡ଼ିଲେ—ଯାହାଙ୍କ ତୁଳନା ଖୋଜି ପାଇବା କଷ୍ଟସାଧ୍ୟ । ପ୍ରଥମଟି ହେଲେ—ଓଡ଼ିଶାର "ପ୍ରଥମ ପ୍ରଧାନ ମନ୍ତ୍ରୀ" ଶ୍ରୀ ବିଶ୍ୱନାଥ ଦାଶ—ତାଙ୍କ ଅବ୍ୟବହିତ ପରେ ମୁଖ୍ୟମନ୍ତ୍ରୀ ଶ୍ରୀ ନବକୃଷ୍ଣ ଚୌଧୁରୀ—"ନିତ୍ୟ ନିର୍ମଳ, ନିତ୍ୟ ନୂତନର ଦ୍ରଷ୍ଟା, ସ୍ରଷ୍ଟା ଓ ସାଧକ" ନବ ବାବୁ ଆଉ ନାହାନ୍ତି··· ଏହା କହିବାକୁ କିମ୍ବା ଶୁଣିବାକୁ ମନ ତଥା ଧୈର୍ଯ୍ୟ ସୁଦ୍ଧା ପ୍ରସ୍ତୁତ ହୋଇ ପାରୁ ନାହିଁ ।

ନବକୃଷ୍ଣଙ୍କ ଅଗ୍ରଜ ପୂଜ୍ୟ ଗୋପବନ୍ଧୁ ଚୌଧୁରୀ ଏବଂ ଅଗ୍ରଜା ପୂଜ୍ୟା ରମା ଦେବୀ ଦେଶ ଜାତିର କଲ୍ୟାଣ ସାଧନରେ ସପରିବାର ଜୀବନ ଉତ୍ସର୍ଗ କରି ନବୋତ୍କଳରେ ଅତୁଳନୀୟ ପାରିବାରିକ ଆଦର୍ଶ ପ୍ରତିଷ୍ଠା କରିଛନ୍ତି ।

ସମଗ୍ର ଦେଶ ଆଜି ରାଜନୈତିକ ତଥା ଅର୍ଥନୈତିକ ଆଦି ବିଭିନ୍ନ କ୍ଷେତ୍ରରେ ଏକ ବିରାଟ ସଙ୍କଟଜନକ ପରିସ୍ଥିତିର ସମ୍ମୁଖୀନ ହେଲାଣି । ଏଇଭଳି ସନ୍ଧିସନ୍ଧ ମୁହୂର୍ତ୍ତରେ ବିଜ୍ଞ ପରାମର୍ଶ ଓ ଦୂରଦର୍ଶିତାର ନେତୃତ୍ୱ ଏକାନ୍ତ ଲୋଡ଼ା ହେଉଥିବା ବେଳେ ଉତ୍କଳର ରାଜନୈତିକ ଆକାଶରୁ ନବବାବୁଙ୍କ ଭଳି ଏକ ଉଜ୍ଜ୍ୱଳ ତାରକାର ଅନ୍ତର୍ଦ୍ଧାନ ସେଇ ଅନ୍ଧକାର ବାତାବରଣକୁ ଅଧିକ ଘନୀଭୂତ କଲା ସିନା !

ତଥାପି "ଅହିଂସା—ଅସହଯୋଗ"ର ଚିରନ୍ତନ ଭାରତୀୟ ଅସ୍ତ୍ରଶସ୍ତ୍ର ସବୁ ବୈଜ୍ଞାନିକ ଉଦ୍‌ଭାବନକୁ ଉପହାସ କରିବ ବୋଲି ବିଶ୍ୱାସ ଦୃଢ଼ରୁ ଦୃଢ଼ତର ହୋଇଉଠେ । ଦେଶ—ଦୁନିଆର ଆଜି ଏଇଭଳି ଏକ ସନ୍ଧି-ସନ୍ଧ ମୁହୂର୍ତ୍ତରେ ନବ ବାବୁଙ୍କର ତିରୋଧାନ ତାଙ୍କର ଅସଂଖ୍ୟ ବନ୍ଧୁଙ୍କୁ ମ୍ରିୟମାଣ କରିବ ନିଶ୍ଚୟ । କାରଣ ନେତୃତ୍ୱ ତାଙ୍କର କେବଳ ତ ରାଜନୀତି ଉପରେ ପ୍ରତିଷ୍ଠିତ ନ ଥିଲା—ପ୍ରତିଷ୍ଠିତ ଥିଲା ସାର୍ବଭୌମ ବନ୍ଧୁତା ଉପରେ ।

କାଳନ୍ଦୀ ଚରଣ ପାଣିଗ୍ରାହୀ

ମହାଶୟ,

ମୋର ପ୍ରଣାମ ନେବେ । ୧୯୪୦-୪୨ରେ ନବବାବୁ ପ୍ରଦେଶ କଂଗ୍ରେସ କମିଟିର ସଭାପତି । ଉକ୍ତ ସମୟରେ ବ୍ରିଟିସ୍ ସରକାର ଆଦେଶ କଲେ ସହରମାନଙ୍କରେ ଯେଉଁଠି କଂଗ୍ରେସ ସଙ୍ଗଠନ ଅଫିସ ଅଛି, ତାକୁ ଧ୍ୱଂସ କରିଦିଅ । ଏହି ସମୟ ଅର୍ଥାତ୍ ୧୯୪୧ ଜୁନ ମାସରେ କଟକରୁ ଅଫିସ ସାଲେପୁରକୁ ନେଲୁ । ସେଠି ଭଡ଼ାଘରେ ଅଫିସ ରହିଲା, ସଙ୍ଗଠନ କାମ ଚାଲିଲା । ନବ ବାବୁ, ମାଲତୀ ଦେବୀ, ତାଙ୍କର ତିନିଟି ପିଲା, ନୃସିଂହ ମହାନ୍ତି, ଲୋକନାଥ ସାହୁ, ମୁଁ । ନବବାବୁ ମାଲତୀ ଦେବୀ ସଙ୍ଗଠନ କର୍ମୀ ତାଲିମ, କଂଗ୍ରେସର ନୀତି ଲୋକଙ୍କୁ ବୁଝାନ୍ତି । ରାତିରେ ଗ୍ରାମାଞ୍ଚଳକୁ ଯାଇ ଲୁଚିଛପି ସଭା କରନ୍ତି । ଯେଉଁ ଘରେ ଆଶ୍ରମ ଓ ଅଫିସ ସେଠାକୁ ରାତିରେ ଲୋକମାନଙ୍କୁ ଆଣି କଂଗ୍ରେସ ନୀତି ଆଦର୍ଶ ବୁଝାନ୍ତି । ତାଙ୍କର ନୀତି, ଅନ୍ୟାୟ ବିରୁଦ୍ଧରେ ସଂଗ୍ରାମ କରିବା । ତାଙ୍କଠାରୁ ମୁଁ ଶୁଣିଛି । ପ୍ରସେସରର ପିଅନ୍‌ମାନେ ସମନଜାରି କରିବାକୁ ମଫସଲକୁ ଯାଉଛନ୍ତି, ଟଙ୍କା ଖାଇ, ଆସାମୀ ଘରେ ନ ଥିବାରୁ, ସାମନାରେ ଲଟକେଇ ଆସିଲି ମିଛ ସାକ୍ଷୀ ପକେଇ ଲୋକଙ୍କୁ ଦୋହରି ଖର୍ଚ୍ଚାନ୍ତ କରୁଛନ୍ତି, ଧର୍ମ ସହିବ ? ଧନୀ, ମହାଜନ, ରାଜା, ଜମିଦାର ମଧ୍ୟ ତଦ୍ରୂପ । ମୋର ଜଣେ ବନ୍ଧୁ ଘରୋଇ ବିଭାଗରେ କାମ କରୁଥିଲେ । ନବ ବାବୁ ମୁଖ୍ୟମନ୍ତ୍ରୀ ସମୟରେ ଡିପାର୍ଟମେଣ୍ଟ ଅମଲାଙ୍କର ପରୀକ୍ଷା ହେଲା । ନୀଳମଣି ରାଉତରାୟ, ଘରୋଇ ଡେପୁଟି ମନ୍ତ୍ରୀ, ଏ. କେ. ବାରେନ, ସେକ୍ରେଟାରୀ । ପରୀକ୍ଷା ପରେ ବାରେନ ସାହେବ କହିଲେ, ଆଉ ଥରେ ପରୀକ୍ଷା ହେବ । ଅମଲା ମାନେ କହିଲେ ସେକ୍ରେଟାରୀଙ୍କର ଏହା ଅନ୍ୟାୟ ଆଦେଶ । ଅମଲାମାନେ ଷ୍ଟେନୋ କୈଳାସ ଘୋଷଙ୍କୁ ପଚାରିଲେ. ଏହାର ପ୍ରତିକାର ପାଇଁ ଆମେ ମୁଖ୍ୟମନ୍ତ୍ରୀଙ୍କୁ ଭେଟି ସବୁକଥା ଜଣାଇବୁ । ଇତି ଅବସରରେ ବାରେନ ସାହେବ ଆଉ ଥରେ ଅମଲା ପରୀକ୍ଷା ଦେବାକୁ ଫାଇଲ ଅର୍ଡ଼ରକରି ଆଣିଲେଣି । ଅମଲାମାନେ ପତାଲଗାଇଲେ ମୁଖ୍ୟମନ୍ତ୍ରୀଙ୍କର ବିଶ୍ୱସ୍ତ ଲୋକ କିଏ । ତାଙ୍କୁ ଧରି ମୁଖ୍ୟମନ୍ତ୍ରୀଙ୍କୁ ଭେଟିବେ । ଅମଲାମାନେ କଟକ ଯୋବ୍ରାରୁ ଶରତ୍ ସରକାରଙ୍କୁ ଧରି ମୁଖ୍ୟମନ୍ତ୍ରୀଙ୍କୁ ଭେଟିଲେ । ମୁଖ୍ୟମନ୍ତ୍ରୀ ଅମଲାମାନଙ୍କଠାରୁ ସବୁ ଶୁଣି କହିଲେ ପ୍ରକୃତ ଏହା ଅନ୍ୟାୟ, ମୁଁ ପ୍ରତିକାର କରିବି । ସତ ସତ ମୁଖ୍ୟମନ୍ତ୍ରୀ ୨ୟ ଥର ପରୀକ୍ଷାକୁ ବାତିଲ କରି ପ୍ରଥମ ପରୀକ୍ଷାକୁ କାଏମ କରି ଫାଇଲରେ ଆଦେଶ ଦେଲେ । ଅମଲା ମାନେ ଜିତିଲେ, ସେକ୍ରେଟାରୀ ସାହେବ ହାରିଲେ ।

ଇନ୍ଦ୍ରମଣି ମହାପାତ୍ର

ମହାଶୟ,

ବାପି ଚାଲିଗଲେ । ଓଡ଼ିଶାର ଆକାଶର ସଜ୍ଜନତାର ଅମ୍ଳାନ ଶିଖାଟି ଲିଭିଗଲା । ଦେଶ, ସମାଜ ଓ ରାଜନୈତିକ ବିଶୃଙ୍ଖଳତାର ଅନ୍ଧ ନିଶା ଦେଶବାସୀଙ୍କୁ ଗ୍ରାସିବାକୁ ବସିଛି । ଏ ଦେଶର ଭବିଷ୍ୟତ ବିଷୟରେ ସନ୍ଦେହ ଘନୀଭୂତ ହେଉଛି ।

ସ୍ୱାଧୀନତା ଆନ୍ଦୋଳନର ଯୁଗମାନବ ମହାତ୍ମା ଗାନ୍ଧୀଙ୍କ ଜୀବନାଦର୍ଶ ରାଜନୀତିରେ ସତ୍ୟ, ଅହିଂସା, ତ୍ୟାଗର ବାତାବରଣ ଯେତେବେଳେ ଏ ଦେଶର କୋଟି କୋଟି ଅଜ୍ଞ ଜନତାଙ୍କର ଆଖି ଫିଟାଇ ତ୍ୟାଗ, ସେବା, ମାନବମୈତ୍ରୀ ପ୍ରଭୃତି ସ୍ୱଚ୍ଛ ମାନବିକତା ଆଡ଼କୁ ଆଗେଇ ନେଇଥିଲା । ଦେଶର ସବୁ ପ୍ରାନ୍ତରେ ତ୍ୟାଗୀ ଦେଶସେବୀମାନଙ୍କ ସଙ୍କଳ୍ପ ସ୍ୱାଧୀନତା ଆନ୍ଦୋଳନ ସତ୍ୟ, ଅହିଂସା ବାଟରେ ପରିଚାଳନା କରିବା ପାଇଁ ବହୁ ନେତା ଓ ଜନମକୁ ଆଗେଇ ନେଇ ଅସହଯୋଗ ସତ୍ୟାଗ୍ରହର ଚେରକୁ ଭାରତ ମାଟି ଉପରେ ଦୃଢ଼ ରଖି ସଂଗ୍ରାମ ବୃକ୍ଷକୁ ଠିଆ କରିଥିଲା ।

ଆମ ଓଡ଼ିଶାର ଗୋଟିଏ ପରିବାର ଯେଉଁ ପରିବାରର ତ୍ୟାଗନିଷ୍ଠା, ସେବା ଓ ସହଯୋଗିତାର କର୍ମ ଯୋଜନା ଏହିପରି ବି ଦୁଃସ୍ଥ, ଦୁର୍ବଳ ଶ୍ରେଣୀର ମଙ୍ଗଳ ପାଇଁ ନିରବଚ୍ଛିନ୍ନ ଭାବେ ଲାଗିଛନ୍ତି । ବାପି ସେହି ପରିବାରର ୨ୟ ମୁରବୀ । ତାଙ୍କର ସ୍ୱଚ୍ଛ ରାଜନୈତିକ ଚିନ୍ତାଧାରା, ନିର୍ମଳ ଶାସନ, ନିରହଙ୍କାର ସ୍ୱଭାବ ପ୍ରଭୃତି ବହୁମୁଖୀ ଗୁଣାବଳୀର ଆଲୋଚନା ହେଉଛି ଓ ହେବ । ସେ ଆଲୋଚନାରୁ ଦେଶର ଭବିଷ୍ୟତ ଓ ବର୍ତ୍ତମାନର ତରୁଣ ଗୋଷ୍ଠୀକୁ ଆଲୋକ ମିଳିବ । ତାଙ୍କର

ଘରୁଆ ଜୀବନ ପାରିବାରିକ ସ୍ୱଳଚଳନ ଭିତରେ ଯେଉଁମାନେ ସମ୍ପୃକ୍ତ, ବାପ ଓ ମା'ଙ୍କ ସରଳ ମମତାରେ ଏପରି ବାନ୍ଧି ହୋଇ ତାଙ୍କ ଆଦର୍ଶ ରାଜନୈତିକ ପ୍ରଭାବରେ ପ୍ରଭାବିତ ହୋଇଯାଉଥିଲେ, ତାଙ୍କର ନିଜର ସନ୍ତାନ ପରି ବୋଧ ଓ ନିର୍ଭରଶୀଳ ହେଉଥିଲେ । ତାଙ୍କ ପରିବାର ଶ୍ରେଷ୍ଠ କିନ୍ତୁ ଅସଂଖ୍ୟ ତ୍ୟାଗୀ ବୁଦ୍ଧିମାନ ବିପ୍ଳବୀ କର୍ମୀ ତାଙ୍କୁ ନିଜ ବାପ ମା ଗୁରୁ ଓ ମୁରବି ପରି ଅନୁଭବ କରୁଥିଲେ । ଓଡ଼ିଶାର ତରୁଣ ବୁଦ୍ଧିମାନ୍ ବିପ୍ଳବୀ ସୁରେନ୍ଦ୍ରନାଥ ଦ୍ୱିବେଦୀ, ଗୌରଚନ୍ଦ୍ର ଦାସ, ରବୀନ୍ଦ୍ରନାଥ ଘୋଷ ପ୍ରଭୃତି ଅଗ୍ରଗାମୀ ଚିନ୍ତାଧାରାର କର୍ମୀମାନେ ତାଙ୍କର ଆଦର୍ଶ ଚିନ୍ତାଧାରା ଓ ମମତାରେ ବାନ୍ଧି ହୋଇ କର୍ମପନ୍ଥା ଅନୁସରଣ କରୁଥିଲେ ।

ବାପି ସମାଜବାଦୀ, ମାର୍କସବାଦୀ ମତବାଦର ମଣିଷ, କିନ୍ତୁ ମହାତ୍ମା ଗାନ୍ଧୀଙ୍କ ଜୀବନାଦର୍ଶରେ ସେ ପ୍ରକୃତ ସମାଜବାଦର ନିର୍ଯ୍ୟାସ ପାଇ ଅହିଂସାତ୍ମକ ସମାଜବାଦ ଜୀବନରେ ଓ ସାରା ଯୌଥପରିବାର (ଦୁଇ ଭାଇଙ୍କର) ଆଚରଣ କରିଗଲେ । ସବୁ ଆକାଂକ୍ଷା ଉଚ୍ଚ ଅଭିଳାଷ ଗୁଡ଼ି ଜନସେବାରେ ଲାଗିଥିବା ଏହି ପରିବାର ଉପରେ ଲଗାତାର ଯେଉଁ ଦୁର୍ବିପାକ ଘଟିଲା, ତାହା ବରଦାସ୍ତ କରି ଦୈବଯୋଗରେ ବାପି ପଞ୍ଚତ୍ୱରୁ ବିଦାୟ ନେଲେ । ସେ ଦୁଃଖ ରାଜ୍ୟବାସୀଙ୍କ ହୃଦୟରେ ତୀବ୍ର ଯନ୍ତ୍ରଣା ଦେଇଛି ।

ଲେଖିବସିଲେ ସେମାନଙ୍କ ଗୁଣ ବଳିପଡ଼ିବ ଲେଖାର ପରିସର । ସେହି ପରିବାରର ପିତୃମାତୃ ସ୍ଥାନୀୟା ଦୁଇଟି ଦମ୍ପତି, ବାପା ବାପି, ବୋଉ ନୁମା, ଏମାନଙ୍କର ଜୀବନର ମନ୍ତ୍ର, ଆଗାମୀ ଜନତାଠି ପ୍ରତିଫଳିତ ହେଉ, ଏହାହିଁ କାମନା ।

ନତ୍ୱହଂ କାମୟେ ରାଜ୍ୟଂ
ନ ସ୍ୱର୍ଗଂ ନା ପୁନର୍ଭବମଂ
କାମୟେ ଦୁଃଖ ତପ୍ତନାଂ
ପ୍ରାଣୀନାମ୍ ଆର୍ତ୍ତିନାଶନମ୍

ତାଙ୍କ ଆଦର୍ଶରେ ଆମେ ପ୍ରବାହିତ ଓ ପ୍ଳାବିତ ହୋଇଥିଲୁ ; କିନ୍ତୁ ଆମ ପିଲାଙ୍କୁ ସେ ଆଦର୍ଶରେ ଗଢ଼ିବାର ଯୋଗ୍ୟତା ଓ ବାତାବରଣ ଏବେ ଆଉ ନାହିଁ । ସେହି ମହାନ୍ ଆତ୍ମାଙ୍କୁ ଶ୍ରଦ୍ଧା ମମତା ଓ ସମ୍ମାନର ଅଞ୍ଜଳି ।

ଗୋଦାବରୀଶ ଦେବୀ

---

# ନବକୃଷ୍ଣ : ନିଃସ୍ୱର ସର୍ବସ୍ୱ

ଧୀରେନ୍ଦ୍ରନାଥ ଶତପଥୀ

ନବକୃଷ୍ଣ ଚୌଧୁରୀ ଏ ଶତାବ୍ଦୀର ଅନ୍ୟତମ ଅମୃତସନ୍ତାନ । ସେ ଓଡ଼ିଶା ଜନଜୀବନର ଜଣେ ଅନ୍ତରଙ୍ଗ ମଣିଷ । କେବଳ ଓଡ଼ିଶା ନୁହେଁ, ସମଗ୍ର ମଣିଷ ଜାତି ପାଇଁ ତାଙ୍କ ଭିତରେ ଥିଲା ପ୍ରୀତିପୂର୍ଣ୍ଣ, ପ୍ରାଣସ୍ପର୍ଶୀ ମମତା । ସେହି ମମତା ସେବାର ଜନନୀ, 'ସେବା' କଠିନତମ ସାଧନା, ଯାହାକୁ ଭୟ କରି ସନ୍ନ୍ୟାସୀମାନେ ସଂସାରରୁ ଦୂରେଇ ଯାଆନ୍ତି ।

"ସେବା ଧର୍ମଃ ପରମଗହନ ଯୋଗୀନାମପ୍ୟଗମ୍ୟ"; କିନ୍ତୁ ନବ ବାବୁ ସେବା ଓ ସନ୍ନ୍ୟାସବ୍ରତ ଉଭୟର ମୂର୍ତ୍ତିମାନ୍ ପ୍ରତିଭୂ । ତାଙ୍କ ସୃଷ୍ଟି ହିଁ ତାଙ୍କର ପ୍ରକାଶମାନ ସ୍ୱରୂପର ସୂଚକ । ସେ ନାହାନ୍ତି ଏହା ବାସ୍ତବ ବିଶ୍ୱରରେ ସତ୍ୟ, କିନ୍ତୁ କୀର୍ତ୍ତିକଳା କଳାପବିମଣ୍ଡିତ ଅବହେଳିତ ସେବାସ୍ୱରୂପ ବନମାଳାବିଭୂଷିତ ନବକୃଷ୍ଣ ଚିର ଅମର, ଶାଶ୍ୱତ ।

"A living presence deathless and divine." ଏହା ନବ ବାବୁଙ୍କ ପ୍ରତି ଅତି ପ୍ରିୟ ପ୍ରାଣର ନିକଟତମ ମଣିଷମାନଙ୍କର ଆନ୍ତରିକ ଶ୍ରଦ୍ଧାଞ୍ଜଳି ।

ନବକୃଷ୍ଣ ଚୌଧୁରୀ ଗୋଟିଏ ବିଶାଳ ପର୍ବତମାଳାର ଅନ୍ୟତମ ସମୁଚ୍ଚ ଶିଖର । ସେବା ପ୍ରବାହରେ କ୍ରମଶଃ କ୍ଷୟ ହୋଇ ବିସ୍ତାରିତ ବାଲୁକାରାଶିରେ ରୂପାନ୍ତରିତ ହୋଇ ଅଗଣିତ ଜନତାର ପଦରେଣୁରେ ପରିଣତ ହେବା ପାଇଁ ଚାହିଁଛନ୍ତି, ତାହା ହିଁ ହୋଇଯାଇଛନ୍ତି । ଓଡ଼ିଶା ଭାରତରେ ସବୁଠାରୁ ଦରିଦ୍ରତମ ପ୍ରଦେଶ । ବନ୍ୟା, ବାତ୍ୟା, ମରୁଡ଼ି ସର୍ବୋପରି ଅଶିକ୍ଷା ଓ ଅପମୃତ୍ୟୁର ଚାରଣଭୂମି । ତଥାପି ପବିତ୍ରତା ଏହାର ବୈଶିଷ୍ଟ୍ୟ । ଦରିଦ୍ର ପବିତ୍ର ହୋଇପାରେ—ଏହି ବାର୍ତ୍ତା 'ଓଡ଼ିଶା' ବାପୁଜୀଙ୍କୁ ଦେଇଥିଲା । ଏକବସ୍ତ୍ରଧାରୀ ନିରନ୍ନ ଓଡ଼ିଆର ବିନମ୍ର ଆନ୍ତରିକ ସମ୍ମାନ ପାଇବାବେଳେ ଗାନ୍ଧିଜୀ ଏ କଥା ପ୍ରକାଶ କରିଥିଲେ । ମନେହୁଏ ଓଡ଼ିଶାର ଦରିଦ୍ରତା ଓ ପବିତ୍ରତା ମୂର୍ତ୍ତିମନ୍ତ ହୋଇ ଚୌଧୁରୀ ପରିବାର ପୁଷ୍ପବାଟିକା ରୂପରେ ବାପୁଜୀଙ୍କର ମାଧ୍ୟମରେ ଜନସମାଜ ନିମିତ୍ତ ସମର୍ପିତ ହେବା ଉଦ୍ଦେଶ୍ୟରେ ଅପେକ୍ଷା କରି ରହିଥିଲା । ସେ ଏକ ବିରାଟ ପରମ୍ପରା, ଖେରସ ଚୌଧୁରୀ ପରିବାର କଟକ ଜିଲ୍ଲାର ଜଗତସିଂହପୁର ଅଞ୍ଚଳରେ ସବୁଠାରୁ ନାମଜାଦା ଜମିଦାର । ଚୌଧୁରୀ ଗୋବର୍ଦ୍ଧନ ମଙ୍ଗରାଜଙ୍କର ଏକମାତ୍ର ପୁତ୍ର ବ୍ରଜସୁନ୍ଦର । ବ୍ରଜସୁନ୍ଦରଙ୍କର ପାଞ୍ଚଗୋଟି ପୁତ୍ର । ଯଥା :—ରାଘବାନନ୍ଦ, ବାଳକୃଷ୍ଣ, ଗୋକୁଳାନନ୍ଦ, ପରମାନନ୍ଦ ଓ ବ୍ରହ୍ମାନନ୍ଦ । ଏହି ମଧ୍ୟମ ପୁତ୍ର ଗୋକୁଳାନନ୍ଦଙ୍କର ଔରସରେ ପଦ୍ମାବତୀ ଦେବୀଙ୍କ ଗର୍ଭରୁ ତୃତୀୟ ସନ୍ତାନ ଓ କନିଷ୍ଠ ପୁତ୍ର ଭାବରେ ୧୯୦୧ ମସିହା ନଭେମ୍ବର ମାସ ତେଇଶି ତାରିଖରେ ଜନ୍ମଗ୍ରହଣ କଲେ ନବକୃଷ୍ଣ । ତାଙ୍କର ପୂଜ୍ୟ ଅଗ୍ରଜ ଗୋପବନ୍ଧୁ ଚୌଧୁରୀ ଓଡ଼ିଶାର ତଥା ଭାରତର ଖ୍ୟାତନାମା କର୍ମୀ ଓ ସେବକ । ଗୋପବନ୍ଧୁ ବାବୁଙ୍କର ଜୀବନ ମଧ୍ୟ କୌଣସି ଦିଗରୁ ନ୍ୟୂନ ନୁହେଁ, ସେ କଥା ସ୍ଥାନାନ୍ତରରେ ଆଲୋଚ୍ୟ ।

ଆବାଲ୍ୟରୁ ନବକୃଷ୍ଣ ନିରଳସ ଓ ନିରାଡ଼ମ୍ବର ଥିଲେ । ତାଙ୍କୁ ଯେତେବେଳେ ତେର ବର୍ଷ ସେତେବେଳେ ବଡ଼ ଭାଇ ଗୋପବନ୍ଧୁଙ୍କର ବିବାହ ହେଲା ମଧୁସୂଦନ ଦାସଙ୍କର ସାନ ଭାଇ ଗୋପାଳବଲ୍ଲଭ ଦାସଙ୍କର କନ୍ୟା ରମାଦେବୀଙ୍କ ସହିତ । ନବ ବାବୁଙ୍କ ବିଷୟରେ ରମା ଦେବୀ କହନ୍ତି, "ମୁଁ ତାଙ୍କୁ ପିଲାଦିନରୁ ଦେଖିଛି 'ସେ' କେବେ ସୌଖୀନ୍ କରୁ ନ ଥିଲେ । ଭଲ ଲୁଗା ପିନ୍ଧିବା, ଭଲ ଜୋତା ପିନ୍ଧିବା, ଭଲ କୁର୍ତ୍ତା ପିନ୍ଧିବାରେ ତାଙ୍କର ସଉକ ନ ଥିଲା । ସ୍କୁଲକୁ ଯିବାବେଳେ ଯେମିତି ଯାଉଥିଲେ ମନ୍ତ୍ରୀ ହେଲାବେଳେ ମଧ୍ୟ ସେମିତି ।"

ନବ ବାବୁ ନୂଆ ଚେତନାର ମଣିଷ । ତାଙ୍କ ବୋଉ ଓଡ଼ିଆ ଘରର ପୁରୁଣାକାଳିଆ ରକ୍ଷଣଶୀଳତା ଭିତରର । ତେଣୁ ସବୁ ଦାଆଁ ଦେବତା ଆଗ୍ରହରେ ତାଙ୍କ ପାଖରେ ରହୁଥିଲା । ଏ ସାନପୁଅଟି ସବୁବେଳେ ପୁରୁଣାକୁ ଭାଙ୍ଗି ନୂଆ କିଛି ପରଖିବାରେ ବ୍ୟସ୍ତ । ଯେତେବେଳେ ଗ୍ରହଣ ବା ଅଶୁଚ ଲାଗିଥିବ ସେତେବେଳେ ଝିଅଆଣ୍ଡି ଚୁନି ଓ ପୁରୁବୀ ବୃନ୍ଦୁଙ୍କୁ ଧରି କିଛି ଗୋଟିଏ ଖାଇବାରେ ବସିଯିବେ । ମା ବ୍ୟସ୍ତ ହେଲେ କହିବେ, "ବୋଉ ତୁ ବ୍ୟସ୍ତ ହୁଅନା, କଅଣ ହେଉଛି ଗୋଟିଏ ଦେଖିବା," ଏହି କଅଣ ଦେଖିବାପାଇଁ ପୁରୁବୀ ବୃନ୍ଦୁଙ୍କ ସହିତ ପିମ୍ପୁଡ଼ି ଗାତ ଖୋଳିବା, ଘରଚଟିଆ ବସା ଖସିପଡ଼ିଥିଲେ ତାକୁ ଖୋଲାଇ ତା ଭିତର ଦେଖିବା, ଇମିତି କ'ଣ କେତେ । ମାତ୍ର ପନ୍ଦର ବର୍ଷ ବୟସରେ ପିତୃବିୟୋଗ ଘଟେ । ପିତୃବିୟୋଗ ପରେ ତାଙ୍କ ଜୀବନର ସାଧାରଣ ଗତିବିଧିରେ କୌଣସି ବିଶେଷ ପରିବର୍ତ୍ତନ ନ ହେଲେ ବି ସେ ପରିବାରର ପରିସୀମା ଭିତରୁ ପାରିପାର୍ଶ୍ୱିକ, ସାମାଜିକ ପରିବେଶ ଲକ୍ଷ୍ୟକରି ପରାଧୀନ ମଣିଷମାନଙ୍କର ନିର୍ଯାତନା ଦେଖି ଭିତରେ ଭିତରେ ସମ୍ବେଦନଶୀଳ ହେବାକୁ ଲାଗିଲେ ।

କେତେକ ବନ୍ଧୁଙ୍କ ସହ ମିଶି 'ଭାରତୀ-ମନ୍ଦିର" ଗଢ଼ିଲେ । ଏହି ଭାରତୀ ମନ୍ଦିର ଥିଲା ସମସାମୟିକ ତରୁଣ-ମାନଙ୍କର ମିଳନପୀଠ । ଏଠାରେ ଜାତୀୟ ସଂଗ୍ରାମର ଆଲୋଚନା ସଙ୍ଗେ ସଙ୍ଗେ ସମାଜ ଓ ସାହିତ୍ୟସେବା ମଧ୍ୟ କରାଯାଉଥିଲା । ୧୯୧୭ ମସିହାରେ କଲିକତା ବିଶ୍ୱବିଦ୍ୟାଳୟର ଏଣ୍ଟ୍ରାନ୍ସ ପରୀକ୍ଷାରେ ପାସକରିବା ପରେ ୧୯୨୧ ପର୍ଯ୍ୟନ୍ତ କଟକ ରେଭେନ୍ସା କଲେଜରେ ବି.ଏ. ପଢ଼ୁଥିଲେ । ବି ଏ. ପଢ଼ା ଛାଡ଼ି ମହାତ୍ମା ଗାନ୍ଧୀଙ୍କ ଆହ୍ୱାନକ୍ରମେ ଅସହଯୋଗ ଆନ୍ଦୋଳନରେ ଝାସ ଦେଲେ । ସେତିକବେଳେ କଟକରେ ବିଶେଷ ନାଆଁ ଗୋଳ ହେଉଥାଏ । ଶୁଣାଯାଏ ଅସହଯୋଗୀମାନଙ୍କୁ ଦୁର୍ନାମ ଦେବାପାଇଁ ପ୍ରକାରାନ୍ତରେ ଜଣେ ପୋଲିସ କର୍ମଚାରୀ ଏହି କାର୍ଯ୍ୟ କରାଉଥାନ୍ତି । ସେଚ୍ଛାସେବକମାନଙ୍କୁ ଧରି ନବବାବୁ ସେତେବେଳେ ସାହି ସାହି ବୁଲି ନାଆଁ ଲିଭାଉଥିଲେ । ଏହି କଥା ତାଙ୍କ ଝିଆରୀ ଚୁନିଅପା (ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାରଣା) କହିଲାବେଳେ ଶୋକାତୁର ହୋଇ ଉଠିଲେ । "ଆମ ଦାଦା ଯେତେବେଳେ ନାଆଁ ଗୋଳାରୁ ନାଆଁ ଲିଭାଇ ଫେରେ ତାକୁ ଦେଖିଲେ 'କମିତି' ଲାଗେ । 'ଦାଦା' ଗୋଟେ କେମିତି ଅଦ୍ଭୁତ ଥିଲା, ଆମ ଜେଜେମା ଭାରି ପୂଜାପୂଜି କରୁଥିଲା, ଆମ ଘରେ ବି ଛୁଆଁ ଅଛୁଆଁ' ଥିଲା, ଦାଦାର ଜଣେ ସାଙ୍ଗ ଆମ ଘରକୁ ଖାଇବାକୁ ଆସିଲେ । ସେତେବେଳେ ତ ସମସ୍ତଙ୍କୁ ହରିଜନ କୁହାଯାଉ ନ ଥିଲା । ଜାତି ନାଁ ଧରି ଡକା-ଯାଉଥିଲା । ଶ୍ରୀଧର ସାମଲ ଜାତିରେ ଥିଲେ ପାଣ । ସେ ଯେଉଁଦିନ ଆମ ଘରକୁ ଖାଇବାକୁ ଆସିଲେ, ଆମ ଘରେ ଗୋଟେ ଚହଳ । ବାକ୍ସରେ ଥିବା ଖଙ୍ଗ ବାସନସବୁ ବାହାରିଲା । ଶ୍ରୀଧରବାବୁ ଖାଇ ଫେରିବା ପରେ ଦାଦା ସେ ବାସନକୁ ଧୋଇଲା । ଆମେସବୁ ପିଲା ଧରିନେଲୁ ଦାଦା ଗୋଟେ ଅଦ୍ଭୁତ କାମ କଲା । ଦାଦାର ମମତା କେବଳ ପରିବାରଙ୍କ ପାଇଁ ନ ଥିଲା, ସମସ୍ତଙ୍କ ପାଇଁ ସମାନ ଓ ଅତି ଅନ୍ତରଙ୍ଗ । ଥରେ ତାର ଜଣେ ସାଙ୍ଗ ପ୍ରହ୍ଲାଦ ସାହୁଙ୍କୁ ଡାଇବିଟିସ ହେଲା । ଦାଦା ଅଦିନରେ ପହିଲି ବାବୁଙ୍କ ପାଇଁ କୋଉଠୁ କୋଉଠୁ ବୁଲି ଜାମୁକୋଳି ମଞ୍ଜି ଗୋଟେଇ କରି ଆଣେ । ସେ ଶୁଣିଥିଲା ଡାଇବିଟିସ୍ ରୋଗ ପାଇଁ ଜାମୁକୋଳି କୁଆଡ଼େ ଔଷଧ ପରି କାମ ଦିଏ । ଦାଦା ପାଖରେ ଜାତିଅଜାତି, ଛୁଆଁ ଅଛୁଆଁ, ପରଘର ଏସବୁ ନ ଥିଲା; ବରଂ ସେ ଯାହାକୁ ଯେତେବେଳେ ପାଉଥିଲା ତାକୁ ଆପଣାର କରିପାରୁଥିଲା । ତା' ଭିତରେ ମୁଁ ପିଲାଦିନଠୁ ଏହିସବୁ ଦେଖିଆସିଛି । ସେ ଆମ ସମସ୍ତଙ୍କୁ କହୁଥିଲା, ତୁମେ ଆପଣ କହିଲେ ନିଜ ଭିତରେ ବାଡ଼ ପଡ଼ିଯାଏ, ତେଣୁ ଆମ ଘରେ ଆମେ କେହି 'ତାକୁ' ତୁମେ, ଆଜ୍ଞା, ଆପଣ କରୁ ନ ଥିଲୁ । ଖୁଡ଼ି ଆସିବାପରେ ଆମେ ଭାବିଥିଲୁ ଅଲଗା କିଛି ହେବ । ଖୁଡ଼ୀ କ୍ରମଶଃ ଆମ ସହିତ ମିଶିଗଲେ, ଆମକୁ ତାଙ୍କ ପରିବାରର ଚଳଣି ଓ ଖାଇବା ପିଇବାର କେତେ କେତେ ନୂଆ କଥା ଶିଖାଇଲେ । ଖୁଡ଼ୀ ଓଡ଼ିଆ ଗାଉଁଲି ଗୀତସବୁ ଶୁଣି ତାକୁ ମନେ ରଖୁଥିଲେ । ପରେ ତାକୁ ନିଜେ ଗାଇ ଆମକୁ ଶୁଣାଉଥିଲେ ଏବଂ ଆମକୁ ଆହୁରି ଗୀତ ସଂଗ୍ରହ କରି ଆଣିବାକୁ କହୁଥିଲେ । ଆମେ ମଧ୍ୟ ଗୀତ ସଂଗ୍ରହ କରି ଆଣୁଥିଲୁ । ଦାଦାର ଆମର ସମ୍ପର୍କ ଇମିତି ଥିଲା, ଆମେ ବୁଝିପାରୁ ନ ଥିଲୁ 'ସେ' ସତରେ କେତେ ବଡ଼ ? ଧୂଳିଖେଳ ଦିନରୁ ସେ ମୋ ସାଥୀ । ଦାଦା ଚାଲିଗଲା ପରେ ଭାବୁଛି ସେ ସତରେ କେତେ ବଡ଼ ଥିଲା । ବଡ଼ ଅଦ୍ଭୁତ ସେ ଦାଦା । ତା'ପରେ ସେ ଯାଇ ଜଗତସିଂହପୁର ପାଖ ଅଲକାଶ୍ରମରେ ଯୋଗ ଦିଅନ୍ତି, ଅଲକାଶ୍ରମରେ ଶିକ୍ଷକତା ସମୟରେ ତାଙ୍କୁ ବହୁ ବେଦନାସିକ୍ତ ସାଧନା କରିବାକୁ ହେଉଥିଲା । ଚୁନିଅପା କହନ୍ତି, "ଗାଁ ପାଖରୁ ମାଗିଆଣିଥିବା ପଞ୍ଚବର୍ଣ୍ଣୀ ଗୁହାଳର ଭାତ ଓ ପାଣିକଖାରୁ ଝୋଳ ଆନନ୍ଦରେ ତଳେ ବସି 'ଦାଦା' ଖାଉଥିଲା (ପରେ ଆମ 'ଦାଦା' ପାଇଁ ସ୍ପେସାଲ ଡିସ୍) । ଅଲକାଶ୍ରମର ତାଙ୍କର ସହଯୋଗୀ ଥିଲେ ସ୍ୱର୍ଗତ ଗୌରାଙ୍ଗଚରଣ ଦାସ, ଉଦୟନାଥ ଷଡ଼ଙ୍ଗୀ (ସମାଜର ବାର୍ତ୍ତା ସମ୍ପାଦକ), ରାମକୃଷ୍ଣ ନନ୍ଦ (ବରିଷ୍ଠ ଶିଶୁ ସାହିତ୍ୟିକ) ପ୍ରଭୃତି । ଅଲକାଶ୍ରମର ଅବସ୍ଥିତି ସେତେବେଳେ ଯାହା ଥିଲା ତାହା ଚୁନିଅପାଙ୍କ ଭାଷାରେ ଏପାଖରେ ହିନ୍ଦୁମାନଙ୍କର ମଶାଣି ଆରପାଖରେ ମୁସଲମାନମାନଙ୍କର ଗୋରସ୍ଥାନ", ଗାଁ ପାଖ ମଣିଷ ଆସୁ ନ ଥିଲା ।

କଟକରୁ ଜଗତସିଂହପୁର ଅଣତିରିଶ ମାଇଲ ବାଟ । ଏହି ବାଟ ଅତିକ୍ରମ କରିବାର ଉପାୟ ବୋଟ୍‌ରେ ବା ପାଦରେ । ପଇସାଟିକର ଚୂଡ଼ା ଓ ପଇସାଟିକର ମୋଡ଼ା ବାଟୋଇର ସମ୍ବଳ । ଆସିଲାବେଳେ ଗର୍ଦ୍ଦପୁର ପାଖରେ ଭଣ୍ଡାରୀମାନେ ଧାଡ଼ି ଧାଡ଼ି ହୋଇ ବସିଥାନ୍ତି । ଅଧ ପଇସାଟିଏ ଦେଲେ ସେମାନେ ବାଟୋଇଙ୍କୁ ଭଲ ଭାବରେ ମୋଡ଼ାମୋଡ଼ି କରିଦିଅନ୍ତି । ମୋଡ଼ା ଖାଇସାରିବା ପରେ ଚୂଡ଼ାଗଣ୍ଡାକ ଖାଇ ପୁଣି ଚାଲି ଚାଲି କଟକରେ ପହଞ୍ଚିବାକୁ ହୁଏ । ଏସବୁ ସେହି ଦାରିଦ୍ର୍ୟ ଅନୁନ୍ନତ ଚେତନାର ସ୍ମାରକୀ । ଚୂଡ଼ା ଓ ମୋଡ଼ାଠାରୁ ସମସ୍ତଙ୍କୁ ଆଗେଇ ନେଇ ଗୋଟିଏ ବଳିଷ୍ଠ, ଉନ୍ନତ ଓ ସମୃଦ୍ଧିଶାଳୀ ଭବିଷ୍ୟତ ଗଠନ କରିବା ଥିଲା ତାଙ୍କର ଉଦ୍ଦେଶ୍ୟ । ନବ ବାବୁ ନିଜକୁ ନାସ୍ତିକ ବୋଲି କହୁଥିଲେ । କିନ୍ତୁ ଫଲକାତୁମର ଫନ୍ଦେବାସୀମାନଙ୍କ ହୃଦୟରେ ପ୍ରାର୍ଥନା କରିବା ତାଙ୍କର ଦୈନନ୍ଦିନ କର୍ମସୂଚୀ ମଧ୍ୟରେ ଅନ୍ୟତମ ଥିଲା । ଆମ୍ରବୀଥିକାର ତଳ-ଚନ୍ଦ୍ରିକାଚ ଚନ୍ଦ୍ରକାନ୍ତଧୌତ ସନ୍ଧ୍ୟାରେ, ସମବେତ କଣ୍ଠରେ ଭକ୍ତି ବିନମ୍ର ଉଦାତ୍ତ ସ୍ୱର ଝଙ୍କାରରୁ ଅନୁରଣିତ ହେଉଥିଲା—

"କୋଟି ଜଟଡର ରଜତକେଶର ବିରଜ ହୃଦସ୍ତ ଗଗନେ"

ବା

"ଯେଉଁଠାରେ ଅଛୁ ଲୁହ ସେହିଠାକୁ ମୋତେ ନିଅ ।"

ନାସ୍ତିକର ବାସ୍ତବ ନାସ୍ତିକତା । ହୃଦୟରେ ଭଗବାନ୍ଙ୍କ ଉପସ୍ଥିତିକୁ ଅସ୍ୱୀକାର କରି ଦୁଃଖ, ଦାରିଦ୍ର୍ୟ, ହତାଶାର ଆବେଷ୍ଟନୀ ମଧ୍ୟରେ ସେବାପରାୟଣ ହେବା ମନେହୁଏ ଈଶ୍ୱର ଆରାଧନାର ସର୍ବଶ୍ରେଷ୍ଠ ପନ୍ଥା ।

ଜଗତସିଂହପୁର ନିକଟବର୍ତ୍ତୀ ଅନ୍ୟତମ ଗ୍ରାମ 'ଅଣଖିଆ'ରେ ଚୌଧୁରୀ ପରିବାରର ଏକଚାଟିଆ କିଛି ଜମି ଥିଲା । ସେ ଜମିରେ ଆଖୁଚାଷ କରି ଇଟାଗୁଡ଼ ତିଆରି କରିବା, ଅନ୍ୟାନ୍ୟ ପନିପରିବା, ଚିନାବାଦାମ ପ୍ରଭୃତି ଉତ୍ପନ୍ନ କରିବା, କୃଷକମାନଙ୍କ ସହିତ ସମଭାଗୀଭାବେ ଜୀବିକାର୍ଜ୍ଜନ କରି ବଞ୍ଚିବାର ସ୍ୱାଦ ପାଇବାକୁ ନବ ବାବୁ ପ୍ରୟାସ କରିଥିଲେ । ସେ ଜମିଦାରର ପୁଅ; ଏ ଅହଂକାର ତାଙ୍କୁ କୌଣସି ଦିନ ବାସ୍ତବତା ନିକଟରୁ ପେଲେଇ ନେଇନି । ଏହାହିଁ ଦେଶସେବାର ଗୋଟିଏ ଧାରା । ଜାତୀୟ ବିଦ୍ୟାଳୟ ପ୍ରତିଷ୍ଠା ମାଧ୍ୟମରେ ଜନଜାଗରଣ ଓ ଶିକ୍ଷା ପ୍ରସାର କରିବା ଥିଲା ବହୁ ସ୍ୱଦେଶୀପ୍ରେମୀଙ୍କର ଉଦ୍ଦେଶ୍ୟ । ସେ ସମୟରେ ବିଶ୍ୱକବି ରବୀନ୍ଦ୍ରଙ୍କର ଶାନ୍ତିନିକେତନ ସମସାମୟିକ ସାହିତ୍ୟିକ ଭାବଜଗତରେ ସର୍ବଶ୍ରେଷ୍ଠ ଆସନ ପାଇସାରିଥିଲା । ରବୀନ୍ଦ୍ରନାଥ ସେତେବେଳକୁ ଆଉ ଭାରତୀୟ ନ ଥିଲେ । ସମଗ୍ର ବିଶ୍ୱମାନବିକତାର 'ପ୍ରତିଭୂ' ହୋଇସାରିଥିଲେ । "ମହାଭାରତର ସାଗର ତୀରେ" ଜାଗୃତ ମନ୍ତ୍ର ଗାନ କରୁଥିବା ଏହି କବି ଉଦୀୟମାନ ପ୍ରଗତିଶୀଳ ଶିକ୍ଷିତ ଯୁବକମାନଙ୍କୁ ବିଶେଷ ପ୍ରଭାବିତ କରିଥିଲେ । ନବବାବୁ ସେଥିରୁ ବାଦ୍ ଯାଇ ନ ଥିଲେ । ଶାନ୍ତିନିକେତନରେ ଶିକ୍ଷାଲାଭ କରିବା ସଙ୍ଗେ ସଙ୍ଗେ ବିଶ୍ୱମୈତ୍ରୀ ଓ ଭ୍ରାତୃତ୍ୱର ପ୍ରକାଶକ କବିଙ୍କ ସହିତ କିଛି ସମୟ କଟେଇବା ହିଁ ଥିଲା ତାଙ୍କର ଲକ୍ଷ୍ୟ ଥିଲା । ୧୯୨୬-୨୭ ରେ ପ୍ରାୟ ଦଶମାସ ସେ ଶାନ୍ତିନିକେତନରେ ଅଧ୍ୟୟନ କରିଥିଲେ । ଶାନ୍ତିନିକେତନ ଅବସ୍ଥାନ କାଳ ନବକୃଷ୍ଣଙ୍କ ଜୀବନଯାତ୍ରାରେ ଏକ ଗୁରୁତ୍ୱପୂର୍ଣ୍ଣ ସମୟ । ଉଦୀୟମାନ, ସେବାପରାୟଣ ଜିଜ୍ଞାସୁ ଯୁବକ ନବକୃଷ୍ଣ କବିଗୁରୁ ରବୀନ୍ଦ୍ରନାଥଙ୍କର ଶାନ୍ତିନିକେତନ ଅବସ୍ଥାନ କାଳରେ ଜ୍ଞାନ ଅର୍ଜ୍ଜନ ମାଧ୍ୟମରେ ସେବା ତାଙ୍କର ଧ୍ୟେୟ, ଏହା ଅନୁଭବ କରିଥିଲେ । ତେଣୁ ସମସାମୟିକ ସାମାଜିକ ଜୀବନଧାରାରୁ ବିଚ୍ୟୁତ ହୋଇ ସେହି କାନନନିବାସିନୀ ସହପାଠିନୀ ମାଳତୀଙ୍କୁ ଅବଶିଷ୍ଟ ଯାତ୍ରାପଥର ସହଯାତ୍ରିଣୀ ଭାବେ ତାଙ୍କୁ ଗ୍ରହଣ କରିନେଲେ । ଏ ପଥରେ ପାରମ୍ପରିକ ପାରିବାରିକ ପ୍ରଥା ଓ ଧର୍ମଧାରଣା ଯଥେଷ୍ଟ ପ୍ରତିବନ୍ଧକ ସୃଷ୍ଟି କରିଥିଲା; କିନ୍ତୁ ଦୂରଦର୍ଶୀ ନିଷ୍କାମ ସାଧକ ନବକୃଷ୍ଣଙ୍କର ଉପଯୁକ୍ତ ସଙ୍ଗିନୀ ନିର୍ଣ୍ଣୟ ଯେ ସମ୍ପୂର୍ଣ୍ଣ ସଫଳ, ତାହା ପରବର୍ତ୍ତୀ ସମୟରେ ପ୍ରତ୍ୟେକ କ୍ଷେତ୍ରରେ ପ୍ରମାଣିତ ହୋଇଅଛି । 'ଅଣଖିଆ', 'ତରକୁନ୍ଦ' ନିକଟବର୍ତ୍ତୀ ପୈତୃକ ସମ୍ପତ୍ତିରେ ଆଦର୍ଶ କୃଷକ ଭାବରେ ଆଖୁଚାଷ ସହିତ ଇଟାଗୁଡ଼ ଉତ୍ପାଦନ, ନାନାପ୍ରକାର ନୂତନ କୃଷି ପଦ୍ଧତି ପ୍ରୟୋଗ ପଥରେ ଆଧୁନିକ ଶିକ୍ଷିତା ଓ ଅଭିନବ ପରିବେଶରେ ପରିପାଳିତା ମାଳତୀ ଦେବୀ ତାଙ୍କର ସର୍ବପ୍ରଧାନ ଓ ପ୍ରଥମ ସହଯୋଗିନୀ ହୋଇଥିଲେ ।

"ଅର୍ଦ୍ଧଭାର୍ଯ୍ୟା ମନୁଷ୍ୟସ୍ୟ ଭାର୍ଯ୍ୟା ପ୍ରିୟତମ ସଖାଃ"

ଏହି ଉକ୍ତି ଅକ୍ଷରେ ଅକ୍ଷରେ ସତ୍ୟ ପ୍ରମାଣିତ ହୋଇଛି । ଶାନ୍ତିନିକେତନ ପ୍ରତିଷ୍ଠାର ମୂଳ କଥା ଥିଲା ପଲ୍ଲୀ ଜୀବନକୁ ପଲ୍ଲବିତ କରି, ପଲ୍ଲୀ ସଂସ୍କୃତିକୁ ସଞ୍ଜୀବନୀରୂପେ ଗ୍ରହଣ କରି ଜ୍ଞାନ ଓ ପ୍ରେମ ଦେଇ ସମାଜ ସଙ୍ଗଠନ

କରିବା । ଅଣଖିଆ କୃଷିକ୍ଷେତ୍ର ଏହାର ଉପଯୁକ୍ତ ସଫଳ ରୂପାୟନ ପୀଠ । ଗାଁର ମଳିନ, ରୁଗ୍‌ଣ, ନିରନ୍ନ, ଶିଶୁମାନଙ୍କ ମୁହଁରେ ସେଉଁ ସରଳ ଲୋକଗୀତ ଉଚ୍ଚାରିତ ହୁଏ, ତାହା ସେମାନଙ୍କଠାରୁ ସଂଗ୍ରହ କରି, ସେହି ସରଳ ଶିଶୁମାନଙ୍କ ସହିତ ଗୀତ ଗାଇ ସମତାଳରେ ନୃତ୍ୟ କରିବା ମାଳତୀଦେବୀଙ୍କ ଦ୍ୱାରା ସମ୍ଭବ ହୋଇଥିଲା ।

"ମାରିଗଲି କାଣ୍ଡରିର
ମହାନଦୀ ପାଣି କଳାଭ୍ରମର, ବୋବେଇ ଲୋ !
ଦେଖିଲେ ମାଡ଼ଇ ଡର ।

ଅଥବା

"ବାଇଆ ମାଆର ସରୁ ପାଟେଣୀ
ପୁତାକୁ ପିନ୍ଧାଏ ପାଟପତନୀ ।"

ଏହି ପଲ୍ଲୀଗୀତ ଗାଁ ଝିଅମାନଙ୍କଠାରୁ ଶୁଣି ତାଙ୍କ ସହିତ ନାଚିବା ପାଇଁ, ସେମାନଙ୍କ ମୁଣ୍ଡ କୁଣ୍ଡେଇଦେବା ଓ ତାଙ୍କୁ ଆଦର କରିବା ମାଳତୀ ଦେବୀଙ୍କ ଅକପଟ ଶ୍ରଦ୍ଧା ଓ ଅସ୍ପୃଶ୍ୟାରହିତ ଆନ୍ତରିକତାର ସୂଚନା ଦିଏ ।

ସେଇଠି ଥିବା ସମୟରେ ୧୯୩୦ ମସିହାବେଳକୁ ସମଗ୍ର ଦେଶରେ ଜାତୀୟତା ଭାବରେ ଯୁବକଯୁବତୀମାନେ ପ୍ରଭାବିତ ହୋଇଥିଲେ । ଅଧିକାଂଶ ଗୃହଗୃହିଣୀ, ଉଦୀୟମାନ ଯୁବକଯୁବତୀ, ସ୍କୁଲ, କଲେଜ ଛାଡ଼ି ଏହି ସଂଗ୍ରାମରେ ଝାସ ଦେଉ-ଥିଲେ । ସଂଗ୍ରାମ ସମସ୍ତଙ୍କ ଦ୍ୱାରା ସମାନ ଭାବରେ ହୁଏନାହିଁ । ଏଥିପାଇଁ ସାହସିକତା, ଦୃଢ଼ତା, ତ୍ୟାଗ, ସର୍ବୋପରି କଷ୍ଟସହିଷ୍ଣୁତା ଓ ଅତୁଟ ଧୈର୍ଯ୍ୟ ଅପରିହାର୍ଯ୍ୟ । ନବ ବାବୁ ଓ ମାଳତୀ ଦେବୀଙ୍କ ପରି ଖୁବ୍ ସ୍ୱଳ୍ପସଂଖ୍ୟକ ଦମ୍ପତି ଏପରି ଆଗ୍ନେୟ ସଂଗ୍ରାମରେ ଲମ୍ଫ ପ୍ରଦାନ କରିପାରିଥିଲେ । ବଙ୍ଗଭୂମିର ଆଧୁନିକ ଶିକ୍ଷା ତଥା ବ୍ରାହ୍ମପରିବାରରେ ଜନ୍ମଗ୍ରହଣ କରିଥିବା ଯୁବତୀ ମାଳତୀ ଦେବୀ, ସେ ସମସ୍ତ ଭୁଲିଯାଇ ଦେଶ ଓ ଜାତି ପାଇଁ ସର୍ବସ୍ୱ ତ୍ୟାଗ କରି ଅକଥନୀୟ କ୍ଲେଶ ବରଣ କରିନେଲେ । ତାହା ଆଜି ମଧ୍ୟ ଆଦର୍ଶ ସ୍ଥାନୀୟ । କଟକ ଜିଲ୍ଲା 'ଅଣଖିଆ' ଠାରେ ନବବାବୁ ସେଉଁ କୃଷି ଫାର୍ମ ପ୍ରତିଷ୍ଠା କରିଥିଲେ ତାହା ତାଙ୍କର ସମାଜର ନିକଟବର୍ତ୍ତୀ ହେବା ଅଭିପ୍ରାୟର ଅନ୍ୟତମ ପ୍ରଚେଷ୍ଟା । ସେଠାରେ ଏହି ଅଭିନବ, ଏହି ଆଦର୍ଶ ଦମ୍ପତି ତ୍ୟାଗ ଓ କର୍ମକୁଶଳତାର ଗାଥା ରଚନାରେ ଆତ୍ମନିବେଶ କଲେ । ସ୍ୱୟଂସମ୍ପୂର୍ଣ୍ଣ ସ୍ୱତନ୍ତ୍ର ଚେତନାର ପ୍ରତୀକ ନବକୃଷ୍ଣ ବିବାହ ପରେ ସଂଗ୍ରାମଶୀଳ ଜୀବନରେ ପ୍ରବେଶ କଲେ । ସାଧାରଣ କ୍ଷେତ୍ରରେ ପରିଲକ୍ଷିତ ହୁଏ ଯେ, ବିବାହ ପରେ ଯୁବକସୁଲଭ ସାହସିକତା କ୍ଷୀଣତର ହୋଇଥାଏ; କିନ୍ତୁ ମାଳତୀ ଦେବୀଙ୍କର ପ୍ରେରଣା ଏତେ ସୁଦୃଢ଼ ଚିନ୍ତାପ୍ରସୂତ ଥିଲା ଯେ, ତାହା ଏହି ତ୍ୟାଗପୂତ ସଂଗ୍ରାମୀ ଜୀବନକୁ ଶତସିଂହ ପରାକ୍ରମ ଦେଇପାରିଥିଲା । ନବବାବୁ ବିବାହ ପୂର୍ବରୁ ମାତ୍ର ଜଣେ ଅତି ସାଧାରଣ ଉତ୍ସାହୀ ଯୁବକ ଥିଲେ । ବିବାହ ପରେ ପରେ ଅଦ୍ଭୁତ ପରିବର୍ତ୍ତନ । ଶାନ୍ତିନିକେତନର ବିଶ୍ୱ-ଭ୍ରାତୃତ୍ୱମୟ ପରିବେଶ ମଧ୍ୟରୁ ମାଳତୀଦେବୀଙ୍କୁ ସେ ନିର୍ଣ୍ଣୟ କରିବା, ତାଙ୍କ ସୂକ୍ଷ୍ମ ଅନୁଧ୍ୟାନ ଶକ୍ତି ଓ ପ୍ରୀତିପୂର୍ଣ୍ଣ ଗ୍ରହଣଶୀଳତାର ପ୍ରମାଣ କରେ । ମାଳତୀ ଦେବୀ ଚାହିଁଥିଲେ ସେହି ପାଶ୍ଚାତ୍ୟ ବାହ୍ୟ ଆଡ଼ମ୍ବର ପରିପୂର୍ଣ୍ଣ ପରିବେଶ ଭିତରକୁ ନବବାବୁଙ୍କୁ ଟାଣିନେଇ ପାରିଥାନ୍ତେ; କିନ୍ତୁ ତାଙ୍କର ଅବହେଳିତଙ୍କ ପ୍ରତି ଗଭୀର ଶ୍ରଦ୍ଧା ଓ ମମତାବୋଧ ନିଷ୍କପଟ ସକରୁଣ ପାରସ୍ପରିକ ବନ୍ଧନମୟ ଭାବ ଥିବା ହେତୁ ଦାମ୍ପତ୍ୟ ଜୀବନ ବହୁ ଜନହିତ ସାଧନରେ ବିନିଯୁକ୍ତ ହେଲା । ୧୯୨୭ ମସିହା ଠାରୁ ୧୯୮୪ ମସିହା ପର୍ଯ୍ୟନ୍ତ ଏହି ଯୁଗ୍ମ ସାଧନା ଓ ସେବା ପାରିବାରିକ ଜୀବନ ଠାରୁ ଆରମ୍ଭ କରି ପାରିପାର୍ଶ୍ୱିକ ଜୀବନ କ୍ରମଶଃ ସାମଗ୍ରିକ ସାମାଜିକ ସର୍ବୋଦୟ ପର୍ଯ୍ୟନ୍ତ ପରିବ୍ୟାପ୍ତ ହୋଇଗଲା । ଦାମ୍ପତ୍ୟ ଜୀବନ ଶ୍ରେୟଃ ହେଉ ବୋଲି ବିବାହ ସମୟରେ ଯେଉଁ ଆଶୀର୍ବାଦ ମନ୍ତ୍ର ପାଠ କରାଯାଇଥାଏ, ଏହି ବିବାହର ପରବର୍ତ୍ତୀ ଜୀବନ ତାହାଠାରୁ ବହୁଗୁଣରେ ଗୁଣିତ । ନବ ବାବୁଙ୍କ ପରେ ଆଜି ମଧ୍ୟ ମାଳତୀ ଦେବୀ ଏହି ପରିଣତ ବୟସରେ ପ୍ରପୀଡ଼ିତ, ଅବହେଳିତମାନଙ୍କ ମଧ୍ୟରେ ନବଜୀବନର ବାର୍ତ୍ତା ପ୍ରଚାର ଅନୁବର୍ତ୍ତିନୀ ହୋଇ ଜୀବନର ସୁଧା ପରିବେଷଣ କରୁଅଛନ୍ତି ।

ସାଧାରଣ ଜୀବନରୁ ବା ସାମାଜିକ ସେବା ମଧ୍ୟରୁ ବାସ୍ତବ ସାମ୍ୟବାଦୀ ସ୍ୱଦେଶ-ଭାବନା ପ୍ରଚାର ଓ ପ୍ରତିଷ୍ଠା କରିବା ନିମିତ୍ତ ସେ ସଚେଷ୍ଟ ହେଲେ । ଗାନ୍ଧିଜୀଙ୍କର ସତ୍ୟାଗ୍ରହ ଆନ୍ଦୋଳନ ଆତଙ୍କବାଦ ବା ଟେରରିଷ୍ଟ ଉଭୟର ଏକ ମାଧ୍ୟମିକ ପନ୍ଥା ଗ୍ରହଣ କରିବା ଉଚିତ । ହିଂସା, ହତ୍ୟା ବା ଅହିଂସା କେଉଁଟିକୁ କି ଭାବରେ କାର୍ଯ୍ୟକାରୀ କରିବା ଏ ଦେଶ ଓ ସମାଜ ପାଇଁ

ଫଳପ୍ରଦ ହେବ, ତାହା ଅନେକଙ୍କୁ ଆନ୍ଦୋଳିତ କରିଥିଲା । ପୃଥିବୀର ବହୁ ଦେଶରେ ଯେପରି ସାମ୍ରାଜ୍ୟବାଦ ବିରୁଦ୍ଧରେ ସଂଗ୍ରାମ ହେଉଥିଲା ସେହିପରି ଚିନ୍ତା ଓ କାର୍ଯ୍ୟ ଏ ଦେଶ ପାଇଁ ଏ ସମାଜ ଦୃଷ୍ଟିରେ ଗ୍ରହଣୀୟ ହେବାପରି ସଂଗଠିତ କରି ପ୍ରୟୋଗ କରିବା ସାଧାରଣ ବ୍ୟକ୍ତି ପକ୍ଷରେ ସହଜ ନୁହେଁ । ଭାରତରେ ଅନ୍ୟମାନେ ଏ ବିଷୟରେ ଚିନ୍ତା କରୁଥିଲେ । ଆମ ଓଡ଼ିଶାରେ ଏହି ବିପ୍ଳବୀମାନଙ୍କର ପଥପ୍ରଦର୍ଶକ ହେଲେ ନବକୃଷ୍ଣ ଚୌଧୁରୀ । ଏହି କଥା ଭାରତର ଅନ୍ୟତମ ପ୍ରଖ୍ୟାତନାମା ସଂଗ୍ରାମୀ ଶ୍ରୀଯୁକ୍ତ ସୁରେନ୍ଦ୍ରନାଥ ଦ୍ୱିବେଦୀ ଉଲ୍ଲେଖ କରିଛନ୍ତି । ଶ୍ରୀଯୁକ୍ତ ଦ୍ୱିବେଦୀଙ୍କ ଭାଷାରେ, "ଏଥିରେ ଆମର ଗୁରୁ ଓ ପଥପ୍ରଦର୍ଶକ ହେଲେ ଶ୍ରୀ ନବକୃଷ୍ଣ ଚୌଧୁରୀ । ସେ ଏ ଦିଗରେ ନାନା ଅନୁସନ୍ଧାନରେ ବ୍ରତୀ ଥିଲେ । ମୋ ପରି କେତେକ ଯୁବକ ତାଙ୍କ ପ୍ରତି ଅଧିକ ଆକୃଷ୍ଟ ହୋଇଗଲୁ । ସେ ନାନା ପୁସ୍ତକ ପଢ଼ୁଥିଲେ ଏବଂ ଆମ୍ଭମାନଙ୍କ ସହ ସେ ସମ୍ପର୍କରେ ଆଲୋଚନା କରୁଥିଲେ × × । ସେ ଏ ଦିଗରେ ବିଭିନ୍ନ ଯୁକ୍ତି ବାଢ଼ୁଥିଲେ । ଫଳରେ ମନରେ ଉଠୁଥିବା ବହୁ ପ୍ରଶ୍ନର କିଞ୍ଚିତ୍ ସନ୍ତୋଷଜନକ ଜବାବ୍ ମିଳିଯାଉଥିଲା × × × ତେଣୁ ଆନ୍ଦୋଳନ ଶିଥିଳ ହୋଇଗଲା ପରେ ଏହାକୁ କିପରି ଅଧିକ ଫଳପ୍ରଦ କରାଯାଇପାରିବ, ତାହାହିଁ ଆମର ଥିଲା ପ୍ରଧାନ ଚିନ୍ତା । ନୂତନ କର୍ମପନ୍ଥାର ସନ୍ଧାନରେ ଥାଉ ।"

ଭାରତୀୟ ସମାଜ ସର୍ବଦା ସମସ୍ୟା ପରିପୂର୍ଣ୍ଣ । ମୁଖ୍ୟତଃ ଧନୀ ନିର୍ଦ୍ଧନ ବିଗ୍ରହ ଅପେକ୍ଷା ବର୍ଣ୍ଣବୈଷମ୍ୟ ବିଗ୍ରହ ଦିଗରୁ ଏ ସମାଜ ଅତି ଜଟିଳ । ଏହି ଅନୁନ୍ନତ, ଜଟିଳ ସମାଜକୁ ପ୍ରଗତିପଥରେ ମୁକ୍ତିସଂଗ୍ରାମୀ କରିବାକୁ ହେଲେ ବିଶେଷ ସାଧନା ଓ ଉପଯୁକ୍ତ ସଙ୍ଗଠନ ଚିନ୍ତାପୋଯୋଗୀ ସହଯୋଗୀ କର୍ମୀ ଆବଶ୍ୟକ । ନବକୃଷ୍ଣ ଚୌଧୁରୀ ଅଭିନବ, ବାସ୍ତବବାଦୀ ଅକୁତୋଭୟ ସେବକ ଓ ସଙ୍ଗଠକ ହୋଇଥିବାରୁ ଏ କ୍ଷେତ୍ରରେ ଯଥେଷ୍ଟ ଦୃଷ୍ଟି ଦେଇପାରିଥିଲେ । ଅଣଖିଆରେ କୃଷିଫାର୍ମରେ ମାଳତୀ ଦେବୀ ଓ ନବ ବାବୁ ଗ୍ରାମ୍ୟ ପରିବେଶ ମଧ୍ୟରେ ରହି ଆଲୋକ ବିତରଣ କରୁଥିବା ସମୟରେ ହିଁ ଉଭୟ ସ୍ୱଦେଶସେବା ଭାବନାରେ ବିଭିନ୍ନ କର୍ମ ଓ ପନ୍ଥା କିପରି ଭାବରେ ଗ୍ରହଣ କରାଯିବ, ସେ ବିଷୟରେ କେତେକ ଯୁବକଙ୍କ ସହିତ ଆଲୋଚନା କରିଥିଲେ ଏବଂ ସେଥିରେ ନବ ବାବୁ ମାଳତୀ ଦେବୀଙ୍କ ସହିତ ଗୌରଚନ୍ଦ୍ର ଦାସ, ଗୌରାଙ୍ଗ ଚରଣ ଦାସ, ସୁଧୀର ଚନ୍ଦ୍ର ଘୋଷ, ଡାକ୍ତର ନୃପେନ୍ ସେନ, ମନମୋହନ ଚୌଧୁରୀ ଓ ସୁରେନ୍ଦ୍ରନାଥ ଦ୍ୱିବେଦୀ ଯୋଗ ଦେଇଥିଲେ । ଏହିମାନଙ୍କ ସମ୍ମିଳିତ ଉଦ୍ୟମକ୍ରମେ ଓଡ଼ିଶାରେ "ଉତ୍କଳ କଂଗ୍ରେସ ସାମ୍ୟବାଦୀ କର୍ମୀସଙ୍ଘ" ନାମକ ସଙ୍ଗଠନର ସୂତ୍ରପାତ ହେଲା । ଡାକ୍ତର ରବି ଘୋଷ ପରବର୍ତ୍ତୀ ସମୟରେ ଏମାନଙ୍କ ସହ ଯୋଗଦେଲେ । ଏ ସମସ୍ତ କାର୍ଯ୍ୟକ୍ରମ ପରିଚାଳନା ନିମିତ୍ତ ପ୍ରୟୋଜନୀୟ ଅର୍ଥ ଓ ଆନୁଷଙ୍ଗିକ ବ୍ୟବସ୍ଥାପାଇଁ ନବବାବୁ ଅଣଖିଆ କୃଷି ଫାର୍ମର ସମସ୍ତ ଆୟ ଅର୍ପଣ କଲେ । ୧୯୩୩ ମସିହା ମଇ ମାସ ପହିଲା ତାରିଖ ବେଳକୁ ନବ ବାବୁଙ୍କ ସମ୍ପାଦନାରେ "ସାରଥି" ନାମକ ବୈପ୍ଳବିକ ସାପ୍ତାହିକ ପତ୍ରିକା ପ୍ରକାଶିତ ହେଲା । ସାରଥିର ପ୍ରଥମ ପୃଷ୍ଠାର ଉପରିଭାଗରେ ସୋସାଲିଜିମ୍‌ର ପ୍ରଥମ ଧ୍ୱନି "ଦୁନିଆର ଶ୍ରମିକ ଏକଜୁଟ୍ ହୁଅ" ଲେଖା ହେଉଥିଲା । ୧୯୩୩ ମସିହା ମେ ମାସ ପହିଲା ତାରିଖ ଦିନ "ସାରଥି" ପତ୍ରିକା ଛପୁଥିବା ରାଧାନାଥ ଶତପଥୀଙ୍କ ହ୍ୟାଣ୍ଡପ୍ରିଣ୍ଟିଙ୍ଗ ପ୍ରେସର ଦୁଇ ତିନି ଜଣ ଶ୍ରମିକ ସୁରେନ୍ଦ୍ରନାଥ ଦ୍ୱିବେଦୀଙ୍କ ପରି କେତେକ ସହଯୋଗୀ କର୍ମୀମାନଙ୍କୁ ପରିଚାଳିତ କରି ମାତ୍ର ଦଶ ପନ୍ଦର ଜଣଙ୍କର ଗୋଟିଏ ଶୋଭାଯାତ୍ରାର ପରିଚାଳନା କରିଥିଲେ ମଳିନ ବସ୍ତ୍ର ପରିହିତ ନବକୃଷ୍ଣ ଚୌଧୁରୀ । 'ମହାତ୍ମା ଗାନ୍ଧୀ କୀ ଜୟ', 'ଭାରତମାତା କୀ ଜୟ' ପରିବର୍ତ୍ତେ ଏମାନଙ୍କ କଣ୍ଠରୁ ଧ୍ୱନିତ ହୋଇଥିଲା "ଦୁନିଆର ଶ୍ରମିକ ଏକଜୁଟ୍ ହୁଅ" । ଏହି ଧ୍ୱନି ଓ ମଇ ଦିବସ ପାଳନ କଟକର ବ୍ୟବସାୟୀ ଗୋଷ୍ଠୀ ମଧ୍ୟରେ ଆଲୋଚନା, ଆଶଙ୍କା ଓ ଉଦ୍‌ବେଗ ସଂଚାର କରିଥିଲା । ନବ ବାବୁ ସେତେବେଳକୁ କଟକ ସହରର ଜଣେ ପରିଚିତ ବ୍ୟକ୍ତି ହୋଇ ସାରିଥିଲେ । ତେଣୁ ତାଙ୍କର ସାମାନ୍ୟତମ ଉପସ୍ଥିତି ହିଁ ବହୁ କ୍ଷେତ୍ରରେ ଯଥେଷ୍ଟ ଥିଲା । ସାରଥିର ପ୍ରକାଶନ ତଥା ସାମ୍ୟବାଦର ପ୍ରଚାର ବହୁ କଂଗ୍ରେସ କର୍ମୀଙ୍କ ମଧ୍ୟରେ ସମାଲୋଚନାର ବସ୍ତୁ ହେବା ଲକ୍ଷ୍ୟ କରାଯାଉଥିଲା ।

ବିଧିବଦ୍ଧ ଗୋଟିଏ ପ୍ରାଦେଶିକ ସମ୍ମିଳନୀ କରି ଉତ୍କଳ କଂଗ୍ରେସ ସାମ୍ୟବାଦୀ କର୍ମୀ ସଂଘର କାର୍ଯ୍ୟକ୍ରମ ସ୍ଥିର କରାଯାଇଥିଲା ଏବଂ ଏଥିରେ ନବକୃଷ୍ଣ ଚୌଧୁରୀ ସାଧାରଣ ସମ୍ପାଦକ, ମାଳତୀ ଚୌଧୁରୀ କୋଷାଧ୍ୟକ୍ଷା, ସୁରେନ୍ଦ୍ରନାଥ ଦ୍ୱିବେଦୀ, ଦିବାକର ପଟ୍ଟନାୟକ, ଗୌରୀଶଙ୍କର ସାମନ୍ତ, ଡାକ୍ତର ନୃପେନ୍ଦ୍ରନାରାୟଣ ସେନ୍, ଗୌରଚନ୍ଦ୍ର ଦାସ, ପ୍ରାଣନାଥ ପଟ୍ଟନାୟକ ଓ ଗତିକୃଷ୍ଣ ସ୍ୱାଇଁ କର୍ମକର୍ତ୍ତା ଭାବରେ ରହିଲେ । ନବବାବୁଙ୍କର ଏ ସମାଜବାଦୀ ଚିନ୍ତାଧାରା ସହିତ ଜୟପ୍ରକାଶ ନାରାୟଣ, ଅଚ୍ୟୁତ ପଟ୍ଟବର୍ଦ୍ଧନ, ମିନୁ ମାସାନି ଓ ଅଶୋକ ମେହେଟ୍ଟା ପ୍ରଭୃତିଙ୍କର ଚିନ୍ତା ସମଧର୍ମୀ ହୋଇପାରିଥିଲା । ପଣ୍ଡିତ ଜବାହରଲାଲ ନେହରୁ ମଧ୍ୟ ନବ ବାବୁଙ୍କର କେତେକ ନୀତିକୁ ସମର୍ଥନ କରୁଥିଲେ । ପରବର୍ତ୍ତୀ ସମୟରେ ନବବାବୁ ଜୟପ୍ରକାଶ ନାରାୟଣ, ମିନୁ ମାସାନୀ ପ୍ରଭୃତିଙ୍କ ସହିତ ଏକମତ ହୋଇ ଏହି କର୍ମୀ ସଂଘକୁ ନିଖିଳ ଭାରତ କଂଗ୍ରେସ ସୋସାଲିଷ୍ଟ ପାର୍ଟିରେ ସାମିଲ

କରଦେଲେ । ଏ ସମସ୍ତ କ୍ଷେତ୍ରରେ ମହାତ୍ମା ଗାନ୍ଧୀଙ୍କର ଚିନ୍ତାଧାରା ପ୍ରତି ଗଭୀର ଆନୁଗତ୍ୟ କାର୍ଯ୍ୟରେ ସର୍ବଦା ପ୍ରକଟିତ ହେଉଥିଲା । ତେଣୁ ଚିନ୍ତାଜଗତରେ ନବ ବାବୁ ସାମ୍ୟବାଦୀ ବା ବିପ୍ଳବୀ ସାଜା ହୋଇଥିଲେ ମଧ୍ୟ କଂଗ୍ରେସ ସହିତ ତାଙ୍କର ସମ୍ପର୍କ ସର୍ବଦା ସ୍ଥିର ରହିଥିଲା । ୧୯୩୭ ମସିହାରେ 'ଏରସମା'ରୁ ବିଧାନସଭାକୁ କଂଗ୍ରେସ ପ୍ରାର୍ଥୀରୂପେ ମନୋନୀତ ହେଲେ । କଂଗ୍ରେସକୁ ସୋସିଆଲିଜିମ ଆଡ଼କୁ ନେବା ଏବଂ ଅଧିକ ବ୍ରିଟିଶ୍‌ବିରୋଧୀ କରିବା ନବ ବାବୁଙ୍କ ଆଭିମୁଖ୍ୟ ଥିଲା । ତେଣୁ ନୂତନ ସୋସାଲିଷ୍ଟ ପାର୍ଟୀକୁ ନିଜର ନିକଟତମ କର୍ମୀ ଭାବରେ ଗ୍ରହଣ କରି ରାଜନୀତି ଓ ସାମାଜିକ ବିପ୍ଳବ କ୍ଷେତ୍ରରେ କାର୍ଯ୍ୟ କରିଗଲେ । ସେ ସମୟରେ ପଣ୍ଡିତ ନୀଳକଣ୍ଠ ଦାସ ମଧ୍ୟ ନବବାବୁଙ୍କ ଉପରେ ଭରସା ରଖିଲେ ଏବଂ ତାଙ୍କର ସକ୍ରିୟ ସହଯୋଗ କାମନା କଲେ । ୧୯୩୮ ରୁ ୧୯୪୦ ମସିହା ପର୍ଯ୍ୟନ୍ତ ଢେଙ୍କାନାଳ ଓ ତାଳଚେରରେ ଯେଉଁ ଅଭୂତପୂର୍ବ ପ୍ରଜା ଆନ୍ଦୋଳନ ହୋଇଥିଲା, ତାର ଅନ୍ୟତମ ମୁଖ୍ୟ ପରିଚାଳକ ଓ ସଙ୍ଗଠକ ଥିଲେ ନବ ବାବୁ । ନବ ବାବୁ, ଗୌରାଙ୍ଗଚରଣ ଦାସ, ଭଗବତୀ ଚରଣ ପାଣିଗ୍ରାହୀ ତିନି ବାଟରୁ ତିନିଟି ଶୋଭାଯାତ୍ରା ନେଇ ଢେଙ୍କାନାଳରେ ପ୍ରବେଶ କଲେ । ବହୁ କର୍ମୀ ଓ ଆନ୍ଦୋଳନକାରୀ ଅକଥନୀୟ ଯନ୍ତ୍ରଣା ଭୋଗ କରୁଥିଲେ । ଗୌରାଙ୍ଗଚରଣ ଦାସ ଯଥେଷ୍ଟ ମାଡ଼ ଖାଇ ଦୀର୍ଘ ଦିନ ଚିକିତ୍ସା ପରେ ସୁସ୍ଥ ହେଲେ । ରବି ଘୋଷ ଓ ଅନନ୍ତ ପଟ୍ଟନାୟକ ପ୍ରଭୃତି ସେହିପରି କଠିନ ଅତ୍ୟାଚାର ମଧ୍ୟ ଦୀର୍ଘ ଦିନ ଯନ୍ତ୍ରଣା ପାଇଲେ । ଏ ସମୟରେ ଏମାନଙ୍କ ସହିତ ଅନ୍ୟତମ ସହଯୋଗୀ ଓ ପରିଚାଳକଭାବେ ସାରଙ୍ଗଧର ଦାସ ରହିଥିଲେ ।

ସାରଙ୍ଗଧର ଦାସଙ୍କର ସହଯୋଗକ୍ରମେ ୧୯୩୮ ମସିହା ପରେ ଅନୁଗୁଳରେ ଆଶ୍ରମ ପ୍ରତିଷ୍ଠା କରାଗଲା । ସାରଙ୍ଗଧରବାବୁ ଜଣେ ବଳିଷ୍ଠ ସ୍ୱାଧୀନଚେତା ବ୍ୟକ୍ତି ଥିଲେ । ତାଙ୍କର ଆନ୍ତରିକ ସହଯୋଗ ଗଡ଼ଜାତ କୃଷକ ଆନ୍ଦୋଳନ ପାଇଁ ଯଥେଷ୍ଟ ସହାୟକ ହୋଇଥିଲା । ଅନୁଗୁଳ ଓ ଏହାର ପାର୍ଶ୍ୱବର୍ତ୍ତୀ ଗ୍ରାମଗୁଡ଼ିକରେ ବିଭିନ୍ନ ଉପାୟରେ ଲୋକସେବାମୂଳକ କାର୍ଯ୍ୟ ଏବେ ମଧ୍ୟ ହେଉଅଛି । 'କୋଶଳା' ଗୋଟିଏ ବୈପ୍ଳବିକ ପଲ୍ଲୀସେବା କେନ୍ଦ୍ର । ଏଠି 'ହିଜିରତ' ବେଳେ ତାଳଚେର ଓ ଢେଙ୍କାନାଳର ହଜାର ହଜାର ନରନାରୀ ଆସି ଆଶ୍ରୟ ଗ୍ରହଣ କରୁଥିଲେ । ଲୋକମାନଙ୍କ ଉପରେ ନାନାପ୍ରକାରର ଅତ୍ୟାଚାର କରାଯାଉଥିଲା । କ୍ୟାମ୍ପକୁ ମହାତ୍ମା ଗାନ୍ଧୀଙ୍କ ବ୍ୟତୀତ ବହୁ ବିଶିଷ୍ଟ ନେତୃବର୍ଗ ଆସୁଥିଲେ । ନବବାବୁ, ମାଳତୀ ଦେବୀ, ରମା ଦେବୀ, ବଳବନ୍ତରାୟ ମେହେଟାଙ୍କ ପରି ଉଚ୍ଚକୋଟୀର ସେବକ ଓ ନେତା ଆସୁଥିଲେ । ସେ ସମୟର କାହାଣୀ ବାଜିରାଉତ ପ୍ରଭୃତିଙ୍କୁ ଗୁଳି କରିବା, ପବିତ୍ରମୋହନ ପ୍ରଧାନ ଜେଲରୁ ପଳାଇଯିବା, ଇଂରେଜ ସରକାର ଉଡ଼ାଜାହାଜରୁ ବୋମା ପକାଇ ଲୋକଙ୍କୁ ଭୟଭୀତ କରାଇବା ଓ ପ୍ରଜାମେଳ ଦମନ ପାଇଁ ରାଜାମାନଙ୍କର ଅକଥନୀୟ ଅତ୍ୟାଚାର, ତା ବିରୁଦ୍ଧରେ ଏମାନଙ୍କର ପ୍ରୟୋଜନୀୟ ପ୍ରତିରୋଧାତ୍ମକ କାର୍ଯ୍ୟକ୍ରମ ଆଜି ମଧ୍ୟ ଲୋକମୁଖରେ ଲୋମହର୍ଷଣକାରୀ କାହାଣୀରେ କୁହାଯାଉଅଛି । ବୈଷ୍ଣବ ପଟ୍ଟନାୟକ, ଦିବାକର ପ୍ରଧାନ, ଏପରି ବହୁ ବ୍ୟକ୍ତି ଏ ଦଗ୍ଧ ଦାବାନଳ ମଧ୍ୟରେ ଅରଣ୍ୟରୁ ଅରଣ୍ୟାନ୍ତର ପଳାୟିତ ପଶୁଯୂଥ ପରି ରହିଯାଇ ଅଛନ୍ତି । "କର ବା ମର" ଆନ୍ଦୋଳନଠାରୁ ଆରମ୍ଭ କରି ମହତାବଙ୍କ ମନ୍ତ୍ରିମଣ୍ଡଳରେ ରାଜସ୍ୱ ମନ୍ତ୍ରୀ ଭାବରେ ଯୋଗଦେବା ପର୍ଯ୍ୟନ୍ତ କର୍ମଧାରା ଉଲ୍ଲେଖଯୋଗ୍ୟ । ଏହି ସମସ୍ତ ମଧ୍ୟରେ ଭୂରାଜସ୍ୱ ତଥା ଜମିଜମା ସମ୍ବନ୍ଧୀୟ ବହୁ ସଂସ୍କାର ତାଙ୍କର କୃଷକ ମଙ୍ଗଳ-ଚିନ୍ତାର ପରିଚୟ ଦିଏ ।

୧୯୪୨ ମସିହା ଭାରତଛାଡ଼ ଆନ୍ଦୋଳନ ସମୟରେ ବ୍ରହ୍ମପୁର ଜେଲର କାହାଣୀ । ଜାନୁଆରୀ ଛବିଶ ତାରିଖରେ ସ୍ୱାଧୀନତା ଦିବସ ପାଳନ କରାଗଲା । କେତେକ ବନ୍ଦୀ, ଯୁବକ ୧୯୪୩ ଜାନୁଆରୀ ଛବିଶ ତାରିଖକୁ ସେହି ଭାବରେ ପାଳନ କରିବାକୁ ଆୟୋଜନ କଲେ । ପଦାରୁ ଅଣାଯାଇଥିବା ଜାତୀୟ ପତାକା ଉତ୍ତୋଳନ କରାଯିବା ପାଇଁ ବ୍ୟବସ୍ଥା ହେଲା । ତେଣୁ ଜିଲ୍ଲା କଲେକ୍ଟରଙ୍କ ନିର୍ଦ୍ଦେଶକ୍ରମେ ସଂଗ୍ରାମୀମାନଙ୍କୁ ନିର୍ମମ ପ୍ରହାର କରାହେଲା । ଏତିକବେଳେ ଗୁଳି କରିବାର ମଧ୍ୟ ନିର୍ଦ୍ଦେଶ ଦିଆଯାଇଥାନ୍ତା;. କିନ୍ତୁ ନବବାବୁ ତାଙ୍କ ଜେଲ ଓ୍ୱାର୍ଡ ଭିତରୁ ପାଗଳଙ୍କ ପରି ଦୌଡ଼ିଆସି ନିଜ ଛାତି କଲେକ୍ଟରଙ୍କ ଆଗରେ ଦେଖାଇ କହିଲେ, "ଏ ଛାତିରେ ଗୁଳି ନ ବାଜିବା ପର୍ଯ୍ୟନ୍ତ ଆପଣମାନେ ପିଲାଙ୍କୁ ମାଡ଼ ଦେଇପାରିବେ ନାହିଁ ।" କଲେକ୍ଟର ଲଜ୍ଜିତ ହୋଇ ଫେରିଗଲେ । ଏପରି ସାହସିକ କାର୍ଯ୍ୟ ଅକଳନୀୟ ବହୁ ସମସ୍ୟା ସମାଧାନ କ୍ଷେତ୍ରରେ ତାଙ୍କର ସହଜ ସମ୍ବେଦନଶୀଳ ମନୋଭାବ ସମସାମୟିକ ପରିବେଶକୁ ଶାନ୍ତ ମଧୁର କରିପାରୁଥିଲା । ୧୯୪୫ ମସିହାରେ ସେ ଯେତେବେଳେ ଜେଲରୁ ବାହାରି ଅନୁଭବ କଲେ ଭାରତରୁ ଇଂରେଜ ଶାସନ ଲୋପହେବା ନିଶ୍ଚିତ, ସେତେବେଳେ ମନ୍ତ୍ରିମଣ୍ଡଳରେ ଯୋଗଦେବା ପାଇଁ ଚିନ୍ତାକଲେ । ୧୯୪୬ ମସିହାରେ ନିର୍ବାଚନ ହେଲା, କଂଗ୍ରେସ ବିପୁଳ ସଂଖ୍ୟାଗରିଷ୍ଠ ହେବାପରେ ହରେକୃଷ୍ଣ ମହତାବଙ୍କ ମନ୍ତ୍ରିମଣ୍ଡଳରେ ସେ ହେଲେ ରାଜସ୍ୱ ମନ୍ତ୍ରୀ ।

୧୯୪୫ ରେ ଜେଲ୍‌ରୁ ଫେରିବା ପରେ ମାଳତୀ ଚୌଧୁରୀ ଓ ନବକୃଷ୍ଣ ଚୌଧୁରୀଙ୍କ ପ୍ରଚେଷ୍ଟାରେ ଅନୁଗୁଳରେ "ବାଜିରାଉତ ଛାତ୍ରାବାସ" ଗଢ଼ାଯାଇଥିଲା । ୧୯୪୭ ରେ ଗଢ଼ାହେଲା "ଉତ୍କଳ ନବଜୀବନ ମଣ୍ଡଳ" । ସେହି ଅନୁଗୁଳ ବାଜିରାଉତ ଛାତ୍ରାବାସ ଓ ନବଜୀବନମଣ୍ଡଳ କାର୍ଯ୍ୟାଳୟ ଆଜି ମଧ୍ୟ ଓଡ଼ିଶାର ଆଦିବାସୀ ଓ ଅନୁନ୍ନତମାନଙ୍କର ସେବାପୀଠ । ସାରଙ୍ଗଧର ଦାସ ଏହି ମଣ୍ଡଳର ସଭାପତି ଓ ଗୋପବନ୍ଧୁ ଚୌଧୁରୀ ସମ୍ପାଦକ ହେଲେ । ଅନ୍ୟାନ୍ୟ ଉଦ୍ୟୋକ୍ତାମାନଙ୍କ ମଧ୍ୟରେ ଥିଲେ ରବି ଘୋଷ, ଗୁଣନିଧି ମହାନ୍ତି, ଆଚାର୍ଯ୍ୟ ହରିହର ଦାସ, ପଣ୍ଡିତ କୃପାସିନ୍ଧୁ ହୋତା, ଶ୍ରୀମତୀ ରମା ଦେବୀ, ଈଶ୍ୱରଲାଲ ବ୍ୟାସ ଓ ବିଶ୍ୱନାଥ ପଟ୍ଟନାୟକ ପ୍ରଭୃତି । ଏ ଅନୁଷ୍ଠାନ ନବ ବାବୁ ଓ ମାଳତୀ ଦେବୀଙ୍କର ଅମଳିନ, ଆନ୍ତରିକ ସେବା ଓ ପ୍ରୀତିର ପବିତ୍ର ପୀଠ । ମନେହୁଏ ଏହି ପୀଠର ପିତାମାତା ଭାବରେ ନବ ବାବୁ ଓ ମାଳତୀ ଦେବୀ ଚୌଧୁରୀ-ପରିବାର ପିଲାଙ୍କର 'ବାପି' ଓ 'ନୁମା'ରୁ ସମସ୍ତଙ୍କର 'ବାପି' 'ନୁମା' ହୋଇଗଲେ । ଟିଂ ଟିଂ ଧଡ଼ିଆ ଶ୍ରୀମାନ୍ ନିତ୍ୟାନନ୍ଦ ପୂଳିଏ କାଛୁ ଧରି ଏଠାକୁ ପ୍ରଥମେ ଆସିଗଲେ । ତା'ର ସେବାରେ ଲାଗିପଡ଼ିଲେ ବଡ଼ଝିଅ ଉତ୍ତରା । ନିମପତ୍ର ଖୋଳା, କାଛୁଧୂଆ କାମ ତାଙ୍କୁ ମିଳିଗଲା । ସାବି, ଚନ୍ଦ, ଲକ୍ଷ୍ମୀ, ସୁନାଫୁଲ, ଗୁରୁବାରି, ବାନାମ୍ବର, ଉତ୍ପଳ, ମୀରା ଆହୁରି କେତେ ପୁଅଝିଅ । ବାବାଜୀ ବଳଭଦ୍ର ମିଶ୍ର ମୁଖ୍ୟ କାର୍ପଟଦାର ଏବେ ବି ଅଛନ୍ତି । ବାବାଜୀ ବଳଭଦ୍ରଙ୍କର ମୁହଁରୁ ସେ ସମୟର କାହାଣୀ ଶୁଣିଲେ ଆଜି ବି ମନ ଅନେକ ଗଭୀରକୁ ଚାଲିଯାଏ । ସେ କହନ୍ତି "ବାପି ସାଙ୍ଗରେ ମୁଁ ୪୫ ବର୍ଷ କଟାଇଲି । କେବେ ରାଗିକରି ମତେ ସେ 'ତୁ' ବୋଲି କହିନି । ନୁମା ରାଗିଗଲେ 'ଗାଧା', ଷ୍ଟୁପିଡ୍ ଯା'ଇଚ୍ଛା ତା' ଗାଳି ଦେବ । ପୁଣି ପର ମୁହୂର୍ତ୍ତରେ 'ବାବାଜୀ 'ଖାଇଲୁଣି ନା ରେ' କହି କଥା ବୁଲେଇ ଦେବ । ସେ ଆଉ ମୁଁ ନାତି । ଥରକର କଥା, ବାପି ଜମିଜମା ମନ୍ତ୍ରୀ ଥିଲାବେଳେ 'ଟିକରପଡ଼ା' ଯାଇଥିଲା । ଆମେ ସମସ୍ତେ ପିଲାଙ୍କୁ ନେଇ ତା' ସାଙ୍ଗରେ ଯାଇଥିଲୁ । ବଣରୁ 'ତାକୁ' ନ ଜଣେଇ ବଡ଼ ସମ୍ବରଟାଏ ମାରିଲୁ । ସାବି ବୋଲି ଝିଅଟିଏ ଆମ ସାଥିରେ ଥିଲା । ସେ ଡାକ ପକେଇଲା 'ବାପି', 'ବାପି', ଇଏଟୁ କେଉଁଟାଏ କ'ଣ ଲୋ ? ବାପି ଆସି ଦେଖିଲା, ରାଗି ନିଆଁବାଣ । ମୁଁ ରାଜସ୍ୱମନ୍ତ୍ରୀ, ମୋ ସାଙ୍ଗରେ ଆସି ମୋ ବିନା ଅନୁମତିରେ ଯିଏ ଏ କାମ କରିଛି, ତାକୁ ଛାଡ଼ିବନି, ଜେଲ୍‌ରେ ଭରିବ । ନୁମା' ସେତେ ବୁଝାଇଲା ଶେଷରେ ମତେ ଡାକି ଖୁବ୍ ଗାଳିଦେଇ କହିଲା, "ଏ ମାଂସକୁ କାଟି ଗାଁରେ ବୁଲି ବାଣ୍ଟିଦେବାକୁ ହେବ" । ତରେମରେ ସେଇଆ କଲି । ଦୁଇଟା ଫଡ଼ିଆ ଲୁଚେଇ ଟ୍ରକରେ ନେଇ ଆସିଥିଲି । ପୁଣି ଆସି ଅନୁଗୁଳରେ ଗଛଉହାଡ଼ରେ ତାକୁ ରାନ୍ଧିବାକୁ ବସିଛୁ । ବଡ଼ ପାଟିରେ ଡାକ ଦେଲା "ଆରେ ସେ ଗନ୍ଧଟା କାହିଁକି ହେଉଛି" । ନୁମା' ବୁଝାଇଲା ସହରରେ ପିଲାଟା ଆଣିଛି, ଛାଡ଼ିଦିଅ । ବାପି କହିଲା "ସେ ଚୋରି ମାଂସ ତା ପାଟିରେ ବାଜିବାକୁ ଦେବିନି ।" ପୁଣି ପୁଡ଼ା ପୁଡ଼ା କରି ଗାଁରେ ବାଣ୍ଟିଲି । ଆସି ଚୁପ୍ କରି ବାପି ପାଖରେ ଠିଆ ହେଲି । ମତେ ପଚିଶ ଟଙ୍କା ଦେଇ କହିଲା "ଯା ଖାସି କିଣିଆଣି ମାଂସ ରାନ୍ଧି ଖାଆ, ଆଉ ଏପରି କେବେ କରିବୁନି । ଯଦି କେବେ ହରିଣ ମାରିବୁ, ଅନୁମତି ନେଇ ମାରିବୁ । ଏଇଥରକ ଯାହା ମତେ ଗାଳି-ଦେଇଥିଲା, ଆଉ କେବେ ବି କିଛି କହିନି । ମୋ 'ବାପି' ମୋର ବହୁତ ସେବା କରିଛି. ଗୋଡ଼ ମୋଡ଼ି ଦେଇଛି; କିନ୍ତୁ ମତେ ତା'କୁ କେବେ ଛୁଆଇଁ ଦେଇନି । ମୋର ବାପ, ମା, ଘର, ଜମିବାଡ଼ି ସବୁ ଯାଇଥିଲା । ମୋର 'ବାପି' ଥିଲା । ମୋର ସବୁ ଥିଲା । ଆଜି 'ବାପି' ନାହିଁ, ଦୁନିଆରେ କେହି ନ ଥିଲା ପରି ଲାଗୁଛି । କାଲୁକୁ (ନବ ବାବୁଙ୍କ ଏକମାତ୍ର ପୁଅ) ଏତେ ଭଲ ପାଉଥିଲି, ସେ ବି ଚାଲିଯାଇଥିଲା । ତାକୁ ଭୁଲି ଯାଇଥିଲି । 'ବାପି' ଚାଲିଗଲା ପରେ ମତେ ସବୁଆଡ଼ ଅନ୍ଧାର ଦିଶୁଛି ।" ଏହା କହି ବୃଦ୍ଧ ବଳଭଦ୍ର ମିଶ୍ର ବୁକୁ ଫଟାଇ କାନ୍ଦିଉଠିଲେ ।

ରାଜସ୍ୱମନ୍ତ୍ରୀ ନବକୃଷ୍ଣ ଥିଲେ କୃଷକର, ଜମି ମାଲିକର ନୁହେଁ । ସେଥିପାଇଁ ଭୂସଂସ୍କାର କୃଷକ ଉପଯୋଗୀ ନିୟମ ପ୍ରଣୟନ ନିମିତ୍ତ ଓ ପ୍ରଗତିଶୀଳ ଜମିଜମା ବ୍ୟବସ୍ଥା ଉଦ୍ଦେଶ୍ୟରେ ଶ୍ରୀ ଚୌଧୁରୀଙ୍କର ଅଧ୍ୟକ୍ଷତାରେ କମିଟି ଗଠନ କରାଗଲା; କିନ୍ତୁ ବିଧିର ବିଚିତ୍ର ବିଧାନ । ୧୯୪୮ ଜାନୁଆରୀ ୩୦ ରେ ମହାତ୍ମା ଗାନ୍ଧୀଙ୍କ ହତ୍ୟା । ଠିକ୍ ଦୁଇମାସ ପରେ ୧୯୪୮ ମାର୍ଚ୍ଚ ମାସରେ ଏକମାତ୍ର ୧୭ ବର୍ଷର ପୁଅ କାଲୁ (ବିନାୟକ ଚୌଧୁରୀ) ସଂସାରରୁ ଚାଲିଗଲା । ସେ ବିଷୟରେ ଉଲ୍ଲେଖ କରି ସେ ପରିବାରର ଅନ୍ୟତମ ସଭ୍ୟ ସଦୃଶ ସୁରେନ୍ଦ୍ର ବାବୁ (ସୁରେନ୍ଦ୍ର ନାଥ ଦ୍ୱିବେଦୀ) ଉଲ୍ଲେଖ କରିଛନ୍ତି "କାଲୁର ଆକସ୍ମିକ ଆତ୍ମ-ହତ୍ୟା ଆମ ସମସ୍ତଙ୍କୁ ଦୁଃଖସାଗରରେ ଭସାଇ ଦେଲା । କାଲୁ ସାଧାରଣ ପିଲା ନ ଥିଲା । ସେ ରେଭେନ୍ସା କଲେଜର ପ୍ରଥମ ବାର୍ଷିକ ବିଜ୍ଞାନ ଛାତ୍ର । ବୟସ ମାତ୍ର ସତର । ସେ ମନ୍ତ୍ରୀଙ୍କ ପୁଅ, ମା' ନେତ୍ରୀ; କିନ୍ତୁ କଟକ ସହରରେ ସାଇକଲ ଚଢ଼ି କାଲୁ କୃଷକ ଖବରକାଗଜ ବିକୁଥିଲା । କଟକରେ ସୋସାଲିଷ୍ଟ ପାର୍ଟି ଉଦ୍ୟମରେ ଯେଉଁ ମେହେନ୍ତରଙ୍କ ସଙ୍ଗଠନ କରାଗଲା, ସେ

ଥିଲା ଏହାର ମୁଖ୍ୟ ଉଦ୍ଦେଶ୍ୟ । ସ୍ତ୍ରୀ ଓ ଯୁବକମାନଙ୍କୁ ଟାଣିଆଣିବା ଶକ୍ତି ତା'ର ଥିଲା । ତା ଆଗରେ ଥିଲା ଏକ ଉଜ୍ଜ୍ୱଳ ଭବିଷ୍ୟତ୍ । ତା'ର ମୃତ୍ୟୁ ଆମ ଉପରେ ଏକ ଧକ୍କା ଆଣି ପହଞ୍ଚାଇଲା । ଅନେକ ସାଥୀ ମ୍ରିୟମାଣ ହୋଇପଡ଼ିଲେ । ନବକୃଷ୍ଣ ଚୌଧୁରୀ ଓ ମାଳତୀ ଚୌଧୁରୀଙ୍କ ଅବସ୍ଥା ସହଜରେ ଅନୁମେୟ । ତେଣୁ ୧୯୪୮ ମସିହା ଏପ୍ରିଲ ମାସରେ ସେ ମନ୍ତ୍ରି-ମଣ୍ଡଳରୁ ଇସ୍ତଫା ଦେଇ ଅନୁଗୁଳ ଚାଲିଗଲେ; କିନ୍ତୁ ଜମିଜମା କମିଟିର ସଭାପତି ଭାବରେ କାମ କରିବାକୁ ପଛାଇଲେ ନାହିଁ । ୧୯୪୯ ମସିହା ଜୁଲାଇ ମାସରେ ରିପୋର୍ଟ ଦେଇଥିଲେ । ଏହା ଓଡ଼ିଶାର ଜମିଜମା କମିଟି ବା ଚୌଧୁରୀ କମିଟି ରିପୋର୍ଟ ଭାବେ ପ୍ରଖ୍ୟାତ । ଶାସନର ବିକେନ୍ଦ୍ରୀକରଣ ପାଇଁ ଏ ରିପୋର୍ଟରେ ଯେଉଁ ପଞ୍ଚାୟତରାଜ ପ୍ରଚଳନର ପ୍ରସ୍ତାବ ଦିଆଯାଇଥିଲା, ତାହା ସମଗ୍ର ଭାରତର ଚିନ୍ତାରାଜ୍ୟରେ ଅଭିନବ ଚେତନା ସୃଷ୍ଟି କଲା ।

ନବ ବାବୁଙ୍କର ଜୀବନ ଜ୍ୱାଳା, ଯନ୍ତ୍ରଣା ପରିପୂର୍ଣ୍ଣ ହେଲେ ମଧ୍ୟ ଚିର ଜାଗ୍ରତ ଓ ଜାଜ୍ୱଲ୍ୟମାନ । ତେଣୁ ସେ ସମଗ୍ର ଭାରତରେ ଜଣେ ସ୍ୱୟଂସମ୍ପୂର୍ଣ୍ଣ ସେବକ ଭାବରେ ସୁପରିଚିତ । ତାଙ୍କର ଏହି ବ୍ୟକ୍ତିତ୍ୱ ତାଙ୍କୁ ସମସ୍ତଙ୍କ ନିକଟରେ ପ୍ରିୟ କରି ରଖିଥିଲା । ୧୯୫୦ ଏପ୍ରିଲ ମାସରେ ଶ୍ରୀ ମହତାବ କେନ୍ଦ୍ର ମନ୍ତ୍ରିମଣ୍ଡଳରେ ଯୋଗ ଦେଲେ । ଶ୍ରୀ ଚୌଧୁରୀଙ୍କର ପ୍ରଗତିଶୀଳ ଚିନ୍ତା ଓ କାର୍ଯ୍ୟ ପାଇଁ ତାଙ୍କୁ ପଣ୍ଡିତ ଜବାହରଲାଲ ନେହରୁ ଅତ୍ୟନ୍ତ ଶ୍ରଦ୍ଧା ଓ ସମ୍ମାନ କରୁଥିଲେ । ତେଣୁ ପଣ୍ଡିତ ନେହରୁ ନବ ବାବୁଙ୍କୁ ମୁଖ୍ୟମନ୍ତ୍ରୀ ଦାୟିତ୍ୱ ବହନ କରିବା ପାଇଁ ଅନୁରୋଧ କଲେ । ପଣ୍ଡିତ ନେହରୁଙ୍କ ଅନୁରୋଧ ଏଡ଼ି ନ ପାରି ୧୯୫୦ ଏପ୍ରିଲ ମାସରୁ ସେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେଲେ ।

୧୯୫୦ ମସିହା ଏପ୍ରିଲ ମାସରୁ ଓଡ଼ିଶାର ଶାସନକ୍ଷେତ୍ରରେ ନୂତନ ଅଧ୍ୟାୟର ସୂତ୍ରପାତ ହେଲା । ଏହା ନବ ବାବୁଙ୍କ ଜୀବନରେ ଅନ୍ୟତମ ଗୁରୁତ୍ୱପୂର୍ଣ୍ଣ ସମୟ । ରାଜନୀତିଜ୍ଞ ନବକୃଷ୍ଣ ତାଙ୍କ ଜୀବନକାଳ ମଧ୍ୟରେ ଏହି ସମୟରେ ଉଚ୍ଚତମ ଆସନ ଲାଭ କଲେ; କିନ୍ତୁ ସହଧର୍ମିଣୀ ମାଳତୀ ଦେବୀ ଏହାକୁ ଆନ୍ତରିକତା ସହିତ ଗ୍ରହଣ କରୁ ନ ଥିବା କଥା ତାଙ୍କ ଜାମାତା (ଗୋପବନ୍ଧୁ ବାବୁଙ୍କ ଜୋଇଁ) ଶରତ୍ ଚନ୍ଦ୍ର ମହାରଣା ସ୍ମରଣ କରି କହନ୍ତି "ଦାଦା ହଠାତ୍ କହିଲେ, ଯାହା ଜରୁରୀ କାଗଜପତ୍ର ଅଛି, ମୋଠାରୁ ଦସ୍ତଖତ କରିନିଅ," କାରଣ ସେତେବେଳେ ତାଙ୍କର ତତ୍ତ୍ୱାବଧାନରେ ଅନୁଗୁଳର କାର୍ଯ୍ୟକ୍ରମ ଚାଲୁଥିଲା । ମତେ ପାଖକୁ ଡାକି କହିଲେ "ତୁମେ ସବୁ ବୁଝିବ" । ତା'ପରେ ତର ତର ହୋଇ ଦାଦା (ନବ ବାବୁ) କଟକ ଚାଲିଗଲେ । ସବୁଦିନେ ମୁଁ ଗଲା ପର୍ଯ୍ୟନ୍ତ ଦାଦା, ଖୁଡ଼ୀ (ମାଳତୀ ଦେବୀ) ଅପେକ୍ଷା କରିଥାନ୍ତି । ମୁଁ ଗଲେ ସାଙ୍ଗ ହୋଇ ଖାଉ । ଦାଦା ସେତେବେଳକୁ ଚାଲିଯାଇଥିଲେ । ଖୁଡ଼ୀ ମୋ ପାଇଁ ଭାତ ବାଢ଼ିଦେଲେ । ନିଜେ ଖୁବ୍ ବ୍ୟସ୍ତ ହେଉଥିଲେ, କହୁଥିଲେ "ଏ ଛୁଆଙ୍କୁ ଧରି ମୁଁ ପାଲଲହଡ଼ା ଜଙ୍ଗଲକୁ ଚାଲିଯିବି । 'ସେ' ତା'ର କ'ଣ କରୁଛ କରୁ ।" ଏ ସବୁ ଅସଂଲଗ୍ନ କଥା ମୁଁ କିଛି ବୁଝିପାରୁ ନ ଥିଲି । ପରେ ଜାଣିଲି ଦାଦା ମୁଖ୍ୟମନ୍ତ୍ରୀ ହେବା ପାଇଁ ଗଲେ ।

ପରବର୍ତ୍ତୀ ସମୟରେ ନବ ବାବୁ କଥା ପ୍ରସଙ୍ଗରେ କହିଛନ୍ତି, "ତାଙ୍କର ମୁଖ୍ୟମନ୍ତ୍ରିତ୍ୱ ପଛରେ ଗଭୀର ରାଜନୀତିର ଖେଳ ରହିଥିଲା ।" ସେ ତାକୁ ବୁଝିପାରି ନ ଥିଲେ । "That was a very deep game," ମନେହୁଏ ସେବାସଙ୍ଗିନୀ ମାଳତୀ ଦେବୀ ଏ ଖେଳର ଗନ୍ଧ ସାମାନ୍ୟ ବୁଝିପାରିଥିଲେ । ସେ ଯାହାହେଉ ମୁଖ୍ୟମନ୍ତ୍ରୀ ଭାବରେ ନବ ବାବୁଙ୍କର କାର୍ଯ୍ୟକାଳ ଓଡ଼ିଆ ଜାତି, ଓଡ଼ିଆ ଭାଷା ଓ ଓଡ଼ିଶାର ଚାଷୀମୂଲିଆଙ୍କ ପାଇଁ ବିଶେଷ ମଙ୍ଗଳକାରୀ । ଏହା ମୁକ୍ତକଣ୍ଠରେ ସ୍ୱୀକୃତ ।

ରାଜସ୍ୱମନ୍ତ୍ରୀ ଓ ମୁଖ୍ୟମନ୍ତ୍ରୀ ଭାବରେ ସେ ବହୁତ ପ୍ରଗତିଶୀଳ ଆଇନ୍ ପ୍ରଣୟନ କରିଥିଲେ; ଯାହା ଶାସନର ଦିଗ ପରିବର୍ତ୍ତନ କରିପାରିଥିଲା ।

ତତ୍କାଳୀନ ମୁଖ୍ୟମନ୍ତ୍ରୀ ଓ ଅର୍ଥମନ୍ତ୍ରୀ ଭାବରେ ସେ ପ୍ରଥମେ ଓଡ଼ିଆରେ ବଜେଟ୍ ଭାଷଣ ଦେଇଥିଲେ । ସରକାରୀ ଭାଷା ଆଇନ୍ ପ୍ରଣୟନ କରି ସବୁ କାମ ଓଡ଼ିଆରେ କରାଯିବ ବୋଲି ନିର୍ଦ୍ଦେଶ ଦେଲେ । ଜମିଦାରୀ ଉଚ୍ଛେଦ ଆଇନ ଫଳରେ ଛୋଟବଡ଼ ଜମିଦାରଙ୍କ ଅତ୍ୟାଚାରରୁ ଜନସାଧାରଣ ରକ୍ଷା ପାଇଲେ । ଗ୍ରାମପଞ୍ଚାୟତ ଆଇନ ବଳରେ ୧୯୫୦-୫୧ ରେ ଗ୍ରାମ-ପଞ୍ଚାୟତ ନିର୍ବାଚନ କରାଗଲା । ୧୯୫୫ ରେ ଅଞ୍ଚଳ ଶାସନ ଆଇନ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି, ଯାହା ଫଳରେ ଲୋକ

ଶାସନଧାରାରେ ଏକ ବିଶେଷ ପରିବର୍ତ୍ତନ ଘଟିଲା । ଏହି ଆଇନ୍ ପ୍ରଣୟନ କରିବା ପୂର୍ବରୁ ଯେଉଁ କମିଟି ନିର୍ଣ୍ଣୀତ ହୋଇଥିଲା, ସେ ୪୭ ଥର ବସି ଏହାର ଭଲମନ୍ଦ ଦିଗ ବିଚାର କରିଥିଲେ । ତାଙ୍କ ସମୟରେ ଯେଉଁ Progressive Legislation କରାଯାଇଥିଲା, ତାହା ଉଲ୍ଲେଖଯୋଗ୍ୟ । ଖଣିର ଜାତୀୟକରଣ ସଙ୍ଗେ ସଙ୍ଗେ ଖଣି କର୍ପୋରେସନ ଗଠନ ଅନ୍ୟ ଏକ ଉଚ୍ଚକୋଟୀର କୀର୍ତ୍ତି । ସରକାରୀ ସିଦ୍ଧାନ୍ତ ସହିତ ଜନସାଧାରଣଙ୍କୁ ଏକତ୍ରିତ କରିବା ତାଙ୍କର ଥିଲା ବିଶେଷ ଇଚ୍ଛା । ସେ ନିଜକୁ ମନ୍ତ୍ରୀ, ନିୟାମକ ବା ଶାସକ ବୋଲି ବିଚାର କରୁ ନ ଥିଲେ । ଜଣେ ମନ୍ତ୍ରୀ କେବଳ ଉଦ୍‌ଘାଟନ ବା ଉଦ୍‌ବୋଧନ ମାଧ୍ୟମରେ ଲୋକଙ୍କ ପାଖରେ ଗୁରୁତ୍ୱପୂର୍ଣ୍ଣ ଆସନର ଅଧିକାରୀ ବୋଲି ଜଣେଇଦେବା କଥାଟିକୁ ସେ ବିଶ୍ୱାସ କରିନାହାନ୍ତି । ଥରେ ଏ କଥାର ସୂଚନା ଦେଇ ବାଜିରାଉତ ଛାତ୍ରାବାସର ଅନ୍ୟ ଜଣେ ଯୋଗୀ ଓ ସହକର୍ମୀ ଶିକ୍ଷକ ଦିବାକର ପ୍ରଧାନ କହନ୍ତି, "୧୯୫୩-୫୪ ମସିହା କଥା । ଗାନ୍ଧିଜୟନ୍ତୀ ସମୟରେ ନବ ବାବୁ ନୟାଗଡ଼ରେ ବ୍ଲକର ଉଦ୍‌ଘାଟନ ଉତ୍ସବରେ ଯୋଗ ଦେବା ପାଇଁ ଯାଇଥିଲେ । ସମସ୍ତେ ଭାବିଥିଲେ ମୁଖ୍ୟମନ୍ତ୍ରୀ ଫୁଲମାଳ ପକାଇବା ପରେ, ଦୀପରେ ବନ୍ଦନା ହୋଇସାରିବା ପରେ ବୋଧହୁଏ ନାଲିଫିତା କାଟିବେ; କିନ୍ତୁ ଦେଖାଗଲା ଗାଡ଼ିରୁ ଓହ୍ଲାଇ ମୁଖ୍ୟମନ୍ତ୍ରୀ ଗୋଟିଏ ଦାଣ୍ଡୁଆ ପୋଖରୀ ନିକଟକୁ ଗଲେ । ଲୁଗା ଉଡ଼ାଭିଡ଼ି କରି ଲୋକଙ୍କ ସାଙ୍ଗରେ ଦୁଇଘଣ୍ଟାକାଳ ଦଳ ସଫା କଲେ । ଅନ୍ୟ ଅଫିସରମାନେ ଏକଥା ଦେଖି ଚକିତ ହେଲେ ।" ସେ ବିଶ୍ୱାସ କରୁଥିଲେ ଯେଉଁଭଳି ଭାବରେ ପରିଚାଳକମାନେ ଆଚରଣ କରନ୍ତି, ଲୋକେ ବା ଜନସାଧାରଣ ତାହାକୁ ଅନୁସରଣ କରନ୍ତି । ତେଣୁ ନବ ବାବୁ ଅତୁଳନୀୟ, ଅପୂର୍ବ ଓ ଅବିସ୍ମରଣୀୟ । ସେ ଯେତେବେଳେ ବିଧାନସଭାରେ Tenants Relief Bill ( ଟେନାଣ୍ଟସ ରିଲିଫ୍ ବିଲ୍ ) ଆଗତ କରିଥିଲେ, କଂଗ୍ରେସ ଦଳଭିତରୁ ତାଙ୍କ ବିରୁଦ୍ଧରେ ପ୍ରବଳ ପ୍ରତିରୋଧ କରାଯାଇଥିଲା । ଏଥିରେ ମର୍ମାହତ ହୋଇ ସେ ମୁଖ୍ୟମନ୍ତ୍ରୀ ପଦରୁ ଓହରିଯିବାକୁ ଇଚ୍ଛା ପ୍ରକାଶ କଲେ ।

ସବୁଠାରୁ କଠିନତମ ସମୟ ଓଡ଼ିଶାରେ ସୀମା ଆନ୍ଦୋଳନ, ରାଜ୍ୟ ପୁନର୍ଗଠନ କମିଶନର ରିପୋର୍ଟ ପ୍ରକାଶ ପାଇବା ପରେ ଭାରତର ରାଜନୈତିକ କ୍ଷେତ୍ରରେ ଏକ ନୂତନ ବିପଦ ଦେଖାଦେଲା । ସରାଇକେଲା, ଖରସୁଆଁ ଓ ସିଂହଭୂମ ସଦର ପ୍ରକୃତ ଓଡ଼ିଆ ଅଞ୍ଚଳ ହୋଇଥିଲେ ମଧ୍ୟ ସେସବୁକୁ ବିହାର ସହିତ ଯୋଡ଼ିଦିଆଗଲା । ପ୍ରଥମେ ପଣ୍ଡିତ ନେହରୁ ଏଥିରେ ବିସ୍ମୟ ପ୍ରକାଶ କଲେ । ଓଡ଼ିଶାର ଜନସାଧାରଣ ଏପରି କି କଂଗ୍ରେସଦଳର ଲୋକମାନେ ମଧ୍ୟ ଏ ସରକାରୀ ରିପୋର୍ଟ ଗ୍ରହଣଯୋଗ୍ୟ ନୁହେଁ ବୋଲି ପ୍ରତିବାଦ କଲେ । ମନ୍ତ୍ରୀମାନେ ଇସ୍ତଫା ଦେଇ ଶାସନଗତ ଅଚଳ ଅବସ୍ଥା ସୃଷ୍ଟି କଲେ । ଏକଥା ଉଲ୍ଲେଖ କରି ସୁରେନ୍ଦ୍ରନାଥ ଦ୍ୱିବେଦୀ ପ୍ରକାଶ କରିଛନ୍ତି, "ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀ ଓ ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ଇସ୍ତଫାପତ୍ର ଧରି ଦିଲ୍ଲୀ ଆସିଗଲେ । ସେମାନଙ୍କର ଏପରି ଗୁରୁତ୍ୱପୂର୍ଣ୍ଣ ଘୋଷଣା ପରେ ସାରା ରାଜ୍ୟରେ ଚହଲ ପଡ଼ିଗଲା । ଲୋକଙ୍କ ଭିତରେ ପ୍ରବଳ ଉତ୍ତେଜନା ଓ ଉତ୍ସାହ । ଲୋକଙ୍କ ଆଡ଼ୁ ଚାରିଆଡ଼େ ପ୍ରତିବାଦ, ହରତାଳ, ରେଳଗାଡ଼ି ଅଟକାଇବା ଇତ୍ୟାଦି ଚାଲିଲା । ମୁଖ୍ୟତଃ ଛାତ୍ରମାନେ ଏକ ଅଭୂତପୂର୍ବ ପ୍ରତିବାଦ ହରତାଳ ସଙ୍ଗଠିତ କଲେ । ଯାହା କଥାରେ କହନ୍ତି—ଓଡ଼ିଶାର ପୁରପଲ୍ଲୀ ସର୍ବତ୍ର ସତେ କି ଗଛପତ୍ର ବି ହଲିଲା ନାହିଁ । ଲୋକଙ୍କ ଭିତରେ ଥିବା ଜାତୀୟପ୍ରାଣ ଉଜ୍ଜୀବିତ ହେଲା ।" ଏହି ଆନ୍ଦୋଳନ ପ୍ରଥମେ ଭାରତ ସରକାରଙ୍କ ବିରୁଦ୍ଧରେ ଥିଲା । ହଠାତ୍ ମୋଡ଼ ବଦଳି ଓଡ଼ିଶା ସରକାର ମୁଖ୍ୟତଃ ନବ ଚୌଧୁରୀଙ୍କ ବିରୋଧୀ ହୋଇଗଲା । ତାଙ୍କର ସମସ୍ତ ପରିକଳ୍ପିତ କାର୍ଯ୍ୟକ୍ରମକୁ ଓଡ଼ିଶାର ଭବିଷ୍ୟତ୍ ନେତୃବର୍ଗଙ୍କ ହସ୍ତରେ ଅର୍ପଣ କରି ସେ ଓହରିଗଲେ । ପରେ ଶ୍ରୀ ମହତାବ ମୁଖ୍ୟମନ୍ତ୍ରୀ ହେଲେ; କିନ୍ତୁ ନବ ବାବୁଙ୍କର କଳ୍ପିତ ଶାସନବିକେନ୍ଦ୍ରୀକରଣ ବ୍ୟବସ୍ଥା ଆଉ କାର୍ଯ୍ୟକାରୀ ହେଲା ନାହିଁ । ଶ୍ରୀଯୁକ୍ତ ଚୌଧୁରୀଙ୍କର ଆକାଙ୍‌କ୍ଷା ଅପୂର୍ଣ୍ଣ ରହିଗଲା ।

ସ୍ଥିର ଗମ୍ଭୀର ସାଗର, ଉଚ୍ଛଳ ତରଙ୍ଗ ତା'ର ବାହ୍ୟ ପ୍ରକାଶ ମାତ୍ର । ଏ ପଦ-ପଦବୀର ଲାଳସା ଯାଉନାହିଁ । ସ୍ୱଦେଶ ଭାବନା, ସ୍ୱଜାତି ବିକାଶ ପାଇଁ ସେ ସତତ ଚିନ୍ତିତ; ତା ପାଇଁ ବହୁ ପଥ ପ୍ରଶସ୍ତ । ନବ ବାବୁ ମନ୍ତ୍ରୀପଦରୁ ଓହରି ଆସିବା ପରେ ବିନୋବା ଖୁବ୍ ଖୁସି ହୋଇଥିଲେ, କାରଣ ୧୯୫୫ ମସିହାରେ ବିନୋବାଜୀ ଓଡ଼ିଶାରେ ଭୂଦାନଯାତ୍ରା କରିଥିଲେ । ବିନୋବାଜୀଙ୍କ ପଦଯାତ୍ରା ହେତୁ ଭୂଦାନ ଓ ଗ୍ରାମଦାନ ଆନ୍ଦୋଳନ ଓଡ଼ିଶାରେ କୁହୁକ ପରି ଫଳ ଦେଇଥିଲା । ଏହି କୃତିତ୍ୱର ପ୍ରଧାନ ଅଂଶୀଦାର ଥିଲେ ନବ ବାବୁ । ଯେତେବେଳେ ସୁଯୋଗ ଆସିଲା, ସ୍ୱଇଚ୍ଛାରେ ଅବଲୀଳାକ୍ରମେ ମନ୍ତ୍ରୀପଦ ଛାଡ଼ିଦେଲେ । ତାଙ୍କର ବୈପ୍ଳବିକ ଚରିତ୍ର ହେତୁ ଏହା ଥିଲା ତାଙ୍କ ପକ୍ଷରେ ସାଧାରଣ ଓ ସ୍ୱାଭାବିକ । ସର୍ବୋଦୟର ପ୍ରବକ୍ତା ଭାବରେ ସେ ଦେଶରେ ବୁଲି ବୁଲି ଯେଉଁ ଭାଷା ଓ ଭାବ ମାଧ୍ୟମରେ ଲୋକଙ୍କୁ ପ୍ରଭାବିତ କରିଥିଲେ, ତାହା ଅତୁଳନୀୟ । ଗଣତାନ୍ତ୍ରିକ ରାଷ୍ଟ୍ରରେ

ସମସ୍ତଙ୍କର କଥା କହିବାର ଅଧିକାର ଅଛି । Right (ରାଇଟ୍) ଏବଂ Duty (ଡ଼ିଉଟି) ଏ ସାମ୍ବିଧାନିକ ଶବ୍ଦ; କିନ୍ତୁ 'କଥା ନୁହେଁ କାମ' ଏହିପରି ବାର୍ତ୍ତା ବହନ କରି ଯେଉଁମାନେ ଗଢ଼ କରିଆସିଛନ୍ତି, ନବ ବାବୁ ସେମାନଙ୍କ ମଧ୍ୟରେ ଜଣେ । ନବ ବାବୁଙ୍କ ଭିତରେ କୌଣସି ପ୍ରକାର ଗୋଷ୍ଠୀଗତ ବା ସାଂପ୍ରଦାୟିକ ଚିନ୍ତା ନ ଥିଲା । ସେ ଭିତରେ ବାହାରେ ଅଭିନବ । ସାନଝିଅ କୃଷ୍ଣା ୧୯୬୮ରେ ବିବାହ କଲେ ବିଭୁତିଭୂଷଣଙ୍କୁ । ବିଭୂତି ବାବୁଙ୍କ ଭାଷାରେ, "ବାପିଙ୍କ ପରି Pragmatic ମଣିଷ ମୁଁ ଦେଖିନି । ଯେତେବେଳେ ଜାତିସଂଘର ନିଯୁକ୍ତିକ୍ରମେ ଇଣ୍ଡୋନେସିଆ, ବାଲି, ଜାଭା, ସୁମାତ୍ରା ଅଞ୍ଚଳରେ ମଣିଷଖିଆ ଆଦିବାସୀଙ୍କ ଭିତରେ କାମ କରିବା ପାଇଁ ମୁଁ ବାହାରିଲି, ସେତେବେଳେ ସମଗ୍ର ପରିବାର ଆତ୍ମୀୟସ୍ୱଜନ ସମସ୍ତେ ବାଧା ଦେଇଥିଲେ । 'ବାପି' ଜଣେ ଯାହାଙ୍କ ପ୍ରେରଣା ଯୋଗୁଁ ମୁଁ ସେଠାକୁ ଯାଇ ଖୁବ୍ ଆନନ୍ଦରେ କାମ କରି ଯଶସ୍ୱୀ ହୋଇ ଫେରି-ଆସିଲି । ବାପି ବାଧା ଦେଇଥିଲେ ମୁଁ ହୁଏତ ଯାଇପାରି ନ ଥାନ୍ତି । ତାଙ୍କ ଭିତରେ କିଛି ନ ଥିଲା, ଥିଲା ଏ ପୃଥିବୀର ପ୍ରତିଟି ମଣିଷ ପାଇଁ ପ୍ରାଣଭରା ପ୍ରୀତି ।" ଆଉ ଗୋଟିଏ କଥା ବିଭୂତି ବାବୁ କହିଲାବେଳେ ତାଙ୍କ ଆଖିରୁ ଦୁଇଟୋପା ଲୁହ ଗଡ଼ିଗଲା । "ସେଦିନ କାର୍ତ୍ତିକ ପୂର୍ଣ୍ଣିମୀ । ମୁଁ କହିଲି କୁକୁଡ଼ାମାଂସ ଆଜି ଖାଇବା କଥା । କେହି କିଛି କହିଲେ ନାହିଁ । ମୁଁ ବି କଥାଟିକୁ ଭୁଲି ଯାଇଥିଲି । ସନ୍ଧ୍ୟା ବେଳେ ଦେଖିଲି ବାପି ନିଜେ ମାଂସ ରନ୍ଧେଇ ଟିଫିନ୍ କ୍ୟାରିଅରରେ ମୋ ବସାକୁ ପଠାଇଦେଲେ । ଏକଥା ଖୁବ୍ ବ୍ୟକ୍ତିଗତ ଓ ଛୋଟ; କିନ୍ତୁ ବାପିଙ୍କ ଭିତରେ ଏ ଯେଉଁ ମମତାର ମହାମିଳନ ଘଟିଥିଲା, ତାହା ଆଉ କେଉଁଠି ଦେଖିନି ।" ବାସ୍ତବିକ ଏହା କେବଳ ତାଙ୍କରି ଦ୍ୱାରା ସମ୍ଭବ, ଯିଏ ମଣିଷଖିଆ ମଣିଷର ସେବା କରିବାକୁ ଅତି ଆପଣାର ମଣିଷକୁ ପଠାଇପାରେ, ଯିଏ ସାମାନ୍ୟ, ଋତୁ, ତିଥି, ବାର, ନକ୍ଷତ୍ର, କାଳ, ମୁହୂର୍ତ୍ତର ସୀମା ଭିତରେ ରହିବା ମଣିଷ ନୁହେଁ ।

୧୯୬୪ ମସିହାରେ ରାଉରକେଲାରେ ଯେଉଁ ଲୋମହର୍ଷଣକାରୀ ସାଂପ୍ରଦାୟିକ ହତ୍ୟାକାଣ୍ଡ ଘଟିଗଲା, ତାହା ତାଙ୍କରି ଭଳି ବ୍ୟକ୍ତି ବ୍ୟତୀତ ଆଉ କିଏ ସମାଧାନ କରିପାରନ୍ତା ନାହିଁ । ତତ୍କାଳୀନ ଶାସନର ଶିଥିଳତା ହେତୁ ଅନେକ ନିରୀହ ଧନଜୀବନ ନଷ୍ଟ ହୋଇଗଲା । ନବ ବାବୁ ନବଜୀବନ ମଣ୍ଡଳର କର୍ମୀ ଓ ନୁମା (ମାଳତୀ ଦେବୀ)ଙ୍କୁ ନେଇ ଯେପରି ଦଙ୍ଗାଗ୍ରସ୍ତ ଅଞ୍ଚଳରେ କାର୍ଯ୍ୟ କରିଥିଲେ, ତାହା ଆଜି ମଧ୍ୟ ରାଉରକେଲାର ବହୁ ଅନୁଭବୀ ଗୋଟି ଗୋଟି ମନେରଖିଛନ୍ତି । ରାଉରକେଲାର ଅନ୍ୟତମ ଜନସେବକ ଧନଞ୍ଜୟ ମହାନ୍ତି ନବ ବାବୁଙ୍କ ଜାମାତା ଶରତ୍‌ଚନ୍ଦ୍ର ମହାରଣା ଓ ତତ୍କାଳୀନ ଆଞ୍ଚଳିକ ଭୂଦାନକର୍ମୀ କ୍ଷେତ୍ରବାସୀ ପତି ଏ ସବୁର ବିବରଣୀ ଦିଅନ୍ତି । ସେ ବିବରଣୀ ଲିପିବଦ୍ଧ କଲେ ସ୍ୱତନ୍ତ୍ର ସ୍ମରଣୀୟ ଅଧ୍ୟାୟଟିଏ ହେବ ।

ଅନୁନ୍ନତ ମଣିଷକୁ ଉଠାଇ ନିଜର କରି ଆପଣାର ପରି ଠିଆ କରିବା ଏହି ଇଚ୍ଛା ଅନେକେ କରନ୍ତି; କିନ୍ତୁ 'ତାଙ୍କ' ଭଳି ଏତେ ଅକପଟ ଆଦର କାହାରି ଅଛି କି ନା ପରୀକ୍ଷା ହେବା ଆବଶ୍ୟକ । କିନ୍ତୁ ନବ ବାବୁ ସେ ପରୀକ୍ଷାର ଅନେକ ଊର୍ଦ୍ଧ୍ୱରେ । ଜନ୍ମରୁ ମୃତ୍ୟୁ ପର୍ଯ୍ୟନ୍ତ ସର୍ବଦା ଗୋଟିଏ ବ୍ରତ ସେ ପାଳନ କରିଯାଇଅଛନ୍ତି । ତାଙ୍କର ଉପଯୁକ୍ତ ସହଧର୍ମିଣୀ ଓ ସହକର୍ମିଣୀ ମାଳତୀ ଦେବୀ ସେଥିପାଇଁ ସେ ପୁଣି ଥରେ ମୁଖ୍ୟମନ୍ତ୍ରୀ ହେବାକୁ ଯିବାବେଳେ ଦ୍ୱିଧା ପ୍ରକାଶ କରିଥିଲେ । ଏ ଯୁଗରେ ଏପରି ଦମ୍ପତି ଜନ୍ମଗ୍ରହଣ କରିବା ଏଯୁଗ ପାଇଁ, ଏ ଶତାବ୍ଦୀ ପାଇଁ ସତ୍ୟ ଓ ଚେତନାର ଆଶୀର୍ବାଦ । ଯେତେବେଳେ ନେତାମାନେ ପଦାରେ ମିଠା କହି ଭିତରେ ଅମିଠ ବଳରେ ହିଁ ବଳୀୟାର ହୁଅନ୍ତି, ସେତିକିବେଳେ ନବ ବାବୁ ନକ୍‌ସାଲପନ୍ଥୀମାନଙ୍କୁ ମଧ୍ୟ କେତେକ କ୍ଷେତ୍ରରେ ଉଚିତ ମନେକଲେ ସମର୍ଥନ କରିବାକୁ ପଛେଇ ଯାଇନାହାନ୍ତି । ଜମିଦାରଘର ଅଳିଅଳ ପୁଅ, ପାଟପଟାମ୍ବରର ପରିବେଶରୁ ଆସି କଚ୍ଛା, ଖଦଡ଼ କନା ଖଣ୍ଡକରେ ଦିନ କାଟିବାକୁ ଦୁଃଖ ବୋଲି ଭାବିନାହାନ୍ତି । ଅରଣ୍ୟର ଆଦିବାସୀ, ଗାଁର ମୂଲିଆ, ସର୍ବୋଚ୍ଚପଦାଧିକାରୀ ଭବନରେ ରାଜ୍ୟପାଳୀର ଅଟ୍ଟାଳିକା ସବୁ ଥିଲା ତାଙ୍କ ପାଖରେ ସାମୟିକ, ଲକ୍ଷ୍ୟ ସ୍ଥିର ଓ ଅବିଚଳିତ । ଦୀକ୍ଷା ସେବା; ସେଥିପାଇଁ ସମୟ, ସ୍ଥାନ ଓ ମଣିଷ ସମସ୍ତେ ସମାନ ।

ଯେତେବେଳେ ସମଗ୍ର ଭାରତରେ ଆଭ୍ୟନ୍ତରୀଣ ଅସ୍ଥିରତା ସ୍ଥିର କରିବା ଦ୍ୱାହି ଦେଇ ଜରୁରୀକାଳୀନ ଅବସ୍ଥା ଘୋଷଣା କରାଗଲା, ବୟୋବୃଦ୍ଧ ନବକୃଷ୍ଣ ବାରିପଦାରେ ସାର୍ଦ୍ଧଦିନ ବନ୍ଦୀ ଭାବରେ ରହିଲେ, ସେତେବେଳେ ରକ୍ତଚାପଜନିତ ପକ୍ଷାଘାତ ହେତୁ ଶଯ୍ୟାଶାୟୀ ହେଲେ । ତାଙ୍କ ଅସୁସ୍ଥତା ସମ୍ବାଦ ପାଇ ସମସ୍ତେ ଆକୁଳ ହୋଇପଡ଼ିଲେ । ତାଙ୍କର ପ୍ରିୟ

ଖାଇବା ଜିନିଷ ଆସୁର ଟିକେ ବି ତାଙ୍କ ପାଖରେ ପହଞ୍ଚିପାରି ନ ଥିଲା । ଯେତେବେଳେ ସାନଝିଅ କୃଷ୍ଣା (ଲିନୁ) ଓ ଝିଆରୀ ଚନ୍ଦ୍ର (ଅନ୍ନପୂର୍ଣ୍ଣା ମହାରଣା) ଯାଇ ଦେଖାକଲେ, 'ତାଙ୍କର' ପ୍ରଶ୍ନ ଥିଲା ଲୋକେ କିପରି ଅଛନ୍ତି ? ଶୋକବିହ୍ୱଳା କନ୍ୟା କ୍ଷୋଭ ପ୍ରକାଶ କରି କହିଥିଲେ "ବାପି ! ସେ ଲୋକଙ୍କ କଥା କାହିଁକି ପଚାରୁଛ ?" ସେଥିରେ 'ସେ' ବିରକ୍ତ ହୋଇଉଠି କହିଥିଲେ "ଆଉ କାହା କଥା ପଚାରିବି ? ଲୋକେ ତ ମୋ ପ୍ରାଣ ।" ଯେଉଁ ଝିଅ ଲିନୁକୁ ପିଲାଦିନୁ ପ୍ରାଣଠାରୁ ଅଧିକ ଭଲ ପାଉଥିଲେ, ସେ ଝିଅ ସେଦିନ ଟିକେ କେମିତି ଥମିଗଲେ । ସେ ହେଉଛନ୍ତି ନବ ବାବୁ, ଯାହାର ଆତ୍ମୀୟ, ଅନ୍ତରଙ୍ଗ, ଆପଣାର କହିଲେ ସେହି 'ଲୋକେ' ଲୋକଜୀବନର ଜାଗ୍ରତ ପ୍ରହରୀ, ଲୋକଚେତନାର ଯଥାର୍ଥ ଜାଗୃତ କର୍ତ୍ତା । ତାଙ୍କ ପରି ଆଉ ଜଣେ କେହି ଦିଶୁନାହାନ୍ତି । ସେ ମଣିଷ ଆସିଥିଲ ସବୁ ମଣିଷର ସେବା ପାଇଁ । ତାଙ୍କ ପାଇଁ ସରକାରୀ କଳ ଅଡୁଆ ହୋଇଗଲା । ସେ କଥା ସ୍ମରଣ କରି ସେଦିନ ବର୍ଷୀୟାନ୍ ରାଜନୀତିଜ୍ଞ ସୁରେନ୍ଦ୍ରନାଥ ଦ୍ୱିବେଦୀ କହିଥିଲେ "ଭୟଙ୍କର ଅସୁସ୍ଥ ଅବସ୍ଥାରେ ମଧ୍ୟ ସେ ଉଭୟ (ବାପି, ନୁମା,) ସରକାରୀ ସାହାଯ୍ୟ ଲୋଡ଼ି ନ ଥିଲେ । ବରଂ ଯେତେବେଳେ ପ୍ରସ୍ତାବ ଆସିଥିଲା ନବ ବାବୁ ଯାଇ ସ୍ୱାଧୀନତା ସଂଗ୍ରାମୀ ଭାବରେ ଭତ୍ତା ଗ୍ରହଣ କରନ୍ତୁ, ସେତେବେଳେ ନୁମା' ଖୁବ୍ ଉତ୍ତେଜିତ ହୋଇ କହିଲେ "ଯଦି 'ସେ' ଭତ୍ତା ପାଇଁ ଯିବ, ମତେ ମାରିଦେଇ ଯାଉ ।" ସମସାମୟିକ ସାମାଜିକ ସ୍ଥିତି ମଣିଷକୁ ବିଚଳିତ କରେ; କିନ୍ତୁ ଯେଉଁ ମଣିଷ ଏ ସୀମାରେଖା ଲଂଘନ କରିଯାଇଛି, ତା'ପାଖରେ ସବୁ ହାରିମାନିଯାଆନ୍ତି । ସୁରେନ୍ଦ୍ର ବାବୁ ଇଚ୍ଛା ପ୍ରକାଶ କରିଥିଲେ ନବ ବାବୁଙ୍କୁ ନେଇ କଏମ୍ବାଟୁରରେ ଏକ ନିର୍ଦ୍ଦିଷ୍ଟ ପ୍ରାକୃତିକ ଚିକିତ୍ସା କେନ୍ଦ୍ରରେ ତୈଳଚିକିତ୍ସା କରାଇ ତାଙ୍କର ପକ୍ଷାଘାତଜନିତ ସ୍ନାୟବିକ ଦୁର୍ବଳତା ଉପଶମ କରାଇବେ । ଶରୀର ଏକଥା ଶୁଣୁଥିଲେ ମଧ୍ୟ ମନ ଓ ଚେତନା ତାହା ଗ୍ରହଣ କରିପାରିଲେ ନାହିଁ । ସେଠି ବାପି ପ୍ରଶ୍ନ କରିଥିଲେ "ତୁ ମୋପାଇଁ ସରକାରୀ ଟଙ୍କା ଆଣିବୁ କି ରେ ?"

ସରକାରୀ ସାହାଯ୍ୟ ତାଙ୍କୁ ମିଳିବାରେ କିଛି ବାଧା ନ ଥିଲା; ମାତ୍ର ସେଥିପ୍ରତି ବୀତସ୍ପୃହ, ସଚେତନ । ପ୍ରାୟ ଦୁଇମାସ କାଳ ଭୁବନେଶ୍ୱରରେ ସୁରେନ୍ଦ୍ର ବାବୁଙ୍କ ବାସଭବନରେ ରହି ଜଣେ ପ୍ରାକୃତିକ ଚିକିତ୍ସାବିତ୍‌ଙ୍କ ଚିକିତ୍ସାକ୍ରମେ କ୍ରମଶଃ ସୁସ୍ଥ ହୋଇ ଚାଲିବୁଲି ପାରୁଥିଲେ । କାଳ ବଡ଼ ଅବିଶ୍ୱାସୀ । ଜଣକ ପରେ ଜଣେ ଦୁଇଟି ନାତି ଆକସ୍ମିକ ଭାବେ ଗୋଟିଏ ସ୍ୱଦେଶରେ ଅନ୍ୟଟି ବିଦେଶରେ ଅକାଳରେ ଖସିପଡ଼ିଲେ । ଏଇଠି ମନେପଡ଼େ ଫକୀରମୋହନ ସେନାପତିଙ୍କର ଏହିପରି ଏକ କରୁଣ ଅଭିବ୍ୟକ୍ତି । ବ୍ୟାସକବି ଫକୀରମୋହନଙ୍କର ନାତି ଅକାଳରେ ମରିଯିବା ପରେ ସେ ଖୁବ୍ ଭାଙ୍ଗି ପଡ଼ିଥିଲେ । ବାରମ୍ବାର ସମସ୍ତଙ୍କୁ କହୁଥିଲେ "ଦେଖ କଳିକାଳ ରୀତି, ଅଜା ଥାଉ ଥାଉ ମରୁଛି ନାତି" । ଠିକ୍ ସେହିପରି ଏକରୁ ଅଧିକ ଅହେତୁକ ଚଡ଼କ ନବ ବାବୁଙ୍କୁ ସ୍ୱାଭାବିକ ଭାବରେ ଭାଙ୍ଗି ଦେଇଥିବ । ଯେଉଁଦିନ ପୁତୁରା ବୁଲୁ (ମନମୋହନ ଚୌଧୁରୀ) ନିଜ ପୁଅ ଚାଲିଯିବା ଖବର ପାଇ ସୁଦୂର ଆମେରିକାରେ ଥିବା ଅନାଥିନୀ ବୋହୂ ପାଖକୁ ସସ୍ତ୍ରୀକ ଯାଉଥିଲେ, ସେ ଦିନ ବାଜିରାଉତ ଛାତ୍ରାବାସରେ ଶେଷଥର ପାଇଁ (ସେ ଜାଣି ନ ଥିଲେ) ପ୍ରିୟ ଦାଦାଙ୍କୁ ଦେଖା କରିବାକୁ ଗଲେ । ସେ ସାକ୍ଷାତ ଥିଲା ଅତୀବ ମର୍ମସ୍ପର୍ଶୀ । ଦୁଇଟି ଓଠ ଥରୁଥିଲେ, ଚାରିଆଖି ଲୁହଭରା, ନୀରବ, ନିଶ୍ଚଳ, ନିଦାରୁଣ ସେ ବିଦାୟ । କ୍ରମଶଃ ତାଙ୍କର ସ୍ୱାସ୍ଥ୍ୟ ଭାଙ୍ଗି ପଡ଼ିଲା । ସାନ ଝିଅଙ୍କ ସାନଝିଅ ନାତୁଣୀ ଝୁନୁ ବାହାଘର ଜୁନ୍ ୧୬ ତାରିଖରେ ହେଲା । ତା'ପରେ ୧୭, ୧୮ ରୁ ନବ ବାବୁ କ୍ରମେ କ୍ରମେ ଶକ୍ତି ହରାଇ ବସିଲେ । ସମସ୍ତଙ୍କର ସମସ୍ତ ଅଭିଳାଷ, ତାଙ୍କ ନିଜର ଯାହା କିଛି ଅପୂର୍ଣ୍ଣ-ପୂର୍ଣ୍ଣ ସବୁ ସମ୍ପୂର୍ଣ୍ଣ ହୋଇଚାଲି । ୧୯୮୪ ମସିହା ଜୁନ୍ ମାସ ୨୩ ତାରିଖ ରାତିର ତୃତୀୟ ପ୍ରହରରେ । ସେ ଶେଷ ଅନେକ ଅବଶୋଷର କାହାଣୀ, ସେ ଶେଷ ଅଶେଷ ଅବଶୋଷର ସ୍ମାରକୀ ।

ଆଜି ମନେପଡ଼େ ସେ ଦିନ ଶୋକାକୁଳା କନ୍ୟା କୃଷ୍ଣା କହୁଥିଲେ "ଆମ ବାପିର ଭଲ ପାଇବା ମାପି ହେବ ନାହିଁ । ଯାହାକୁ ପଚାରିବେ ସେ କହିବ ତାକୁ 'ସେ' ସବୁଠୁ ବେଶି ଭଲ ପାଏ ।" ବ୍ୟକ୍ତି ମରଣଶୀଳ ଶରୀର ନେଇ ଆସେ । ସେ ଶରୀର ମରିଯିବାକୁ ବାଧ୍ୟ । କେଉଁ ସମୟରେ କାହାଦ୍ୱାରା କେଉଁ କାରଣରୁ ସେ ପ୍ରଶ୍ନ ଓ ତା'ର ଉତ୍ତର ସବୁ ଅଜ୍ଞାତ, ଅହେତୁକ; କିନ୍ତୁ ମରଣଶୀଳ ଶରୀର ଅମରଗାଥା ଗାଇପାରେ, ଅମୃତମୟ ପ୍ରୀତି ବାଣ୍ଟିଦେଇପାରେ ମହାପ୍ରସାଦ ପରି । ମୁକ୍ତିର କୈବଲ୍ୟ, ଶକ୍ତିର ବୈଭବ, ଜ୍ୟୋତିର ଔଜ୍ଜ୍ୱଲ୍ୟ ସବୁ ଏହି ପ୍ରୀତିର ଫଲ୍ଗୁଅ ଭିତରେ କାଳ କାଳ ପାଇଁ ସ୍ମୃତିସୌଧ ଭିତରେ ସାଇତା ହୋଇରହେ । ଅକ୍ରୋଧ, ବୈରାଗ୍ୟ, ଦୟା, କ୍ଷମା, ସର୍ବଜନପ୍ରିୟତ୍ୱ, ନିର୍ଲୋଭ ହୃଦ, ଦୁର୍ଲଭ ଗୁଣ, ଜ୍ଞାନ ଏ ସମସ୍ତର ସମ୍ମିଳିତ ସ୍ୱରୂପ । ଜ୍ଞାନୀ ଏମାନଙ୍କର ପ୍ରତିନିଧିତ୍ୱ କରନ୍ତି । ନବ ବାବୁଙ୍କ ପାଇଁ କେଉଁ ବିଶେଷଣ ଦେଇ ସମ୍ମାନ ପ୍ରଦର୍ଶନ କରାଯିବ, ତାହା

ଭାବି ହୁଏନା । ଭାରତର ସର୍ବୋଚ୍ଚ ରାଷ୍ଟ୍ରନାୟକ ରାଷ୍ଟ୍ରପତି ନୀଲମ ସଞ୍ଜୀବ ରେଡ୍ଡି ସମସ୍ତଙ୍କ ଗହଣରେ ତାଙ୍କୁ ଶଂଖୋଳିବାକୁ ଯାଇଥିଲେ । ବାହାରେ ସମସ୍ତ ସରକାରୀ ବିଧିବିଧାନ କରାଯାଇଥିଲା; କିନ୍ତୁ ଆଶ୍ରମର ଆସ୍ଥାନ ଯଥାରୀତି ଅପରିବର୍ତ୍ତିତ ରହିଥିଲା । ସାକ୍ଷାତ ଓ ପାରିବାରିକ ଚିତ୍ର ଉତ୍ତୋଳନ ପରେ ସଞ୍ଜୀବ ରେଡ୍ଡି କହିଥିଲେ, ସବୁ ଆକାଂକ୍ଷା ପୂର୍ଣ୍ଣ ହୋଇଗଲା ।

ସେଦିନ ଶୋକସଭାରେ ସୁରେନ୍ଦ୍ର ବାବୁ (ସୁରେନ୍ଦ୍ରନାଥ ଦ୍ୱିବେଦୀ) କହୁଥିଲେ, ତାଙ୍କର ଶବଶୋଭାଯାତ୍ରା ସମୟରେ ଜଣେ ଗାଉଁଲି ସ୍ତ୍ରୀଲୋକ କାନ୍ଦି କାନ୍ଦି ବୁଝିପାରୁ ନ ଥିବା ତା ପୁଅକୁ ବୁଝେଇ ଦେଉଥିଲା, "ଯିଏ ଆଜି ଚାଲିଗଲା, ଯାହାର କେହି ନ ଥିଲେ, ତା'ର 'ସିଏ' ଥିଲା ସବୁ ।" ଭାରତର ରାଷ୍ଟ୍ରପତିଙ୍କଠାରୁ ଆରମ୍ଭ କରି ଅବହେଳିତା ପଲ୍ଲୀ-ଲଳନା ପର୍ଯ୍ୟନ୍ତ ସମସ୍ତଙ୍କ ଅନ୍ତରରେ ଅନ୍ତରଙ୍ଗ ମଣିଷ ହୋଇ ରହିବା ଯୋଗଜନ୍ମା ଯୁଗପୁରୁଷଙ୍କ ଦ୍ୱାରା ସମ୍ଭବ । ଯେଉଁ ମଣିଷ ଦିନ, ମାସ, ବର୍ଷର ମାପକାଠିକୁ ଭାଙ୍ଗି ଦେଇପାରେ, ସେ ମଣିଷ ସହଜରେ ମିଳେନା । ମିଳିଲେ ବି ଦୀପ ଜଳିବା ପାଇଁ ସନ୍ଦୀପିକା ପରି ସହଧର୍ମିଣୀ ମିଳିବା ଅନ୍ୟ ଏକ ସୌଭାଗ୍ୟ । ଶାନ୍ତିନିକେତନର ସାଧନାପୀଠରୁ ସାଥୀ ହୋଇଥିବା ମାଳତୀ ଯଥାର୍ଥରେ "ଲୋକେଶ୍ୱରୀ" । ସେ ଅବଶେଷ ଓ ଅବଶୋଷର ସମାଧାନରେ ଆଜି ମଧ୍ୟ ଅଗ୍ରଗାମିନୀ । ଶରୀର ଶେଷ ହେଲେ ମଧ୍ୟ ସାଧନା ସରିଯାଏନା । ସାଧନା ଓ ଆରାଧନାର ପୀଠ ରହିଯାଇଛି । ଏଠାକୁ ଅନେକ ଆସିଛନ୍ତି, ଆସୁଛନ୍ତି, ଆସିବେ । ଅନେକ ଯାଇଥିଲେ, ଯାଉଛନ୍ତି, ଯିବେ । ଏହି ଯିବା ଆସିବା ବାଟରେ ଅମ୍ଳାନ, ଅକ୍ଷତ, ଅବିନାଶୀ ଅକମ୍ପ ପ୍ରଦୀପ ପରି ସେ ଆସିବା ଯିବାବେଳେ ଆଲୋକ ଦେଖାଇବ, କାରଣ ଆଶ୍ୱିନ ଆକାଶର ଅକଳଙ୍କ କଳାନିଧି ପରି ସେ ସମସ୍ତ ଆକାଶରେ ସବୁଦିନେ ସେମିତି ରହିଯିବ । 'ସେ' ମଣିଷ ନୁହେଁ, ମଣିଷର ଆପଣାର ମଣିଷ । ଦେବତା ନୁହେଁ, ମଣିଷର ଦେବତା । 'ସେ' ଏକ ଶାଶ୍ୱତ ସ୍ମାରକୀ ।

---

# କୋଟିକେ ଗୋଟିଏ

**ମୋହନ ଦାସ**

ନବ ବାବୁ ଚାଲିଗଲେ । କଳଷଠା ଷାଠିଏରୁ କେତେ ବର୍ଷ ପାର ହୋଇଥିଲେ । ବାର୍ଦ୍ଧକ୍ୟଜନିତ ଦୁର୍ବଳତାରେ ସାମର୍ଥ୍ୟ ହରାଇଥିଲେ । ଜୀବନରେ କେଉଁ କାମ ଊଣା ବା ବାକି କରିଗଲେ କି ? ସ୍ୱାଧୀନତା ସଂଗ୍ରାମରେ ମହାରଥୀ ଥିଲେ ଓ ସ୍ତ୍ରୀ, ଭାଇ, କୁଟୁମ୍ବ ସର୍ବଙ୍କୁ ସଂଗ୍ରାମରେ ଝାସ ଦବାକୁ ପ୍ରେରଣା ଦେଇଥିଲେ । ସୁବକ୍ତା ସୁଲେଖକ ଭାବରେ ନାମ ଥିଲା । ତ୍ୟାଗପୂତ ଜୀବନ ଶେଷଯାଏ କଟାଇଲେ । ଶାସନଗାଦିର ସର୍ବୋଚ୍ଚ ସ୍ଥାନ ମଧ୍ୟ ଅଧିକାର କରିଥିଲେ । ଗାନ୍ଧୀବାଦ, ମାର୍କସ୍‌ବାଦ, ନକ୍ସାଲଇଟ୍ ଓ ସର୍ବୋଦୟ ସବୁ ମତବାଦର ଉପାସକ ଥିଲେ । ଜନ୍ମ ହେଲେ ମରଣ ଅବଶ୍ୟମ୍ଭାବୀ, ତଥାପି ତାଙ୍କ ମୃତ୍ୟୁରେ ମନ ମାନୁନାହିଁ କାହିଁକି ?

ସ୍ୱାଧୀନତା ସମୟର ତ୍ୟାଗ, ନିଷ୍ଠା, ସାଧୁତା ଓ ସେବାପରାୟଣତା ସ୍ୱାଧୀନତାପ୍ରାପ୍ତିର ୩୬ ବର୍ଷ ପରେ ଆଉ ନାହିଁ—ସ୍ୱପ୍ନ ହେଲାଣି । ଶାସନ କ୍ଷେତ୍ରରେ କଳ୍ପନାତୀତ ଦୁର୍ନୀତି, ଅଗଣତାନ୍ତ୍ରିକ ବ୍ୟବସ୍ଥା, ଛଳନାପୂର୍ଣ୍ଣ କଥା ଓ କାର୍ଯ୍ୟ ଦେଶକୁ ଧ୍ୱଂସମୁହଁକୁ ଟାଣିନେଉଛି । ରାଜନୀତି କ୍ଷେତ୍ରରେ ବେଶ୍ୟାବୃତ୍ତି ଚାଲିଛି । ଚାରିଆଡ଼େ ଅନ୍ଧାର ଘୋଟିଯାଉଛି । ଆଲୋକ, ଆଲୋକ, ଆଲୋକ ସମସ୍ତେ ବ୍ୟାକୁଳ ଭାବରେ ଡାକ ଛାଡ଼ିଲାବେଳେ ଅନୁଗୁଳ ବାଜିରାଉତ ଆଶ୍ରମକୁ ଦୃଷ୍ଟି ଫେରିଯାଉଛି । ନବ ବାବୁଙ୍କୁ ସ୍ମରଣ କରି ମନରେ ଦମ୍ଭ ଓ ସାନ୍ତ୍ୱନା ଆସୁଛି । ସେହି ଦମ୍ଭ ଓ ସାନ୍ତ୍ୱନାର ଦୀପ ଏବେ ଲିଭିଗଲା । ସେଇଥିପାଇଁ ଘୋର ଦୁଃଖ ।

୧୯୩୬ ମସିହାରେ ନବ ବାବୁଙ୍କ ନେତୃତ୍ୱରେ କୃଷକ ଆନ୍ଦୋଳନ ଓଡ଼ିଶାରେ ଆରମ୍ଭ ହୁଏ । କୃଷିପ୍ରଧାନ ଦେଶ ଭାରତରେ ଚାଷୀ ମୂଲିଆ ନ ଉଠିଲେ ନ ଜାଗିଲେ ବ୍ରିଟିଶ ଶାସନ ଦୋହଲିବ ନାହିଁ; ତେଣୁ କୃଷକ ଆନ୍ଦୋଳନ ଜରିଆରେ ଚାଷୀ ମୂଲିଆଙ୍କୁ ସଙ୍ଗଠିତ କରି ଶକ୍ତିଶାଳୀ ଭାବରେ ଗଢ଼ିତୋଳିବା ଲୋଡ଼ାଥିଲା ।

ଜମିଦାରି ମକଦ୍ଦମୀ ଅଧୀନରେ ଚାଷୀର ସ୍ୱତ୍ୱାଧିକାର ପ୍ରାୟ ନ ଥିଲା । ଗଞ୍ଜାମ, କୋରାପୁଟ ଜିଲ୍ଲାରେ ଚିରସ୍ଥାୟୀ ବନ୍ଦୋବସ୍ତ ଯୋଗୁଁ ରାଜା ଓ ଜମିଦାରମାନେ ଜମିର ସର୍ବମୟ କର୍ତ୍ତା ଥିଲେ । ସମ୍ବଲପୁର ଅଞ୍ଚଳରେ ଗୌନ୍ତିଆ ପ୍ରଥାରେ ଚାଷୀ ଗୌନ୍ତିଆର ମର୍ଜି ଉପରେ ଚାଲୁଥିଲା । ଖୋର୍ଦ୍ଧାରେ ସରବରାକାର ପ୍ରଥା । ପୁରୀ, କଟକ, ବାଲେଶ୍ୱରରେ ଜମିଦାର, ମକଦ୍ଦମମାନେ ପ୍ରଜାକୁଳକୁ ଅଶେଷ ନିର୍ଯ୍ୟାତନା ଦେଉଥିଲେ । ବେଠି, ଭେଟି, ଓଲୁକର, ଠେଙ୍ଗାପାଳି ଓ ନେଶର ଦେଇ ଦେଇ ଚାଷୀ ଦବି ରହିଥିଲା । ଚିରିବୋନ୍ ବୃକ୍ଷରେ ମଧ୍ୟ ଚାଷୀର ଟିକେ ମାତ୍ରରେ ଅଧିକାର ନ ଥିଲା । ବିକ୍ରୀ ଜମି ଦାମର ଚାରିଭାଗରୁ ଭାଗେ ଜମିଦାର ରେଷମ ଆକାରରେ ନେଇ ବିକ୍ରୀକୁ ମଞ୍ଜୁର ଦେଉଥିଲେ । ଜମିଦାରଙ୍କ କଚେରିରେ ସବୁ ମାଲମକଦ୍ଦମା ନ୍ୟାୟ ବିଚାର ନାମରେ ଚାଷୀକୁ ଶୋଷଣ କରାଯାଉଥିଲା । ଅମାନିଆ ପ୍ରଜାକୁ ଧୋବା, ଭଣ୍ଡାରି, ଦଅଁ ଦେଉଳ ବାସନ୍ଦ ହେଉଥିଲା ।

ମୋଟ ଉପରେ ଜମିଦାର ପାଖରେ ପ୍ରଜା ଏପରି ବାନ୍ଧି ହେବାର ଥିଲା ଯେ, ଦେଶର ସ୍ୱାଧୀନତା ପାଇଁ ଲଢ଼ିବାକୁ ବେଳ ଓ ବଳ ପାଉ ନ ଥିଲା; ତେଣୁ କୃଷକ ଆନ୍ଦୋଳନ ଜରିଆରେ ସେମାନଙ୍କୁ ଜମିଦାରଙ୍କ କବଳରୁ ମୁକ୍ତ କରିବା ସର୍ବାଦୌ କର୍ତ୍ତବ୍ୟ ଥିଲା । ଲଙ୍ଗଳ ଯାହାର, ଭୂମି ତା'ର, ମଠ ଧନ କୋଠ ହେଉ, ଜମିଦାରି ପ୍ରଥା ଲୋପ ହେଉ, ଏହି ଧ୍ୱନି ଉପରେ ଚାଷୀ ଆନ୍ଦୋଳନ ଗଢ଼ିଉଠିଲା ।

ଯୁଗ ଯୁଗ ଧରି ଶୋଷଣ ଓ ନିର୍ଯାତନାରେ ପେଷିହୋଇ ଯାଉଥିବା କୃଷୀ ଆନ୍ଦୋଳନ ଫଳରେ ବନ୍ଧନ ଛିନ୍ନ କରି ଦାଣ୍ଡକୁ ବେରିପଡ଼ିଲେ । ନବ ବାବୁ ନିରବଚ୍ଛିନ୍ନ ଭାବରେ ଗାଁ ବଣ୍ଡା ବୁଲି କୃଷୀ ପ୍ରାଣରେ ସାହସ ଓ ଦମ୍ଭ ଭରିଦେଲେ । କୃଷୀର ମେଣ୍ଟ ଗଢ଼ିଉଠିଲା । ବେଠି, ଭେଟି ଓ ଜମିଦାର କଚେରି ବର୍ଜନ ସମ୍ପୂର୍ଣ୍ଣ କୃତକାର୍ଯ୍ୟ ହେଲା । ଜମିଦାର ପ୍ରଥା ଉଠୁ ଓ କୃଷୀକୁ ସ୍ୱତ୍ୱ ମିଳୁ ଏହି ଦାବୀ ଆକାଶକୁ ଛୁଇଁଲା ।

ଦେଶ ସ୍ୱାଧୀନ ହେଲା, କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଠିତ ହେଲା, ଭାଗଚାଷ ଆଇନ ହେଲା, ଜମିଦାରୀ ଓ ମଧ୍ୟସ୍ୱତ୍ୱାଧିକାର ଉଚ୍ଛେଦ ହେଲା ।

ସବୁ ସତ୍ତ୍ୱେ ଭାଗଚାଷୀ ଆଇନ ବଳରେ ସ୍ୱତ୍ୱ ପାଇବାକୁ ବର୍ଷ ବର୍ଷ ଧରି କୋର୍ଟ କଚେରିକୁ ଦୌଡ଼ ଦୌଡ଼ ନାକେଦମ୍ ହେଲା । ଅନେକ ସ୍ଥଳରେ କୃଷୀ ହତାଶ ହୋଇ ଜମି ଛାଡ଼ିଦେଲା ।

ନବ ବାବୁ ମୁଖ୍ୟମନ୍ତ୍ରୀ ହେଲେ । ଭାଗଚାଷ ମକଦ୍ଦମା ୨ ମାସ ଭିତରେ ଫଇସଲା ହେବ, ସରଜମିନ ତଦନ୍ତ କରି ପ୍ରମାଣ ନେଇ ହାକିମ ରାୟ ଦେବେ ଯେପରି କି ଓକିଲ ନିଯୁକ୍ତ କରି ବା ସାକ୍ଷୀମାନଙ୍କୁ ନେବା ଆଣିବା କରି କୃଷୀ ଖର୍ଚ୍ଚାନ୍ତ ଓ ହଇରାଣ ନ ହେବ, ଏହିପରି କଡ଼ା ନିର୍ଦ୍ଦେଶ ନବ ବାବୁ ଦେବା ଫଳରେ ତାଙ୍କରି ଅମଳରେ କେତେହଜାର କୃଷୀ ସ୍ୱତ୍ୱ ପାଇବାକୁ ସମର୍ଥ ହୋଇଥିଲେ । ଓଡ଼ିଆରେ ଯେତେ ମନ୍ତ୍ରୀମଣ୍ଡଳ ଗଢ଼ାହୋଇ ଯାଇଛି ବା ଏବେ ଅଛି ନବ ବାବୁଙ୍କ ଛଡ଼ା କେହି ବଳକା ଜମି କୃଷୀକୁ ଦେବାପାଇଁ ଉଦ୍ୟମ କରି ନାହାନ୍ତି ।

ମନ୍ତ୍ରୀମାନେ ଜମି ବଣ୍ଟନର ପ୍ରହସନ କରି ପଟ୍ଟା ବାଣ୍ଟିଛନ୍ତି ସତ, ମାତ୍ର ସେହି ଜମିର ଅଧିକାଂଶ ସ୍ଥଳରେ କୃଷୀ ଦଖଲରେ ନ ଥାଏ । ସରକାର ନିଜ ଆଇନକୁ ନିଜେ ଭାଙ୍ଗିବାର ଦୃଷ୍ଟାନ୍ତ ଯଦି ଦେଖାଯାଏ ତେବେ ଭୂସଂସ୍କାର ଆଇନ ହେଉଛି ପ୍ରକୃଷ୍ଟ ।

ନବ ବାବୁ ଓ ବିପ୍ଲବୀ ମାଲତୀ ଚୌଧୁରୀଙ୍କ ସଙ୍ଗେ ଆନ୍ଦୋଳନରେ ଅଂଶୀଦାର ହେବାର ସୌଭାଗ୍ୟ ମୋର ଥିଲା । ନବ ବାବୁ ନେତା ଥିଲେ ସୁଦ୍ଧା ନେତୃତ୍ୱ ଦେବା ଢଙ୍ଗ ଓ ଢମ ତାଙ୍କର ନ ଥିଲା । ଚତୁର ରାଜନୀତିଜ୍ଞ ଭଳି ଗୁଲବାଜି କଥା କହି, ପ୍ରକୃତ ଘଟଣାକୁ ଲୁଚାଇ ରଖିବାର ଚେଷ୍ଟା ନବ ବାବୁ କରନ୍ତି ନାହିଁ । କେତେବଡ଼ ସେ, ଅଥଚ ଅତି ସାଧାରଣ ଓ ମାମୁଲି । ସବୁ ମତବାଦର ଯାହା ଭଲ ତାଙ୍କୁ ଲାଗୁଥିଲା ସେ ନିଜର କରୁଥିଲେ । ପ୍ରକୃତରେ ନବ ବାବୁଙ୍କ ଭଳି ବ୍ୟକ୍ତି କୋଟିକେ ଗୋଟିଏ ନୁହଁ, ଓଡ଼ିଶାରେ ଗୋଟିଏ । ସ୍ୱର୍ଗୀୟ ମହାନ୍ ନେତାଙ୍କ ପ୍ରତି ମୁଁ ଗଭୀର ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛି ।

---

# ତାଙ୍କୁ ଯେମିତ ଦେଖିଛି—ଜାଣିଛି

**ଗୋବନ୍ଦ ଚନ୍ଦ୍ର ମହାନ୍ତ**

ନବକୃଷ୍ଣ ଚୌଧୁରୀ ଜଗତସିଂହପୁର ଖେରସର ସମ୍ଭ୍ରାନ୍ତ ବଂଶୀୟ । ସେ କାଳର ବଶିଷ୍ଟ ଆଇନଜୀବୀ ଗୋକୁଳାନନ୍ଦ ଚୌଧୁରୀଙ୍କ ପୁଅ । ବଡ଼ ହାକମ ପାଇଟି ଛାଡ଼ି ପ୍ରଖ୍ୟାତ ଗାନ୍ଧୀବାଦୀ ନେତା ଗୋପବନ୍ଧୁ ଚୌଧୁରୀଙ୍କ ଭାଇ, ପତ୍ନୀ, ଭଉଜ, କନ୍ୟା, ଝିଆରୀ, ପୁରୁଷ, ନାରୀ ଏକ ଉତ୍ସର୍ଗୀକୃତ ପରିବାରର ସେ ଜଣେ, ଏହା ତାଙ୍କର ମାମୁଲି ପରିଚୟ ମାତ୍ର ।

ସେ କେହି କହିବେ ସେ ଥିଲେ ସ୍ୱାଧୀନତା ସଂଗ୍ରାମର ବଶିଷ୍ଟ ନେତା । ବହୁବାର କାରାବରଣ କରିଛନ୍ତି । ହାତ ପାହାନ୍ତା ସୁଯୋଗ ସୁବିଧା ଉପଭୋଗ ପ୍ରତି ନିସ୍ପୃହ ହୋଇଛନ୍ତି । ସେ ଥିଲେ ସୋସାଲିଷ୍ଟ । ସେ ଏମ୍. ଏଲ୍. ଏ. ଠାରୁ ରାଜସ୍ୱ ମନ୍ତ୍ରୀ, ମୁଖ୍ୟମନ୍ତ୍ରୀ ଥିଲେ । ସେ ଜଣେ ଗାନ୍ଧିବାଦୀ ନେତା, ସେ ଥିଲେ ସର୍ବୋଦୟ ନେତା ।

ନବକୃଷ୍ଣ ଚୌଧୁରୀ ଓ ତାଙ୍କ ସହଧର୍ମିଣୀ, ସହକର୍ମିଣୀ ମାଲତୀ ଦେବୀଙ୍କ ରାଜନୈତିକ ଶିଷ୍ୟ, ରାଜନୈତିକ ସହକର୍ମୀ ଭାବରେ ତାଙ୍କର ସେ କାଳର କର୍ମଜୀବନରେ ତାଙ୍କୁ ଦେଖିଛି । କାରାବାସରେ ଦୁଇ ଦୁଇଥର ନିକଟରୁ ଲକ୍ଷ୍ୟ କରିଛି ଏବଂ ପରବର୍ତ୍ତୀ କାଳରେ ତାଙ୍କ ରାଜନୈତିକ ମତବାଦର ବିରୋଧୀ ରୂପେ ତାଙ୍କ ନିକଟ ସଂସ୍ପର୍ଶରେ ଆସିଛି ।

ନବକୃଷ୍ଣ ଚୌଧୁରୀଙ୍କ ଜୀବନର ମୂଲ୍ୟାୟନ କଲେ ଦେଖାଯିବ ଯେ ପ୍ରତିଷ୍ଠାବାନ୍ ଯେକୌଣସି ରାଜନୈତିକ ବ୍ୟକ୍ତିଙ୍କଠାରୁ ତାଙ୍କର ଥିଲା ଏକ ସ୍ୱତନ୍ତ୍ର ବ୍ୟକ୍ତିତ୍ୱ । ସେ ଥିଲେ ଏକ ଅନନ୍ୟସାଧାରଣ ରାଜନୀତିକ, ଚିନ୍ତକ, ସ୍ୱପ୍ନବିଳାସୀ, ଅନୁସନ୍ଧିତ୍ସୁ ଓ ଅନ୍ୱେଷକ । ଜୀବନବ୍ୟାପୀ ଅନ୍ୱେଷଣକୁ ସେ ନିଜ ଜୀବନର ମହତ୍ତ୍ୱ ବୋଲି ବିଚାରୁଥିଲେ । ଅନ୍ୱେଷଣ ଓ ଅନୁସନ୍ଧିତ୍ସାର ଏକମାତ୍ର ଲକ୍ଷ୍ୟ ଥିଲା, ପୁରାତନ ସାମାଜିକ, ଆର୍ଥିକ ବ୍ୟବସ୍ଥାର ଆମୂଳ ପରିବର୍ତ୍ତନ । ତାଙ୍କର ଏହି ପ୍ରାଣପାତ ପ୍ରଚେଷ୍ଟା ସମାଜ ବିକାଶର ବିଜ୍ଞାନସମ୍ମତ ଚିନ୍ତାନୁସାରୀ ଅବା ଅଲଭ୍ୟ, ଐକାନ୍ତିକ ଆଦର୍ଶବାଦୀ ଧରଣର । ତାହାର ବିଚାର ସ୍ୱତନ୍ତ୍ର ।

ସେ ମାର୍କସବାଦୀ ଥିଲେ, ପୁଣି ନ ଥିଲେ । ସେ ମନ୍ତ୍ରୀ ହେବାକୁ ଗୃଧ୍ନୁ ନ ଥିଲେ । ପୁଣି ହେଲେ ଓ ମଝିରେ ମନକୁ ଛାଡ଼ି ଚାଲିଗଲେ । ମୁଖ୍ୟମନ୍ତ୍ରୀ ହେବାକୁ ଗୃଧ୍ନୁ ନ ଥିଲେ ପୁଣି ମୁଖ୍ୟମନ୍ତ୍ରୀ ହେଲେ । ଯାଉଁ ଯାଉଁ ମୁଖ୍ୟମନ୍ତ୍ରୀ ପଦ ଛାଡ଼ିବ ଛାଡ଼ିବ ହେଲେ; ସେ ଭାରତରେ କଂଗ୍ରେସ ସୋସାଲିଷ୍ଟ ପାର୍ଟିର ପ୍ରତିଷ୍ଠାତା ନେତା ହେଲେ । ପୁଣି ସେଥିରେ ରହିଲେ ନାହିଁ । ସେ ଯେତେବେଳେ କଂଗ୍ରେସର ସର୍ବୋଚ୍ଚ ନେତୃତ୍ୱ କାର୍ଯ୍ୟନିର୍ବାହୀ କମିଟିକୁ ଯିବାକୁ ପସନ୍ଦ କରୁ ନ ଥିଲେ ଏବଂ ରହିଲେ । ସେ ଗାନ୍ଧୀବାଦୀ ବୋଲି ଯେତେବେଳେ ଯାହା ବିଚାର, ଯେପରି ଗାନ୍ଧୀବାଦୀ ନ ଥିଲେ, ମାତ୍ର ଗାନ୍ଧୀବାଦୀ ବୋଲି ତାଙ୍କୁ କୁହାଗଲା । ସେ ସର୍ବୋଦୟପନ୍ଥୀ ନ ଥିଲେ ଓ ଥିଲେ । ଯେଉଁ କଂଗ୍ରେସ ଲାଗି ସେ ପ୍ରାଣୋତ୍ସର୍ଗର ଶପଥ ନେଲେ ଓ ତା'ର ଶୀର୍ଷ ନେତା ଏବଂ ରାଜ୍ୟର ପ୍ରଧାନ ଶାସକ ହେଲେ, ପରବର୍ତ୍ତୀ କାଳରେ ସେହି "କଂଗ୍ରେସ ହଟାଓ" ଅଭିଯାନର ଅଗ୍ରଣୀ ହେଲେ । ତାଙ୍କୁ ବ୍ରିଟିଶ ସରକାର ୫ ଥର ଜେଲ୍ ନେଲା, ପାରଳା-ଗୋଦାବରୀଶ ସରକାର ଜେଲ୍ ନେଲେ—ପୁଣି ଇନ୍ଦିରା ନନ୍ଦିନୀ ସରକାର ଜେଲ୍ ଦେଲେ ।

କ'ଣ ଏ ବ୍ୟକ୍ତି, କ'ଣ ଏ ବ୍ୟକ୍ତିତ୍ୱ ? ମୁଁ ଯେପରି ଦେଖିଛି, ଯେପରି ତାଙ୍କର ଜୀବନର ପ୍ରତ୍ୟେକ ବିଭାବକୁ ପାଖରେ ଥାଇ ଓ ଦୂରରେ ରହି ଅନୁଶୀଳନ କରିଛି । ସେ ଦୃଷ୍ଟିରୁ କହିବି ସେ ଥିଲେ ଏକ ଅଶାନ୍ତ ଝଡ, ଏକ ଅତୃପ୍ତ ବିଦ୍ରୋହୀ, ଏକ ବିପ୍ଳବୀ ଗଣତନ୍ତ୍ରବାଦୀ (Revolutionary Democrat) । ଯାହା ପରଂପରାଗତ ସମାଜ ବ୍ୟବସ୍ଥା,

ସାମାଜିକ ଚିନ୍ତା, ସାମାଜିକ ସମ୍ପର୍କ ଓ ଆର୍ଥିକ ବ୍ୟବସ୍ଥା ଓ ସେହି ସମାଜ ବ୍ୟବସ୍ଥା ଓ ଅର୍ଥନୈତିକ ବ୍ୟବସ୍ଥାରୁ ଉଦ୍‌ଭବ ସଂସ୍କୃତି— ଯାହାକୁ ସେ ଅପସଂସ୍କୃତି ବିଚାରୁଥିଲେ, ତାହାରି ବିରୁଦ୍ଧରେ ତାଙ୍କର ବିଦ୍ରୋହ । ତାଙ୍କ ଆଲୋଚନାରେ, ଭାଷଣରେ, ତାଙ୍କ କାର୍ଯ୍ୟରେ ସେ ତାହା ପ୍ରକାଶ କରୁଥିଲେ । ତାଙ୍କୁ କିଏ ନିହିଲିଷ୍ଟ ବା ନେତିବାଦୀ ବୋଲି କହିପାରେ । ତାଙ୍କ ଜୀବନ ଦର୍ଶନକୁ କିଏ ନୈରାଶ୍ୟବାଦୀ ଆଖ୍ୟାୟିତ କରିପାରେ । ଲକ୍ଷ୍ୟ ଓ ଲକ୍ଷ୍ୟ ହାସଲର ଉପାୟ ସମ୍ପର୍କରେ ତାଙ୍କର ଗଭୀର ଅନୁଶୀଳନରୁ ସେ ଦୁଇଟିକୁ ଏକାଠି କରୁଥିଲେ । ଲକ୍ଷ୍ୟ ସଠିକ ହେଲେ ଉପାୟ ଯାହା ହେଉ ଯେମିତି ସେ ବିଚାରୁଥିଲେ, ସେମିତି ଉପାୟ ଠିକ୍ ହେଲେ ଲକ୍ଷ୍ୟ ହାସଲ ସୁଗମ ହେବ ବୋଲି ଧରୁଥିଲେ । ଗୋଟିଏ ଦୃଷ୍ଟାନ୍ତ ନିଅନ୍ତୁ, ଗାନ୍ଧୀଜୀଙ୍କ ବିଚାରକୁ ସେ ମାନୁଥିଲେ ହେଁ ନିଜେ ସନ୍ତ୍ରାସବାଦ ବିଶେଷତଃ ବ୍ୟକ୍ତିସନ୍ତ୍ରାସର ପରମ ବିରୋଧୀ ହୋଇ ବି ନକ୍‌ସଲପନ୍ଥୀଙ୍କ ପ୍ରତି ଭାବଗତ ଦରଦ ରଖୁଥିଲେ । ଏକମାତ୍ର ଲକ୍ଷ୍ୟ ଗାନ୍ଧୀବାଟରେ ହେଉ, କମ୍ୟୁନିଷ୍ଟ ଓ ସୋସାଲିଷ୍ଟ ବାଟରେ ହେଉ ଅବା ନକ୍‌ସଲପନ୍ଥୀ ଓ ସଶସ୍ତ୍ର ବିପ୍ଳବ ବାଟରେ ହେଉ, ଏ ସମାଜ ବଦଳୁ, ପାରଂପରିକତା ବଦଳୁ । ଏଷ୍ଟାବ୍ଲିଶମେଣ୍ଟ ବଦଳୁ । ଏ ରାଷ୍ଟ୍ରସତ୍ତାର ପରିବର୍ତ୍ତନ ହେଉ ।

ଏପରି ଚିନ୍ତାରେ ଧାରାବାହିକତା ଥିଲା କି ନ ଥିଲା, ତାହା ଏକ ସ୍ୱତନ୍ତ୍ର ଆଲୋଚ୍ୟ ବିଷୟ । ଏପରି ବିରୋଧାଭାସ ତାଙ୍କ ଜୀବନଦର୍ଶନରେ ଯେ ପ୍ରତିଫଳିତ, ତାହା ତାଙ୍କର ନିଜର ପ୍ରତିଷ୍ଠା ପାଇଁ, ନିଜର ନେତୃତ୍ୱ ପାଇଁ ଓ ନିଜର ସୁନାମ ଅର୍ଜନ ପାଇଁ ଉଦ୍ଦିଷ୍ଟ ଯେ ନ ଥିଲା, ତାହା ତାଙ୍କର ଦୀର୍ଘ କର୍ମମୁଖର, ଆଜିକା ସମାଜରେ ଯାହାକୁ ନିଷ୍ପାପ କୁହାଯିବ, ସେପରି ନିଷ୍ପାପ ନିରାଡ଼ମ୍ବର ଜୀବନରେ ପ୍ରତିଫଳିତ ହୋଇଛି । ଅର୍ଥାତ୍ ନିଜର ନେତୃତ୍ୱ, ପ୍ରତିଷ୍ଠା ପାଇଁ ଶାସନରେ ଥିବାବେଳେ ନିଜ ଦଳର ଶକ୍ତି ବୃଦ୍ଧି ଲାଗି ସେ ଯେତେବେଳେ ଯାହା ଆବଶ୍ୟକ, ତାହା କରିବାର ନୀତିଗତ ଭାବରେ ଥିଲେ ବିରୋଧୀ । ଏପରି ସଂକୀର୍ଣ୍ଣ ସ୍ୱାର୍ଥ ପାଇଁ ସେ ରୂପ ବଦଳାଉ ନ ଥିଲେ କି ମତ ବଦଳାଉ ନ ଥିଲେ । ସମାଜ ରୂପାନ୍ତର ନିଜ ମନ ଅନୁସାରେ ଓ ଅଭିପ୍ସା ଅନୁଯାୟୀ ହେଉନାହିଁ; ତେଣୁ ସେ ସର୍ବଦା ଭିନ୍ନ ଭିନ୍ନ ବାଟରେ ଅନ୍ୱେଷଣ କରୁଥିଲେ । ସେହି ବାଟରେ କିଛି ଦିନ ଯାଉଥିଲେ, ମାତ୍ର ସେ ବାଟରେ ଆଶୁ ସଫଳତା ନ ପାଇ ବା ସେ ବାଟରେ ଭବିଷ୍ୟତ୍ ସମ୍ପର୍କରେ ସନ୍ଦିହାନ ହୋଇ ସେଥିରୁ ମୁଖ ଫେରାଉଥିଲେ । ପୁଣି ଅନ୍ୱେଷଣ କରୁଥିଲେ ଦୋସରା ବାଟରେ ।

ଗୋଟିଏ କଥାରେ କୁହାଯିବ, ପୁରୁଣା ଶୋଷଣ, ଅତ୍ୟାଚାର, ନିର୍ଯ୍ୟାତନାପୂର୍ଣ୍ଣ ସମାଜ କବଳରୁ ଦଳିତ, ନିଷ୍ପେଷିତ, ଅବହେଳିତ, ବଞ୍ଚିତ, ଲାଞ୍ଛିତ ଅଗଣିତ ଲୋକଙ୍କ ମୁକ୍ତି । ସେ ବାଟ ଯାହା ହେଉ ନା କାହିଁକି ସେହି ଉଦ୍ଦେଶ୍ୟରେ ଯିଏ ଯାହା କରୁଛି, ତାଙ୍କର ସଙ୍ଗରେ ସିଏ ରହିବେ—ମନରେ ହେଉ ବା କାର୍ଯ୍ୟରେ ହେଉ । ମନ ନ ମାନିଲେ ସେଥିରୁ ଓହରିଯିବେ । ଏହାହିଁ ତାଙ୍କ ଜୀବନ ପ୍ରମାଣିତ କରିଛି । ସେହି ଗୋଟିଏ ଲକ୍ଷ୍ୟରେ ସେ ସୋସାଲିଷ୍ଟ ବୋଲି କୁହାଯାନ୍ତି, ଗାନ୍ଧୀବାଦୀ ବୋଲି କୁହାଯାନ୍ତି, ସର୍ବୋଦୟପନ୍ଥୀ ବୋଲି ବିବେଚିତ ହୁଅନ୍ତି ।

ତାଙ୍କର ଜୀବନାଦର୍ଶ ତେଣୁ ଭୂସ୍ୱାମୀଙ୍କର ସ୍ୱତ୍ୱରକ୍ଷା, ମଠାଧୀଶମାନଙ୍କର ସମ୍ପତ୍ତି ରକ୍ଷା, ପୁଞ୍ଜିପତିମାନଙ୍କ ବଢ଼ତି ଓ ସ୍ୱାର୍ଥରକ୍ଷାର ବିରୋଧୀ । କଂଗ୍ରେସରେ ଥାଇ, ଏକ ଶୀର୍ଷସ୍ଥାନୀୟ ନେତା ହୋଇ ଧରିବନ୍ଧା କଂଗ୍ରେସ ନୀତି ଓ ନେତାମାନଙ୍କ ସଙ୍ଗରେ ରହି ପୁଣି ସେହି ମେଳରେ ନିଜକୁ ଅଲଗା କରିଆଣି ସେ ଜମିଦାରୀ ପ୍ରଥାର, ସାମନ୍ତବାଦୀ ପ୍ରଥାର ଉଚ୍ଛେଦ ପାଇଁ ଆନ୍ଦୋଳନରେ ଜଣେ ଅଗ୍ରଣୀ ଥିଲେ ଏବଂ କ୍ଷମତାକୁ ଆସି ତାକୁ କାର୍ଯ୍ୟରେ ପରିଣତ କରିବା ଲାଗି ପଦକ୍ଷେପ ନେଲେ । ମାତ୍ର ଦେଖିଲେ ତାଙ୍କ ଦଳର ନୀତି, ସମ୍ବିଧାନର ନିର୍ଦ୍ଦେଶାବଳୀ ଏହି ବ୍ୟବସ୍ଥାର ଆମୂଳ ଉଚ୍ଛେଦ କରିପାରିବ ନାହିଁ । ତେଣୁ ସେ ଭାବିଲେ ହୁଏତ ବିନୋବାଙ୍କ ଭୂଦାନ ସଫଳ ହେବ । ସେଥିରେ ନିମଜ୍ଜି ଗଲେ—ଆଇନ କଲେ । ମାତ୍ର ଦେଖିଲେ ଗାଁଗହଳରେ ଶୋଷଣ ଅତ୍ୟାଚାର ଅଧିକ ବଢ଼ିଲା । ଏ ସମ୍ପର୍କରେ ତାଙ୍କର ଦୃଷ୍ଟିକୋଣ କ'ଣ ଥିଲା, ତାଙ୍କ ମୁଖ୍ୟମନ୍ତ୍ରିତ୍ୱବେଳେ ସେ ପ୍ରକାଶ କରିଦେଲେ । ଥରେ ଚନ୍ଦକାରୁ ଦଳେ ଭାଗଚାଷୀ ଆସି ବିଧାନସଭା ଆଗରେ ବିକ୍ଷୋଭ କରି ଜମିଦାରଙ୍କଠାରୁ ରକ୍ଷା କରିବାକୁ ତାଙ୍କୁ ଅନୁରୋଧ କଲେ । ସେ ଉତ୍ତରରେ କହିଲେ, ଆଇନରେ ଜମି ମିଳିବ ନାହିଁ । ଭାଗଚାଷୀ ଆଇନତଃ ହୋଇଛ । ତମେ ଠେଙ୍ଗାବାଡ଼ି ଧରି ଜମିବାଡ଼ି ରଖିପାରିବ ତ ? ମୁଖିଆ ଭାଗଚାଷୀ ତାଙ୍କୁ ଓଲଟି ପ୍ରଶ୍ନ କଲେ, ଆପଣ ପୁଲିସ ପଠାଇବେ ନାହିଁ ତ ? ଉତ୍ତର ମିଳିଲା, "ହଁ, ପଠାଇବି । ଆଇନ ସମ୍ବିଧାନ ମୋତେ ବାଧ୍ୟ କରିବ । ସ୍ୱାଧୀନତା ଲାଗି ଲୋକ ଜେଲ୍ ଗଲେ, ଫାଶୀ ଚଢ଼ିଲେ, ତମେ ଜମି ପାଇବ, ସୁରୁଖୁରୁରେ ପାଇଯିବ, ଠେଙ୍ଗାବାଡ଼ି ଧରିବ ନାହିଁ ?"

କୁହନ୍ତୁ ଦେଖି କେଉଁ ମୁଖ୍ୟମନ୍ତ୍ରୀ ଏପରି ପରାମର୍ଶ ଦେବ ଓ ନିଜ ଶାସନର ଅକ୍ଷମତା, ଯାହା କି ସତ୍ୟ, ତାକୁ ପ୍ରକାଶ କରିବ, ନିଜ ଶାସନକୁ ହେୟ ପ୍ରତିପନ୍ନ କରିବ ? ତାହା କେବଳ ଏହି ବ୍ୟକ୍ତିଙ୍କ ପକ୍ଷରେ ଥିଲା ସମ୍ଭବପର ।

ସେମିତି ଶାସକ ଦଳରେ ନିଜର ଗୋଷ୍ଠୀ ଗଠନ, ଯେତେ ବ୍ୟକ୍ତି ଓଡ଼ିଶାରେ ଶାସନରେ ଆସିଛନ୍ତି, କିଏ ନ କରିଛି ? କିନ୍ତୁ ସେ ରାଜନୀତି କ୍ଷେତ୍ରରେ ସେମିତି ନିଜର ମତକୁ ସମର୍ଥନ କରୁଥିବା ଏବଂ ଅନ୍ୟ ଗୋଷ୍ଠୀର ବିରୁଦ୍ଧରେ ଯାଉଥିବା ଗୋଷ୍ଠୀ ଗଠନ ତାଙ୍କ ଜୀବନର ଧର୍ମ ନ ଥିଲା । ନେତୃତ୍ୱ ଓ କ୍ଷମତାକୁ ଜାବୁଡ଼ିଧରି ରଖିବା ତାଙ୍କ ଜୀବନାଦର୍ଶର ପରିପନ୍ଥୀ ଥିଲା; ତେଣୁ ତାଙ୍କର କୌଣସି ଲବି ନ ଥିଲା । ଗୋଟିଏ ଉଦାହରଣ ଯଥେଷ୍ଟ । ବିଧାନସଭା ଲବିରେ ବିରୋଧୀଦଳ, ସାମ୍ବାଦିକ ଓ ତାଙ୍କ ମନ୍ତ୍ରୀ ଏମ୍. ଏଲ୍. ଏ. ଙ୍କ ସାମନାରେ ସେ ନିଜ ଦଳର ଜଣେ ବିଧାୟକ, ଯେ କି କେତୋଟି ସ୍କୁଲକଲ ମାଲିକ ତାଙ୍କର ସମାଲୋଚନା କରି କହିଲେ, ''ସ୍କୁଲରେ ଟିକି ଟିକି ଗୋଡ଼ ମିଳେଇବ । ପୁଣି ନିଜକୁ ଗାନ୍ଧୀବାଦୀ କହିବ—କଂଗ୍ରେସ ନେତା କହିବ ?'' ସେମିତି ନିଜ ମନ୍ତ୍ରିମଣ୍ଡଳର ସଦସ୍ୟା, ପୂର୍ବତନ ରାଜବଂଶୀୟାଙ୍କୁ ଲକ୍ଷ୍ୟ କରି କହିଲେ, ''ଜୀବନସାରା ରାଜା-ଜମିଦାର ବିରୁଦ୍ଧରେ ଲଢ଼ିଲୁ । ଏବେ ରାଜାରାଣୀଙ୍କୁ ମନ୍ତ୍ରୀ କରି ଆମେ ଲୋକଙ୍କ ଦୁର୍ଦ୍ଦଶା ଦୂର କରିବୁ କହୁଛୁ । ଏହାଠାରୁ ବଳି ପ୍ରତାରଣା କ'ଣ ଅଛି ?'' ଆଜି ସମାଲୋଚକମାନେ ବିଚାର କରନ୍ତୁ, ଏପରି ନେତା, ମୁଖ୍ୟମନ୍ତ୍ରୀଙ୍କୁ ନିଜ ଦଳର କେତେଜଣ ନିଷ୍ଠାବାନ୍ ବ୍ୟକ୍ତିଙ୍କୁ ଛାଡ଼ିଦେଲେ କିଏ ଟେକିଧରିବ ? କିଏ ଗାଦିରେ ରଖେଇବ ? ଆଉ ଏକ ଦୃଷ୍ଟାନ୍ତ ନିଅନ୍ତୁ । ଦୁର୍ନୀତି ! ସେହି ବ୍ୟକ୍ତି ଖାନ୍ନା କମିଶନକୁ କେବଳ କହିପାରେ ତାଙ୍କ ଦଳ, ତାଙ୍କର ସହକର୍ମୀ, ସହଯୋଦ୍ଧା ଯାହା ଯାହା କରିଛନ୍ତି, ତା'ର ସେ ରାଜସାକ୍ଷୀ ।

ସେ ଦରିଦ୍ରଙ୍କ ମୁକ୍ତି ଚାହୁଁଥିଲେ । ଦାରିଦ୍ର୍ୟ ବଣ୍ଟନ ଚାହୁଁ ନ ଥିଲେ । ସେ ଥିଲେ ମାନବବାଦୀ, ମାତ୍ର ମାନବବାଦର ଦୋହାଇ ଦେଇ ସେ ଅର୍ଥ ଆଣି ତାଙ୍କ ଦଳର ଦୁଷ୍ଟ କର୍ମୀଙ୍କୁ ବାଣ୍ଟି ପରୋପକାର ସ୍ୱର୍ଗାୟଃ ନୀତି ଧରି ନ ଥିଲେ । ସେ ଚାହିଁଥିଲେ ଅଜସ୍ର ଅର୍ଥ ଆଣି କର୍ମୀ ଓ ତୋଷାମଦକାରୀମାନଙ୍କୁ ସନ୍ତୁଷ୍ଟ କରିପାରିଥାନ୍ତେ । ମାତ୍ର ସେପରି ଆଦର୍ଶର ସେ ଥିଲେ ଦୂରରେ ।

ସେ ଜାଣିଲେ ତାଙ୍କ ଶ୍ରେଷ୍ଠ ଜମିଦାରୀର ଗୁମାସ୍ତା ଲୋକଙ୍କୁ ହଇରାଣ କରି ନିଜେ ସବୁ ଆତ୍ମସାତ୍ କରୁଛି । ଠିକଏ ହେଲେ କ୍ରୋଧ ପ୍ରକାଶ ନ କରି ସେ ତାଙ୍କ କଳନ୍ତ୍ରା ଗାଁର ଜମିଯାକ ଭାଗଚାଷୀଙ୍କୁ ସ୍ୱତ୍ୱ ଦେଇ ପ୍ରଜା କରେଇଦେବାକୁ ନିର୍ଦ୍ଦେଶ ଦେଲେ । ଅପରିଗ୍ରହ-ଏଇ ନୀତିବାକ୍ୟକୁ ସାଧ୍ୟମତେ ସେ ନିଜ ଜୀବନରେ ପ୍ରୟୋଗ କରୁଥିଲେ ।

ତାଙ୍କର ସହଯୋଦ୍ଧା, ସହକର୍ମୀ ସିଏ ଯେଉଁ ମତବାଦର ହୁଅନ୍ତୁ ନା କାହିଁକି, ସେମାନଙ୍କ ସହିତ ଆଦର୍ଶଗତ, ବିଚାରଗତ ଏବଂ କାର୍ଯ୍ୟଗତ ମତବିରୋଧ ଘଟିଛି । ତାଙ୍କୁ ଏକ ସନ୍ଦେହଯୁକ୍ତ ଚରିତ୍ରର ବ୍ୟକ୍ତି ବୋଲି ଦର୍ଶାଇ ତାଙ୍କ ବିରୁଦ୍ଧରେ ତାଙ୍କ ସମକକ୍ଷ ସହକର୍ମୀମାନେ କେତେ କୁତ୍ସା ରଟନା କରିଛନ୍ତି । ସେ ତା'ର ପ୍ରତିବାଦ କରି ଭଲେଇ ସାଜି ନାହାନ୍ତି ।

୧୯୩୭ ରେ ତାଙ୍କୁ ଜଣେ ଯୁବକ ମଣ୍ଡାଧରପଡ଼ାରେ କଂଗ୍ରେସ ପ୍ରଚାର କରୁଥିବାରୁ ଛୁରି ମାରିଲା । ଜୀବନ ସଂକଟାପନ୍ନ; ମାତ୍ର ଭଲେ ହେଲେ ତା ପ୍ରତି ବିଦ୍ୱେଷଭାବ ତାଙ୍କ ମୁହଁରେ ଉଙ୍କିମାରି ନ ଥିଲା ।

କଂଗ୍ରେସର ରାଜନୀତି କରିବ । ମନ୍ତ୍ରୀ ହେବ । ନିଜ ଦଳର ଓ ବାହାରର ବିରୋଧୀଙ୍କ ପ୍ରତି ପ୍ରତିହିଂସାପରାୟଣ ହେବ ନାହିଁ । ଏହା କେବଳ ତାଙ୍କ ରାଜନୈତିକ ଜୀବନରେ ବ୍ୟତିକ୍ରମ । ଏହାର ଅର୍ଥ ନୁହେଁ ଯେ ସେ ଅନ୍ୟମାନଙ୍କ ମତକୁ କାଟୁ ନ ଥିଲେ ବା ତାର ତୀବ୍ର ସମାଲୋଚନା କରୁ ନ ଥିଲେ । ଛ'ମାସଟିଏ ମନ୍ତ୍ରୀ ବା ଉପମନ୍ତ୍ରୀ ପାଇଟି ଧରିଲେ—ଆଉ ସବୁ କଥା ଛାଡ଼ନ୍ତୁ, ମଟରକାର ଖଣ୍ଡେ ତ ନିଶ୍ଚୟ ଶିଘ୍ର ଧରିବ । ମାତ୍ର ନବ ବାବୁ, ମୁଖ୍ୟମନ୍ତ୍ରିତ୍ୱ ଛାଡ଼ିବା ପରେ ପାଦ, ନଚେତ ସାଇକେଲ । ଜେଲ ଅଭ୍ୟାସବଶତଃ ବଡ଼ଟଣା, ଯୋଗଆସାହିରେ ହେଉ, ଅବା କୋଉ ହରିଜନ ଆଦିବାସୀ ଗାଁରେ ହେଉ ଛିଣ୍ଡା ମସିଣାରେ ରାତି କଟାଇବା ଅନେକେ ଦେଖିଥିବେ । ନିଜକୁ ପ୍ରତିଷ୍ଠା କରେଇବେ ନାହିଁ, ଏଇଥିଲାଗି ସେ କୌଣସି ଉଦ୍‌ଘାଟନ ଉତ୍ସବ, ଶିଳାନ୍ୟାସ ଉତ୍ସବ ବା ପୁରସ୍କାର ବିତରଣୀ ଉତ୍ସବକୁ ରାଣ ଖାଇଲା ଭଳି ବିରୋଧ କରୁଥିଲେ । ଥାର୍ଡ଼କ୍ଲାସ ରେଲଡବାରେ ନାଗାଲାଣ୍ଡ ବା ଅନ୍ୟତ୍ର ଯିବେ ଓ ନିଜ ବିଛଣା ଖଣ୍ଡିକ ଧରି ଗାଡ଼ିରେ ବସିବେ । ଏହା ହାଓଡ଼ା ଷ୍ଟେସନରେ ପଶ୍ଚିମବଙ୍ଗର ବହୁ ଗଣ୍ୟମାନ୍ୟ ବ୍ୟକ୍ତି ତାଙ୍କୁ ଚାହିଁ ଅବାକ୍ ହୋଇଛନ୍ତି ।

ମୋ ପରେ ମୋ ନାମ ନ ରହୁ, ଏପରି ଏକ ଅଦ୍ଭୁତ ଚିନ୍ତା ତାଙ୍କର ଥିଲା । ଅତୀତ ଜୀବନର ଯେତକ ଅଭିଜ୍ଞତା ତାକୁ ବୋଲି ଲେଖକ ପରି ଅନେକେ ତାଙ୍କୁ ଅନୁରୋଧ କରିବାର ଜାଣିଛି । ନମ୍ର ଭାବରେ କହନ୍ତି, ମୁଁ କ'ଣ ଜାଣିଛି ? ଯାହା— ସେଗୁଡ଼ାକ ପଗ୍ରଗନ । ସ୍ୱାଧୀନତା ଆନ୍ଦୋଳନ, ଓଡ଼ିଶାରେ କୃଷକ ଆନ୍ଦୋଳନ, ଗଡ଼ଜାତ ପ୍ରଜା ଆନ୍ଦୋଳନ, ମନ୍ତ୍ରିତ୍ୱ ଏବଂ ପରବର୍ତ୍ତୀ ଜୀବନରେ ସମାଜର ପରିବର୍ତ୍ତନ ଲାଗି ନିଜସ୍ୱ ବିଶ୍ୱାସରେ ତାଙ୍କ କର୍ମମୟ ଜୀବନର କେତେ ଯେ ଅଭିଜ୍ଞତା, ତାହା ଆଜିର ଇତିହାସବସ୍ତୁ । କାଳେ ତାଙ୍କର କିଛି ରେକର୍ଡ଼ ରହିଯିବ, ସେଥି ଲାଗି ସେ ଗଦା ଗଦା ଚିଠିପତ୍ର ପୋଡ଼ି ନଷ୍ଟ କରିଦେଲେ ।

ଅତ୍ୟାଚାରୀଙ୍କୁ କିପରି ସେ ଘୃଣା କରୁଥିଲେ ଓ ଯେଉଁମାନେ ଦେଶ ପାଇଁ ନିଜ ବିଶ୍ୱାସ ଅନୁସାରେ କାମ କରୁଥିଲେ, ସେଥିଲାଗି ତାଙ୍କ ପ୍ରତିକ୍ରିୟାର ଦୁଇ ତିନୋଟି ଘଟଣା ଉଲ୍ଲେଖ ଅପ୍ରାସଙ୍ଗିକ ହେବ ନାହିଁ ।

ବେଜେଲଗେଟଙ୍କୁ ରଣପୁରରେ ପୂର୍ବଦିନ ସନ୍ଧ୍ୟାରେ ହତ୍ୟା କରାଯାଇଥାଏ । ପରଦିନ ସକାଳେ ତାଙ୍କୁ ଏ ସମ୍ବାଦଟିକୁ ଲେଖକ ଦେବାବେଳେ ସେ ସ୍ଥିର ହେଉଥାନ୍ତି । ଗଡ଼ଜାତ ପ୍ରଜାଙ୍କ ଉପରେ ଅତ୍ୟାଚାର କଥା ସ୍ମରଣ କରି ସେ କହିଲେ, "ଠିକ୍, ତା ଲାଗି ମୁଁ ସ୍ଥିର ହୋଇପଡ଼ିଲି ।"

ବାଜିରାଉତ ପ୍ରଭୃତି ଛ'ଜଣଙ୍କର ଶବ କଟକରେ ଦାହ ହେଲା । ଟାଉନହଲ ସଭାରେ ବାଜି, ନଟ, ଗୁରି, ଲୁରୁଣୀ, ରଘୁ ପ୍ରଭୃତିଙ୍କ ମର୍ମନ୍ତୁଦ ମୃତ୍ୟୁର ବର୍ଣ୍ଣନା କରି ସେ କହିଁ କହିଁ କାନ୍ଦୁଥାନ୍ତି । ଶୁଣିଲେ ଢେଙ୍କାନାଳ ରାଜା ଷ୍ଟେସନରେ ଅନ୍ଧାରରେ ରେଲ ସାଲୁନରେ ଲୁଚି ରହିଛି । ନବ ବାବୁ କହିଲେ, "ତାଙ୍କୁ ବାଜିର ପ୍ରେତ ଘେରିବସିଛି ।"

୧୯୪୩ ବ୍ରହ୍ମପୁର ଜେଲ୍‌ଖାନା । ଭିନ୍ନ ମତାବଲମ୍ବୀ ହେଲେ ବି ଯାହାର ଗୁଣରେ ସେ ମୁଗ୍‌ଧ, ତାଙ୍କ ମୃତ୍ୟୁରେ ତାଙ୍କ ସମବେଦନାର ସ୍ୱର ତାଙ୍କ ମହତ୍ତ୍ୱ ପ୍ରତିପାଦନ କରେ । ଭଗବତୀଚରଣ ପାଣିଗ୍ରାହୀଙ୍କ ମୃତ୍ୟୁ ଖବର ପହଞ୍ଚିଲା । ଜେଲରେ ଏକ ଶୋକସଭା । ପ୍ରାଣକୃଷ୍ଣ ପଡ଼ିଆରୀ ସଭାପତି । ନବ ବାବୁ ଭେଁ ଭେଁ କାନ୍ଦି କହିଲେ—"ମୁଁ ରହିଗଲି । ଭଗବତୀ ମରିଗଲା ।" ଅଥଚ ଭଗବତୀ ଥିଲେ ଅନ୍ୟ ମତାବଲମ୍ବୀ—କମ୍ୟୁନିଷ୍ଟ ।

ସେ ଅଗାଧ ପାଣ୍ଡିତ୍ୟର, ତୀକ୍ଷ୍ଣ ମେଧାର ଅଧିକାରୀ ସତ, ମାତ୍ର ଅହଂ ନ ଥିଲା । ଆତ୍ମାଭିମାନ ନ ଥିଲା । ତାଙ୍କ କଲମରୁ କିଛି ଲେଖାଟିଏ ବାହାରିବା କଷ୍ଟକର । ମାତ୍ର ଥରେ ଯଦି ଲେଖି ବସିଲେ, ତାହା ହେଉଥିଲା ଅନବଦ୍ୟ । ଠକକର-ବାପାଙ୍କ କମିଟିକୁ ତାଙ୍କ ରିପୋର୍ଟ ବା ଭୂସଂସ୍କାର ଆଇନ ସମ୍ପର୍କରେ ତାଙ୍କର ବିଶ୍ଳେଷଣ ତାଙ୍କ ଦଳର ଲୋକଙ୍କ ପକ୍ଷରେ ବୋଧଗମ୍ୟ ହେଉ ନ ଥିଲେ ତାହା ବାସ୍ତବିକ ଗଭୀର ଅନୁଶୀଳନ ଓ ସମାଜର ରୂପାନ୍ତର ଲାଗି ତାଙ୍କର ଆଗ୍ରହର ସ୍ମାରକୀ । ତାଙ୍କ ମୃତ୍ୟୁ ପରେ କେହି କେହି ବିଶିଷ୍ଟ ବୋଲାଉଥିବା ବ୍ୟକ୍ତି ଦାବି କରୁଛନ୍ତି, ନବ ବାବୁ ଯାହା ଭାଷଣ ଦିଅନ୍ତି, ତାକୁ ସେ ଲେଖିଛନ୍ତି ବୋଲି । ଏହା ତାଙ୍କର ତୀକ୍ଷ୍ଣ ମନୀ, ତାଙ୍କର ମେଧା ପ୍ରତି ଅପମାନ ।

ବିଧାନସଭାର ସେ ନେତା । ବିରୋଧୀଦଳ ପକ୍ଷରୁ ତାଙ୍କ ସରକାରର ନୀତି ଓ କାମଦାମ ଉପରେ ଆକ୍ରମଣ । ସେ ଉତ୍ତର ଦେବେ । ତାହା ଅନ୍ୟ ପକ୍ଷରେ ଗ୍ରହଣୀୟ ନ ହେଲେ ବି; କିନ୍ତୁ ସେ ଉତ୍ତରରେ ଶାଳୀନତା, ଗାମ୍ଭୀର୍ଯ୍ୟ ଓ ଶିଷ୍ଟତା ଥିଲା । ଗାଳିଗୁଲଜ ନ ଥିଲା । ସେପରି ପରମ୍ପରା ଆଉ ବିଧାନସଭାରେ ଅଛି କି ?

୧୯୪୨ ଅଗଷ୍ଟ ୯ ତାରିଖ । ସେ ବମ୍ବେ ଏ. ଆଇ. ସି. ସି. ଯାଇ ନ ଥିଲେ । ସକାଳେ ଗିରଫ ହୁଅନ୍ତି କଟକ ଠାରେ । ଲୁଗା ପିନ୍ଧିବା ବାହାନାରେ ଖଣ୍ଡେ କାଗଜରେ ଓଡ଼ିଶାବାସୀ କ'ଣ କରିବେ ଓ କ'ଣ ନ କରିବେ ଦଫାଓ୍ୱାରି ପେନ୍‌ସିଲ୍‌ରେ ଲେଖି ଓଡ଼ିଶା ସାରା ବାଣ୍ଟିବାର ନିର୍ଦ୍ଦେଶ ପଠାଇଲେ ବାହାରକୁ । ତାହାହିଁ ହେଲା, ମାତ୍ର ସେ କେବେ ହେଲେ ଦାବି କରିନାହାନ୍ତି ଯେ ଅଗଷ୍ଟ ଆନ୍ଦୋଳନରେ କ'ଣ କରାଯିବ ଓ କ'ଣ ନ କରାଯିବ, ତାହା ତାଙ୍କର ନିର୍ଦ୍ଦେଶ ଏବଂ ଓଡ଼ିଶାରେ ତାହା ସ୍ୱାଧୀନତା ସଂଗ୍ରାମୀମାନଙ୍କ ପାଖରେ ପହଞ୍ଚିଛି । ସେପରି କୃତିତ୍ୱ ସେ ନେବାକୁ ଚାହିଁନାହାନ୍ତି ।

ଚମ୍ପତିମୁଣ୍ଡା ବିଦ୍ୟାଳୟରେ ସେ ଅବୈତନିକ ଶିକ୍ଷକତା କରିଛନ୍ତି; କିନ୍ତୁ ମଣିଷ ଗଢ଼ିପାରିଲେ ନାହିଁ ବୋଲି ଖେଦ କରିଛନ୍ତି । ବାଜିରାଉତ ଛାତ୍ରାବାସରେ ପତ୍ନୀ ମାଳତୀ ଦେବୀଙ୍କ ସଙ୍ଗରେ ସେ ଆଦିବାସୀ ପୁଅଝିଅଙ୍କୁ ମଣିଷ କରିବା ପାଇଁ ତିଳ ତିଳ ପ୍ରାଣ ଉଜାଡ଼ି ଦେଇଛନ୍ତି । ନିଜର ପୁଅ, ଝିଅ, ନାତିଙ୍କୁ ହରାଇଛନ୍ତି । ଶାଗ, ପଖାଳ, ଗୁହାରେ ସେ ସନ୍ତୁଷ୍ଟ । ଅନୁଗୁଳରେ କଲେଜରେ ହେଉ ବା ଅନ୍ୟ ସଭାସମିତିରେ ହେଉ, ସେ ଗୋଟିଏ କୋଣରେ ବସି ସବୁ ଶୁଣିବେ । ଯେମିତି ଧୀରସ୍ଥିର ଶ୍ରୋତା, ଅନୁସନ୍ଧିତ୍ସୁ ଛାତ୍ର ।

ସବୁଦିଗରୁ ସେ ଥିଲେ ଏକ ଅଶାନ୍ତ ଝଡ଼ । ଏକ ଅତୃପ୍ତ ବିପ୍ଳବୀ । ତାଙ୍କୁ ତାଙ୍କ ସହକର୍ମୀ, ସହଯୋଦ୍ଧା, ମିତ୍ର-ଶତ୍ରୁ ଯାହା କହନ୍ତୁ, ଯେପରି ସମାଲୋଚନା କରନ୍ତୁ, ସେଥିରେ ସେ ବିଚଳିତ ହେଉ ନ ଥିଲେ ।

କବିଗୁରୁ ରବୀନ୍ଦ୍ରଙ୍କ ସାନ୍ନିଧ୍ୟ ଓ ଶିଳ୍ପତ୍ୱର ପ୍ରଭାବ ତାଙ୍କ ଉପରେ । ରବୀନ୍ଦ୍ରନାଥଙ୍କର ପରି ଉତ୍ତରାୟଣ କୁଟୀର ପରି ବାଜିରାଉତ ଛାତ୍ରାବାସ ଆଗରେ ସରଳ, ନିରାଡ଼ମ୍ବର, ପ୍ରଶାନ୍ତ କୁଟୀରରେ ଜୀବନବ୍ୟାପୀ ସେହି ଅନ୍ୱେଷକ ପରିଣତ କାଳରେ ସକାଳୁ ଉଠି ତନ୍ନ ତନ୍ନ କରି ଖବରକାଗଜ ପଢ଼ିବା ଓ ମନେ ମନେ ହସିବା, ରାଗିବା, ଅସନ୍ତୋଷ ପ୍ରକାଶ କରିବା ଆଉ ଦେଖିବାକୁ ମିଳିବ ନାହିଁ । ସେହି ସ୍ମୃତିପ୍ରତି ମୋର ଗଭୀର ଅଶ୍ରୁଳ ଶ୍ରଦ୍ଧାଞ୍ଜଳି ।

———

# ଢେଙ୍କାନାଳ ଆନ୍ଦୋଳନର ବିଶେଷତ୍ୱ

**ବୈଷ୍ଣବ ଚରଣ ପଟ୍ଟନାୟକ**

ଆଜକୁ ୪୬ ବର୍ଷତଳେ ୧୯୩୮ ମସିହାରେ ଢେଙ୍କାନାଳରେ ଯେଉଁ ଐତିହାସିକ ଏବଂ ବୈପ୍ଳବିକ ପ୍ରଜାମଣ୍ଡଳ ଆନ୍ଦୋଳନ ହୋଇଥିଲା, ସେ ପ୍ରଜାମଣ୍ଡଳ ଆନ୍ଦୋଳନ, ସମାଜବାଦ ଆଦର୍ଶରେ ଚାଲିଥିଲା ।

୧୯୩୮ ବେଳକୁ ଅତ୍ୟାଚାରୀ ଢେଙ୍କାନାଳ ରାଜାର ପ୍ରଜାମାନଙ୍କ ଉପରେ ଯେଉଁ ଲୋମହର୍ଷଣକାରୀ, ଅକଥନୀୟ, ବର୍ବର ଅତ୍ୟାଚାର ଚାଲିଥିଲା, ଯାହା କି ଆଇମା' କାହାଣୀ ଭଳି ଆଜି ମଧ୍ୟ ଘରେ ଘରେ କୁହାହୋଇଥାଏ—କେତେକ କହନ୍ତି ଯେ, ଉକ୍ତ ଆନ୍ଦୋଳନ ଢେଙ୍କାନାଳର ଅତ୍ୟାଚାରୀ ରାଜା ବିରୁଦ୍ଧରେ ହୋଇଥିଲା ବୋଲି ଏହା କହିବା ଅପେକ୍ଷା ଢେଙ୍କାନାଳର ପ୍ରଜାମଣ୍ଡଳ ଆନ୍ଦୋଳନ "ଭାରତର ସ୍ୱାଧୀନତା ସଂଗ୍ରାମ" ଥିଲା କହିବା ଅଧିକ ଠିକ୍ ହେବ । ଢେଙ୍କାନାଳ ଆନ୍ଦୋଳନ ଯଦି କେବଳ ଢେଙ୍କାନାଳର ଅତ୍ୟାଚାରୀ ରାଜା ବିରୁଦ୍ଧରେ ହୋଇଥିଲା, ତେବେ ପ୍ରଜା ଆନ୍ଦୋଳନକୁ ଚପାଇବା ପାଇଁ ବ୍ରିଟିସ କାହିଁକି (କିଙ୍ଗ ସ୍ ଓନ ସ୍କଟିସ୍ ବର୍ଡ଼ରର) ନାମକ କେବଳ ଗୋରା ସିପାହୀଙ୍କୁ ନେଇ ଗଠିତ, ଗୋଟିଏ ଗୋରା ପଲଟଣ ଦଳ ଓ ଭାରତର ଅନ୍ୟାନ୍ୟ ଅଞ୍ଚଳରୁ ଗୋର୍ଖା ପଲଟଣ, ଡୋଗ୍ରା ପଲଟଣ. ପଞ୍ଜାବ, ହାଇଦ୍ରାବାଦ, ଛତିଶଗଡ଼ ପଲଟଣ ଦଳ ଆଦି ଢେଙ୍କାନାଳକୁ ପଠାଇଥିଲେ ? ବ୍ରିଟିସ୍ କାହିଁକି ମେଜର ପାହିଆ ଗୋରା ଜଣେ ଅତି ଉଚ୍ଚ ସାମରିକ ଅଫିସର ଯେ କି ପଲିଟିକାଲ ଏଜେଣ୍ଟ ଥିଲେ—ମେଜର ବେଜାଲ୍ ଗେଟ୍‌ଙ୍କୁ ପ୍ରଜା ଆନ୍ଦୋଳନକୁ ଦଳନ କରିବାକୁ ଢେଙ୍କାନାଳକୁ ପଠାଇଥିଲେ ? ସେତେବେଳେ ଯେଉଁ ପୋଲିସ୍‌ମାନେ ବାର ବରଷର ବାଳକ ବୀର ବାଜିରାଉତକୁ ଗୁଳି ଚଳାଇ ହତ୍ୟା କରିଥିଲେ ।

ଢେଙ୍କାନାଳ ପ୍ରଜାମଣ୍ଡଳ ଆନ୍ଦୋଳନକୁ ନବ ବାବୁ ସମାଜବାଦୀ ଲାଇନରେ ପରିଚାଳନା କରିଥିବାରୁ, ଆନ୍ଦୋଳନ ବେଳେ ବହୁ କଂଗ୍ରେସ ନେତା ଓ ଗାନ୍ଧୀବାଦୀ ନେତା, ଯେଉଁମାନେ କି "ସମାଜବାଦ"ର ବିରୋଧୀ ଥିଲେ, ସେତେବେଳେ ସେମାନେ ଢେଙ୍କାନାଳ ପ୍ରଜାମଣ୍ଡଳ ଆନ୍ଦୋଳନକୁ ସମର୍ଥନ କରୁ ନ ଥିଲେ ଏବଂ ଆନ୍ଦୋଳନର କ୍ଷତି ହେଲା ଭଳି ବିବୃତିମାନ ମଧ୍ୟ ଦେଉଥିଲେ ଏବଂ ନାନା କାମ ମଧ୍ୟ କରୁଥିଲେ । ଏହିପରି ବ୍ୟକ୍ତିମାନଙ୍କ ମଧ୍ୟରେ ମହତାବ ବାବୁ ଜଣେ ଥିଲେ । ପ୍ରଜା ଆନ୍ଦୋଳନ ବେଳେ, ନବ ବାବୁ ସେତେବେଳେ ପ୍ରଜା ଆନ୍ଦୋଳନକାରୀଙ୍କ ସଙ୍ଗରେ ରହି, ଆନ୍ଦୋଳନକାରୀଙ୍କୁ ନେତୃତ୍ୱ ଦେଉଥିଲେ ଓ ଅତ୍ୟାଚାରୀ ରାଜାର ମୁକାବିଲା କରୁଥିଲେ, ମହତାବବାବୁ ସେତେବେଳେ ରାଜନଅରରେ ରାଜା ସଙ୍ଗେ ବସି, ସାମନ୍ତବାଦୀ ଓ ପୁଞ୍ଜିବାଦୀ ଲାଇନ୍‌ରେ ରାଜା-ପ୍ରଜାର ଦ୍ୱନ୍ଦ୍ୱକୁ ରାଜାର ସ୍ୱାର୍ଥ ରହିଲା ଭଳି ସାଲିସ ରାସ୍ତାରେ ନେଇଯିବାକୁ ଚେଷ୍ଟା କରୁଥିଲେ । ଢେଙ୍କାନାଳ ଆନ୍ଦୋଳନ ସମାଜବାଦୀ ଲାଇନ୍‌ରେ ଚାଲିଥିଲା ବୋଲି ଆଜି ମଧ୍ୟ ସେଇ ପ୍ରଜା ଆନ୍ଦୋଳନ, କେତେକ ପୁରାତନ କଂଗ୍ରେସ ନେତା ଓ ଗାନ୍ଧୀବାଦୀ ନେତାଙ୍କ ପାଇଁ ଚକ୍ଷୁଶୂଳ । କହିବା ବାହୁଲ୍ୟ ଯେ ଯେଉଁମାନେ ସ୍ୱାଧୀନତା ସଂଗ୍ରାମର ବିରୋଧୀ ଥିଲେ, ବ୍ରିଟିସ୍‌ର ଗୋଲାମ ଥିଲେ, ସେମାନଙ୍କ ପାଇଁ ଓ ଆଜିର ବହୁ ନବ୍ୟ କଂଗ୍ରେସ ନେତାଙ୍କ ପାଇଁ, ସେତେବେଳର ପ୍ରଜାମଣ୍ଡଳ ଆନ୍ଦୋଳନ ଚକ୍ଷୁଶୂଳ । ସେମାନେ ଉଡ଼େଇ ଦେବାକୁ ଚାହାଁନ୍ତି ଯେ ଢେଙ୍କାନାଳରେ "ସ୍ୱାଧୀନତା ସଂଗ୍ରାମ" ହୋଇନାହିଁ । ଯଦି ହୋଇଛି, ତେବେ ତାହା ବ୍ରିଟିସ୍ ବିରୁଦ୍ଧରେ ନୁହେଁ; କିନ୍ତୁ କେବଳ ଢେଙ୍କାନାଳ ବା ଓଡ଼ିଶା ନୁହେଁ ସାରା ଭାରତ ଏବଂ ପୃଥିବୀର ଜନସାଧାରଣଙ୍କ ରହିବା ହେତୁ ଢେଙ୍କାନାଳ ପ୍ରଜାମଣ୍ଡଳ ଆନ୍ଦୋଳନ ଓ ବାଜିରାଉତ ଘଟଣା ପୃଥିବୀପୃଷ୍ଠରେ ମହାସ୍ଥାନ୍ ଓ ଗୌରବଉଜ୍ଜ୍ୱଳ ହୋଇ ମୁଣ୍ଡ ଟେକି ଛିଡ଼ା ହୋଇଛି ।

ଢେଙ୍କାନାଳ ପ୍ରଜା ଆନ୍ଦୋଳନର ଘଟଣା ମଧ୍ୟରେ ଗୋଟିଏ ବୃହତ୍ତ୍ଵ ଘଟଣା ଘଟେ ୧୯୩୮ ମସିହା ସେପ୍ଟେମ୍ବର ୧ ତାରିଖ ଦିନ। ସେ ଦିନ କଟକ ଜିଲ୍ଲାରେ କେନାପୁରଠାରେ, ମୋଗଲବନ୍ଦୀ ଅଞ୍ଚଳର କୃଷକ ସଭାର ଆହ୍ଵାନରେ ଯେଉଁ ଚାଷୀମେଳା ହୋଇଥିଲା ଓ ଯେଉଁ ସଭାରେ ୫୦ ହଜାର ଚାଷୀ ଯୋଗ ଦେଇଥିଲେ, ସେ ସଭାରେ ଢେଙ୍କାନାଳରୁ ପ୍ରାୟ ୧୦ ହଜାରରୁ ଊର୍ଦ୍ଧ୍ଵ ପ୍ରଜା ଯୋଗଦେଇ ଖୋଲାଖୋଲି ପ୍ରଜାମଣ୍ଡଳ ଅନୁଷ୍ଠାନ ଗଠନ କରିଥିଲେ। ଏହାର ୧୨ ଦିନ ପରେ, ୧୯୩୮ ସେପ୍ଟେମ୍ବର ୧୨ ତାରିଖରେ ଢେଙ୍କାନାଳ ଟାଉନ୍‌ରେ ୫୦ ହଜାର ଢେଙ୍କାନାଳ ପ୍ରଜା ଅତ୍ୟାଚାରୀ ରାଜାର ନଅର ଘେରାଉ କରିଥିଲେ। ସେ ଦିନ ପ୍ରଜା ଆନ୍ଦୋଳନ ସମ୍ପର୍କରେ ପ୍ରଜାମାନଙ୍କ ଉପରେ ପ୍ରଥମ ଗୁଳିମାଡ଼ ଆରମ୍ଭ ହୁଏ; କିନ୍ତୁ ଅତ୍ୟାଚାରୀ ରାଜା ପ୍ରଜାଶକ୍ତି ଆଗରେ ପଳାୟନ କରିଥିଲା। ଏପରି ଖୋଲାଖୋଲି ଘଟଣାର ବହୁ ପୂର୍ବରୁ ୧୯୩୮ ଅଗଷ୍ଟ ମାସ ୧୧ ତାରିଖ ଦିନ ଢେଙ୍କାନାଳର ଯେଉଁ ଦାବୀପତ୍ର ଛପାଯାଇ ବଣ୍ଟନ ହୋଇଥିଲା, ଯେଉଁ ଦାବୀପତ୍ରର ମୁଖ୍ୟ ଦାବୀ ଥିଲା 'ଦାୟିତ୍ଵମୂଳକ ଆଇନ୍' ଓ ନାଗରିକ ସ୍ଵାଧୀନତା, ସେ ଦାବୀପତ୍ରର ଲେଖକ ଥିଲେ ନବ ବାବୁ। ଏହି ଦାବୀପତ୍ର ଚାରିଆଡ଼େ ବିଜୁଳି ଚମକ ଆଣିଥିଲା। ଏପରି ଦାବୀପତ୍ର ବଣ୍ଟନ ପରେ କେନାପୁରଠାରେ ୫୦ ହଜାର ଚାଷୀମାନଙ୍କ ସମ୍ମୁଖରେ ଢେଙ୍କାନାଳର ଯେଉଁ ପ୍ରଜାମଣ୍ଡଳ ଜନ୍ମ ନେଇଥିଲା. ଜନ୍ମବେଳେ ପ୍ରଧାନ ଧାତ୍ରୀ ଥିଲେ ନବ ବାବୁ। ୧୯୩୮ ସେପ୍ଟେମ୍ବର ୧୨, ଦିନ ୫୦ ହଜାର ଢେଙ୍କାନାଳ ପ୍ରଜା ଅତ୍ୟାଚାରୀ ଢେଙ୍କାନାଳର ରାଜାର ନଅର ଘେରାଉ କରିଥିଲେ ଓ ଢେଙ୍କାନାଳ ରାଜା ପଳାୟନ କରିଥିଲେ। ତା'ପରେ ପରେ ବ୍ରିଟିସ୍‌ର ଗୋରା ପଲ୍‌ଟଣ ଓ ଅନ୍ୟାନ୍ୟ ପଲ୍‌ଟଣ ଦଳ ଆସି ଲୋମହର୍ଷଣକାରୀ ବର୍ବର ଦମନଲୀଳା ଚାଲିଥିଲା. ତାହା ଅତି କମ୍‌ରେ ୨ ମାସ ଯାଏ ଚାଲିଥିଲା। ୧୯୩୮ ସେପ୍ଟେମ୍ବର ୧୨ ତାରିଖଠାରୁ ୧୯୩୮ ନଭେମ୍ବର ୧୧ ତାରିଖ ୨ ମାସ ମଧ୍ୟରେ ସାତ ସାତ ବାର ଗୁଳିହୋଇ ଅସଂଖ୍ୟ ପ୍ରଜାଙ୍କୁ ଗୁଳି ମାଡ଼ରେ ହତ୍ୟା ଓ ଆହତ କରାଯାଇଥିଲା। ୧୯୩୮ ଅକ୍ଟୋବର ୧୧ ତାରିଖ ଦିନ ବାର ବରଷର ବାଳକବୀର ବାଜି ରାଉତକୁ ହତ୍ୟା କରାଯାଇଥିଲା। ଗାଁକୁ ଗାଁ ଚଢ଼ାଉ କରାଯାଇ ବ୍ୟାପକଭାବେ ଅସଂଖ୍ୟ ସ୍ତ୍ରୀମାନଙ୍କର ଇଜ୍ଜତ ହରଣ ଭଳି ଅକଥନୀୟ ବର୍ବର ଦମନଲୀଳା ଚଳାଯାଇଥିଲା। ଏହି ସମୟରେ ଯେତେବେଳେ ପ୍ରଜାମାନଙ୍କର ମନୋବଳକୁ ଆହୁରି ଦୃଢ଼ କରିବା ଆବଶ୍ୟକ ପଡ଼ିଥିଲା ଓ ଢେଙ୍କାନାଳରେ ସତ୍ୟାଗ୍ରହ କରିବାର ଆବଶ୍ୟକତା ପଡ଼ିଥିଲା, ସେତେବେଳେ ପ୍ରଥମ ସତ୍ୟାଗ୍ରହ ବାହିନୀର ନେତୃତ୍ଵ ନେଇ ନବ ବାବୁ ଢେଙ୍କାନାଳ ସହରରେ ଯାଇଁ ପହଞ୍ଚିଥିଲେ। ୧୯୩୮ ଡିସେମ୍ବର ୩ ତାରିଖ ଦିନ ନବ ବାବୁ ସତ୍ୟାଗ୍ରହୀ ହିସାବରେ ଢେଙ୍କାନାଳ ସହରରେ ପହଞ୍ଚିବା ପରେ ସେଠାରେ ନବ ବାବୁଙ୍କୁ ଗିରଫ କରାଯାଇ ଢେଙ୍କାନାଳ ଜେଲକୁ ପଠାଇ ଦିଆଯାଇଥିଲା। ସାଧାରଣ ଭାବେ ଯେତେବେଳେ ଅତ୍ୟାଚାରୀ ଢେଙ୍କାନାଳ ରାଜାର ରାଜ୍ୟରେ ମାଛି ପଡ଼ିଲେ ନବଖଣ୍ଡ ହେଉଥିଲା, ଗର୍ଭିଣୀ ଗାଈ ବାଟ ଛାଡ଼ି ଦେଉଥିଲା, ଦିନ ଦ୍ଵିପ୍ରହରରେ ଚାରିଆଡ଼େ ଭୂତପ୍ରେତ ଡେଉଁଥିଲେ ଏବଂ ପ୍ରଜା ଆନ୍ଦୋଳନ ଯୋଗୁଁ ଦମନଲୀଳା ଚରମ ରୂପ ଧାରଣ କରିଥିଲା, ସେତେବେଳେ ନବ ବାବୁ ଯେ ପ୍ରଥମ ସତ୍ୟାଗ୍ରହୀ ଭାବେ ଢେଙ୍କାନାଳ ସହରରେ ପ୍ରବେଶ କରିଥିଲେ ଏହା ନବ ବାବୁଙ୍କ ପକ୍ଷରେ କମ୍ ସାହସର କଥା ନ ଥିଲା।

ଢେଙ୍କାନାଳବାସୀଙ୍କ ପକ୍ଷରେ ନବ ବାବୁ ଯେ ଜଣେ ଅତି ଆପଣାର ଲୋକ, ଏହା ଯେ କେହି ମୁକ୍ତକଣ୍ଠରେ କହିବ। ମାଳତୀ ଦେବୀଙ୍କୁ ବାଦ ଦେଇ ନବ ବାବୁଙ୍କ କଥା କୁହାଯାଇ ନ ପାରେ। କାୟା ସଙ୍ଗରେ ଛାୟା ଭଳି, ନବ ବାବୁଙ୍କ ରାଜନୈତିକ ଜୀବନରେ ନବ ବାବୁଙ୍କ ସଙ୍ଗରେ ମାଳତୀ ଦେବୀ ରହି ଢେଙ୍କାନାଳ ପ୍ରଜା ଆନ୍ଦୋଳନକୁ ପରିଚାଳନା କରିଛନ୍ତି। ଢେଙ୍କାନାଳ ଆନ୍ଦୋଳନର ଆତ୍ମା ବାଜି ରାଉତକୁ ଯିଏ ଆଜିଯାଏ କେହି ଟେକି ରଖିଥିଲା ସେ ହେଉଛନ୍ତି ନବ ବାବୁ ଏବଂ ଆଜି ଯିଏ ବାଜି ରାଉତର ବାନାକୁ କେହି ଉଚ୍ଚରୁ ଉଚ୍ଚତର ଉଡ଼ାଇ ରଖିଛି, ସେ ହେଉଛନ୍ତି ମାଳତୀ ଦେବୀ। ସେମାନଙ୍କୁ ଭକ୍ତିପୂତ ପ୍ରଣାମ।

---

# ପ୍ରଗତିର ଏକ ସମନ୍ୱିତ ବ୍ୟକ୍ତିତ୍ୱ

**ମଦନମୋହନ ସାହୁ**

ଗଣିତ ବରେଣ୍ୟ ନବକୃଷ୍ଣ ଚୌଧୁରୀଙ୍କ ଜୀବନରେ ଜ୍ଞାନ-ବିଜ୍ଞାନଯୁକ୍ତ ଆଧୁନିକ ଯୁଗର ସମସ୍ତ ପ୍ରକାର ପ୍ରଗତିଶୀଳ ବିଚାରଧାରାର ସୁସଂଗତ, ସୁସଙ୍ଗତ ସମନ୍ୱୟ ଘଟିଥିଲା । ତାହାଙ୍କର ଆଚରଣ ଆଦର୍ଶ ଅନୁଗତ ଥିଲା । ଏହା ତାହାଙ୍କର ଦୈନନ୍ଦିନ ଚାଲିଚଳନ, ଅପରର ବ୍ୟବହାର ତଥା ଆହାର ବ୍ୟବହାରରେ ପରିସ୍ଫୁଟ ହେଉଥିଲା । ସେ ଅକୈତବ ଥିଲେ । ଶାସ୍ତ୍ର ଅଧ୍ୟୟନ ତାହାଙ୍କର ଏକମାତ୍ର ବିଳାସ ଥିଲା । ନୂତନ ପୁରାତନ ବହୁ ଗ୍ରନ୍ଥ ଅଧ୍ୟୟନ କରିଥିଲେ ମଧ୍ୟ ସେ ଗ୍ରନ୍ଥୀ ନ ଥିଲେ । ସମସ୍ତ ବାଦକୁ ଆତ୍ମସାତ୍ କରି ମଧ୍ୟ ସେ କୌଣସି ବାଦର ବାଦୀ ବା ପ୍ରତିବାଦୀ ନ ଥିଲେ । ହଂସବତ୍ ପ୍ରତ୍ୟେକ ବାଦରୁ ବିବାଦକୁ ବାଦ ଦେଇ ସେ ବାଦମୁକ୍ତ ରହୁଥିଲେ । ତେଣୁ ନବ ବାବୁଙ୍କର ପରିମାର୍ଜିତ ଗାଣିତିକ ଚିନ୍ତନରେ ଚିରନ୍ତନ ନବୀନତା ରହିଛି । ନବ ବାବୁଙ୍କର ଦେହାବସାନ ପରେ ତାଙ୍କଠାରୁ ତାଙ୍କର ମୁକ୍ତ ଚିନ୍ତନ ଶୁଣିବା ଓ ତାଙ୍କ ସହିତ ଚର୍ଚ୍ଚା କରିବାର ମଧ୍ୟ ଅବସାନ ହେଲା ।

ମଧ୍ୟଯୁଗୀୟ ସାମନ୍ତବାଦର ପରେ ପରେ ପାଶ୍ଚାତ୍ୟ ଭୂଖଣ୍ଡରେ ଯାନ୍ତ୍ରିକ ଶିଳ୍ପ ବିପ୍ଳବ ଘଟି ତହିଁରୁ ପୁଞ୍ଜିବାଦ, ଉପନିବେଶବାଦ ଓ ସାମ୍ରାଜ୍ୟବାଦ ଜନ୍ମ ହେଲା । ମନୁଷ୍ୟ ଦେହରେ ବାତ, କଫ, ପିତ୍ତ ତ୍ରିଦୋଷ ଘୋଟିବା ନ୍ୟାୟରେ ମାନବ ସମାଜକୁ ପୁଞ୍ଜିବାଦ, ଉପନିବେଶବାଦ ଓ ସାମ୍ରାଜ୍ୟବାଦ ଅସ୍ତବ୍ୟସ୍ତ କଲା ଓ ଆଜି ମଧ୍ୟ ବିଭିନ୍ନ ରୂପରେ କରୁଛି । ଶୋଷଣ ଓ ଶାସନ ପ୍ରଧାନ ଅନ୍ୟାୟ, ଅତ୍ୟାଚାର, ଅନାଚାର ଓ ଅବିଚାରରେ ପୃଥିବୀର ଶାନ୍ତିପୂର୍ଣ୍ଣ କୃଷି ସଭ୍ୟତାର ବିପର୍ଯ୍ୟୟ ଘଟିଲା । ଏହି ସବୁ ଅନିଷ୍ଟରୁ ଉଦ୍ଧାର ପାଇବା ପାଇଁ ପାଶ୍ଚାତ୍ୟ ଜଗତର କେତେକ ସମବେଦନଶୀଳ ବ୍ୟକ୍ତି ଚିନ୍ତନ ଆରମ୍ଭ କଲେ । ପ୍ରତ୍ୟେକ କ୍ରିୟାର ପ୍ରତିକ୍ରିୟା ବିଜ୍ଞାନ ସମ୍ମତ ଅବଶ୍ୟମ୍ଭାବୀ ପରିଣତି । ପୁଞ୍ଜିବାଦର ପ୍ରତିକ୍ରିୟାରୁ ସମାଜବାଦ ଓ ସାମ୍ୟବାଦର ଜନ୍ମ । ସମାଜବାଦ ଓ ସାମ୍ୟବାଦ ଗୋଟିଏ ଗଛର ଦୁଇଟି ଡାଳ । ଏହି ଯମଜ ବିଚାରସ୍ରୋତ ଜନମାନସକୁ ଆଲୋଡ଼ିତ କଲା । ବିଶେଷ କରି ପ୍ରଥମ ମହାଯୁଦ୍ଧରେ ରୁଷିଆରେ ସାମ୍ୟବାଦୀ ସରକାର ପ୍ରତିଷ୍ଠିତ ହେବାରୁ ତାହା ବିଭିନ୍ନ ଦେଶର ଯୁବସମାଜକୁ ଆକୃଷ୍ଟ କଲା । ଏହା ଅବଧିର ତିରିଶ ବର୍ଷ ପୂର୍ବରୁ ବଣିକ ବୃତ୍ତିକ ଉପନିବେଶବାଦୀ ଇଂରେଜ ସାମ୍ରାଜ୍ୟ କବଳରୁ ଭାରତ ମୁକ୍ତ ହେବାର ଯେଉଁ ଦ୍ୱିଧାଯୁକ୍ତ କ୍ଷୀଣ ଚେଷ୍ଟା କରିଆସୁଥିଲା, ଦକ୍ଷିଣ ଆଫ୍ରିକାର ବିଜୟୀ ରଥୀ, ଅହିଂସକ ସଂଗ୍ରାମୀ ସତ୍ୟାଗ୍ରହୀ ମହାତ୍ମା ଗାନ୍ଧୀ ୧୯୧୫ ରେ ଭାରତକୁ ଫେରିବା ପରେ କଂଗ୍ରେସର ମୋଡ଼ ବଦଳି ଜାତୀୟ କଂଗ୍ରେସ ରୂପନେଇ ସ୍ୱାଧୀନତାପ୍ରାପ୍ତି ପାଇଁ ଅଭିନବ ଅସହଯୋଗ ଆନ୍ଦୋଳନରେ ଅଭିକ୍ରମ ପ୍ରକାଶ କଲା । ସୁପ୍ତ ଭାରତବାସୀଙ୍କ ମୋହ ନିଦ୍ରା ଭାଙ୍ଗିଲା । ଗାନ୍ଧୀଜୀଙ୍କ ଅସହଯୋଗ ଡାକରାରେ ଦେଶର ବହୁ ବୁଦ୍ଧିଜୀବୀ ଓ ଛାତ୍ର ସମେତ ସାଧାରଣ ନରନାରୀ ଅସହଯୋଗ ଆନ୍ଦୋଳନରେ ଝାସ ଦେବାକୁ ବାହାରି ପଡ଼ିଲେ । ଦେଶର ଅନେକ ଖ୍ୟାତିସମ୍ପନ୍ନ ଓକିଲ ବାରିଷ୍ଟର ନିଜ ନିଜର ପେଶା ଛାଡ଼ିଲେ, ସରକାରୀ କର୍ମଚାରୀ ଇସ୍ତଫା ଦେଲେ, ଅସୂର୍ଯ୍ୟଂପଶ୍ୟା ମହିଳା ପର୍ଦ୍ଦା ଛାଡ଼ି ପଦାକୁ ଆସିଲେ ଓ ତରୁଣ-ତରୁଣୀ ତଥା ଯୁବକ ଯୁବତୀ ଦେଶମାତୃକାର ମୁକ୍ତି ପାଇଁ ସ୍କୁଲ କଲେଜ ଛାଡ଼ିଲେ । ଏହି ମହାସ୍ରୋତରେ ଭାସିଗଲେ କଲେଜର କୃତବିଦ୍ୟ ମେଧାବୀ ଛାତ୍ର ନବବାବୁ । ନବ ବାବୁ ଆସିଲେ ଓ ଆଉ କେବେ ଫେରିଲେ ନାହିଁ । ଜୀବନର ଶେଷ ନିଃଶ୍ୱାସ ଥିବା ପର୍ଯ୍ୟନ୍ତ ଦେଶ ଓ ଦଶର ସେବା ଓ ମାନବ ସମାଜର ହିତାର୍ଥେ ଚିନ୍ତା ଓ ଚିନ୍ତନରେ ଲାଗି ରହିଲେ । ୧୯୦୧ ନଭେମ୍ବର ୨୩ ତାରିଖରେ ସେ ଜନ୍ମହୋଇ ୧୯୮୪ ଜୁନ ୨୪ ତାରିଖ ଭୋର ୬ ଘଣ୍ଟା ୪୫ ମିନିଟରେ ବୟାଅଶୀ ବର୍ଷ ସାତ ମାସ ବଞ୍ଚିରହି ମୃତ୍ୟୁବରଣ କଲେ । ଅଳ୍ପ କେତେଟି ଦିନ ମାତ୍ର ହୃଦ୍‌ରୋଗରେ ଆକ୍ରାନ୍ତ ହୋଇ ଅଚାନକ ହୃଦ୍‌କ୍ରିୟା ବନ୍ଦ ହୋଇଗଲା । ନବ ବାବୁ କଲେଜ ପାଠ ଛାଡ଼ିବା ପରେ ଅବିରାମ ଭାବରେ ସକ୍ରିୟ ଭାବରେ କୌଣସି ନା କୌଣସି କାର୍ଯ୍ୟରେ ଲାଗି-

ରହୁଥିଲେ । ସେ ସାବରମତୀ ଆଶ୍ରମକୁ ଯାଇ କଠିନରୁ କଠିନ ପରିଶ୍ରମ କରୁଥିଲେ । ସାବରମତୀରୁ ଫେରି ଓ ରବୀନ୍ଦ୍ର-ଠାକୁରଙ୍କ ଶାନ୍ତିନିକେତନରେ କିଛି ଦିନ ରହି ଗ୍ରାମ ଅର୍ଥନୀତି ଅଧ୍ୟୟନ କରି ସେ କଟକ ଜିଲ୍ଲାର ଅଣଖିଆ ଠାରେ ପରିତ୍ୟକ୍ତ ଅନାବାଦୀ ଜମି ଉପରେ ନିଜେ କୃଷକ ପାଲଟି ଗରିବ ଚାଷୀ ଓ ହରିଜନମାନଙ୍କ ସହିତ ସମରୂପ ହୋଇ କୃଷକ କାମ କଲେ । ସାଧାରଣ ଜନଜୀବନ ସହିତ ଓତପ୍ରୋତ ଭାବରେ ସେ ଯେପରି ମିଶି ପାରୁଥିଲେ, ତାହାଙ୍କର ତୁଲ୍ୟ ନେତାଙ୍କ କଥା ଛାଡ଼ନ୍ତୁ; ମୋ ପରି ସାଧାରଣ କର୍ମୀ ମଧ୍ୟ ମିଶି ପାରିବେ ନାହିଁ । ଏହି କଥା ନବ ବାବୁଙ୍କ ସାହଚର୍ଯ୍ୟରେ ଦୀର୍ଘ ପଚିଶ ବର୍ଷ ମୁଁ ମର୍ମେ ମର୍ମେ ଅନୁଭବ କରିଛି । ସମାଜବାଦ ଅର୍ଥ ସମାଜର ସାଧାରଣରୁ ସାଧାରଣ ଲୋକଙ୍କ ମଧ୍ୟରୁ ନିଜକୁ ଏକ ମନେ କରିବା । ଏହା ନବ ବାବୁଙ୍କ ଜୀବନରେ ଯେତିକ ପରିମାଣରେ ବହୁଳ ଭାବରେ ଦେଖାଯାଉଥିଲା, ଆଉ କାହାରିଠାରେ ଦେଖିବାର ସୁଯୋଗ ଅନ୍ତତଃ ଦେଖିବାକୁ ମିଳି ନାହିଁ । ସର୍ବୋପରି ଆନ୍ଦୋଳନରେ ଯୋଗ ଦେବା ପରେ ବିଗତ ତିରିଶ ବର୍ଷ ଧରି ଭାରତର ବହୁ ନେତା, କେନ୍ଦ୍ରର ପ୍ରଧାନମନ୍ତ୍ରୀ, ମନ୍ତ୍ରୀ, ରାଜ୍ୟସ୍ତରୀୟ ମୁଖ୍ୟମନ୍ତ୍ରୀଙ୍କୁ ଅତି ପାଖରୁ ଦେଖିଛି, ତାଙ୍କ ସାହଚର୍ଯ୍ୟରେ ଆସିଛି; ମାତ୍ର ନବ ବାବୁଙ୍କ ପରି ନିରାଡ଼ମ୍ବର ନିରହଙ୍କାର ସରଳ ଜୀବନ ସମ୍ବଳିତ ଲୋକ ଅତି କମ୍ । ସେ ନିଜକୁ ସାଧାରଣ ଜନତା ସ୍ତରକୁ ନେଇ ବା ଡିକ୍ଲାସଡ୍ କରି ସମାଜବାଦ ଆଦର୍ଶରେ ଅଦ୍ୱିତୀୟ ଥିଲେ ।

ଭାରତର ଯୁବସମାଜ ମାର୍କସବାଦ ପ୍ରତି ଆକୃଷ୍ଟ ହୋଇ କେତେ ଲୋକ ସାମ୍ୟବାଦୀ ଦଳ ୧୯୨୪-୨୫ ରେ ଗଢ଼ିଲେ; କିନ୍ତୁ ସାମ୍ୟବାଦୀ ଦଳ ବା କମ୍ୟୁନିଷ୍ଟ ପାର୍ଟି ଭାରତୀୟ ଜାତୀୟ ସ୍ରୋତରୁ ସବୁବେଳେ ଅଲଗା ରହି ଆସିଛନ୍ତି । ଏହାର କାରଣ ସୁସ୍ପଷ୍ଟ । ସାମ୍ୟବାଦୀ ଦଳ ରୁଷିଆ ଇଙ୍ଗିତରେ ମହାତ୍ମା ଗାନ୍ଧୀଙ୍କୁ ପ୍ରତିକ୍ରିୟାଶୀଳ ଭାବରେ ସମାଲୋଚନା କଲେ । ଗାନ୍ଧୀଜୀ ସମାଜବାଦ ବା ସାମ୍ୟବାଦର ଲକ୍ଷ୍ୟ ସହିତ ଦ୍ୱିମତ ନ ଥିଲେ ମଧ୍ୟ ବାହାର ପନ୍ଥା ସହିତ ସମ୍ପୂର୍ଣ୍ଣ ଏକମତ ନ ଥିଲେ । ପ୍ରଥମରେ ଗାନ୍ଧୀଜୀଙ୍କର ସଂଗ୍ରାମର ପ୍ରଧାନ ଲକ୍ଷ୍ୟ ଥିଲା ଭାରତର ସ୍ୱାଧୀନତା; ତେଣୁ ସେ ଭାରତର ସ୍ୱାଧୀନତା ପାଇଁ ସମସ୍ତ ଭାରତବାସୀଙ୍କର ସହଯୋଗ କାମନା କରିଥିଲେ ଓ ଭାରତର ରାଜା ମହାରାଜା, ଜମିଦାର ଧନୀ ଆଦିଙ୍କ ଜାତି-ଧର୍ମ-ଭାଷା ଗୋଷ୍ଠୀ ନିର୍ବିଶେଷରେ ସମସ୍ତଙ୍କୁ ଆହ୍ୱାନ ଦେଉଥିଲେ ଓ ଏହି ଆହ୍ୱାନ ବହୁଳାଂଶରେ ସଫଳ ହୋଇଥିଲା । ଦ୍ୱିତୀୟରେ ଗାନ୍ଧୀଜୀଙ୍କର ଅହିଂସକ ଆନ୍ଦୋଳନ ମାନବ ସମାଜକୁ ଏକ ନୂତନ ଦିଗ୍‌ଦର୍ଶନ ଦେଇଛି । ଆଦି ମାନବ ସମାଜର ଆରମ୍ଭରୁ ହିଂସାତ୍ମକ ବିପ୍ଳବ ଏକମାତ୍ର ପନ୍ଥା ବୋଲି ବିବେଚିତ ହୋଇଆସିଛି । ଅହିଂସକ ସମାଜ ପାଇଁ ହିଂସକ ବିପ୍ଳବ ବା ଶାନ୍ତି ପାଇଁ ଅଶାନ୍ତିର ପନ୍ଥା ଶାନ୍ତି ଆଣିପାରିନାହିଁ । ପକ୍ଷାନ୍ତରେ ପ୍ରତ୍ୟେକ ହିଂସ୍ରକ କାମ ପରବର୍ତ୍ତୀ ବୃହତ୍ତର ହିଂସା ପାଇଁ କ୍ଷେତ୍ର ପ୍ରସ୍ତୁତ କରିଛି । ପୂର୍ବବର୍ତ୍ତୀ ଯୁଦ୍ଧରେ ବ୍ୟବହୃତ ମାରଣାସ୍ତ୍ର ପରବର୍ତ୍ତୀ ଲଢ଼ାଇ ନିମନ୍ତେ ଆହୁରି ଭୟଙ୍କର ମାରଣାସ୍ତ୍ର ପ୍ରସ୍ତୁତ କରି ଆଜି ବିଶ୍ୱଧ୍ୱଂସକାରୀ ପରମାଣୁ ଅସ୍ତ୍ର ପର୍ଯ୍ୟନ୍ତ ଆସିଛି । ଏହି ଅବସ୍ଥାରୁ ମାନବ ସମାଜକୁ ରକ୍ଷା କରିବା ନିମନ୍ତେ ଦୂରଦ୍ରଷ୍ଟା ମାନବବାଦୀ ମହାତ୍ମା ଗାନ୍ଧୀ ହିଂସାର ପନ୍ଥା ଛାଡ଼ି ଅହିଂସା ମାର୍ଗର ପ୍ରୟୋଗରେ ବ୍ରତୀ ହେଲେ । ଗୋଟିଏ କଥାରେ, ସେ ହିଂସାତ୍ମକ ବିପ୍ଳବ ପନ୍ଥାକୁ ବିପ୍ଳବିତ କରି ତାହାର ବିକଳ୍ପ ରୂପେ ଅହିଂସକ ବିପ୍ଳବ ମାର୍ଗ ଦେଖାଇଛନ୍ତି । ଆଜି ପୃଥିବୀବାସୀ ଏହି ଅହିଂସା ମାର୍ଗକୁ ଅନୁସରଣ କରିବାକୁ ଚାହିଁଲେ ମଧ୍ୟ ହିଂସାର ମାର୍ଗକୁ ଛାଡ଼ି ଅହିଂସା ମାର୍ଗକୁ ଧରି ପାରୁନାହାନ୍ତି । କମ୍ବଳକୁ ଛାଡ଼ିବାକୁ ଚାହିଁଲେ ମଧ୍ୟ କମ୍ବଳ ଛାଡ଼ୁ ନାହିଁ । ଏ ସବୁର ସୂକ୍ଷ୍ମ ଆଲୋଚନାର ସ୍ଥାନ ଏହା ନୁହେଁ । ସଂକ୍ଷେପରେ ଭାରତର ସାମ୍ୟବାଦୀଗଣ ମୋଟାମୋଟିରେ ଭାରତ ସ୍ୱାଧୀନତା ସଂଗ୍ରାମରେ ଯେପରି ଯଥାର୍ଥ ଅଂଶଗ୍ରହଣ କରିନାହାଁନ୍ତି, ସେପରି ଭାରତୀୟ ଗଣତନ୍ତ୍ର ପ୍ରତିଷ୍ଠା ଓ ରକ୍ଷା ନିମନ୍ତେ ଉଚିତ କର୍ତ୍ତବ୍ୟ କରିନାହାଁନ୍ତି । ବରଂ ୧୯୭୫ର ଆପତ୍‌କାଳୀନ ଜରୁରୀ ଅବସ୍ଥାକୁ ଦୃଢ଼ ଭାବରେ ସମର୍ଥନ କରିନଲେ । ଯେଉଁମାନେ ଭାରତର ଗଣତାନ୍ତ୍ରିକ ଅଧିକାର ପାଇଁ ଦ୍ୱିତୀୟ ସ୍ୱାଧୀନତା ସଂଗ୍ରାମ କଲେ, ସେମାନେ ସାମ୍ୟବାଦୀଙ୍କ ଶତ୍ରବ୍ୟ ହେଲେ । ଓଡ଼ିଶାରେ ନବବାବୁଙ୍କ ନେତୃତ୍ୱରେ ଏହି ସଂଗ୍ରାମ ଚାଲିଥିଲା ଓ ପଞ୍ଚସ୍ତରି ବର୍ଷ ବୟସର ଜରାଜୀର୍ଣ୍ଣ ଶରୀରକୁ ବନ୍ଦୀ କରାଗଲା, ଯାହାର ଫଳରେ ବାରିପଦା ଜେଲର ଏକାନ୍ତ ବାସ ଯୋଗୁ ତାହାଙ୍କର ସ୍ୱାସ୍ଥ୍ୟ ବିପଦାପନ୍ନ ହେବାରୁ ତାଙ୍କୁ ମୁକ୍ତ କରାଗଲା ।

କମ୍ୟୁନିଷ୍ଟ ଦଳ ଗଠନ ସାଙ୍ଗକୁ ଜବାହରଲାଲ ଓ ସୁଭାଷ ବୋଷଙ୍କ ଦ୍ୱାରା କଂଗ୍ରେସରେ ମାର୍କସ୍‌ଙ୍କ ବିଚାରଧାରା ପ୍ରବେଶ କଲା ସତ; କିନ୍ତୁ ଗାନ୍ଧୀଜୀଙ୍କ ଦୂରଦର୍ଶିତା ଯୋଗୁଁ ଏହି ବିଚାର ଅଗ୍ରଗାମୀ ହୋଇପାରିଲା ନାହିଁ । ଏହାର କାରଣ ମହାତ୍ମା ଗାନ୍ଧୀ କୌଣସି ବାଦର ଦାସତ୍ୱ ସ୍ୱୀକାର କରୁ ନ ଥିଲେ ଓ ସେ ନିଜର କୌଣସି ବାଦର ପ୍ରଚାର କରୁ ନ ଥିଲେ ।

ତାହାଙ୍କର ଏହି ଉଦାର ନୀତି ଯୋଗୁଁ ସାମ୍ୟବାଦୀମାନେ କଂଗ୍ରେସ ଅନୁଷ୍ଠାନର ବାହାରେ ରହିଲେ, ମାତ୍ର ସମାଜବାଦୀମାନେ କଂଗ୍ରେସ ଭିତରେ ରହି କଂଗ୍ରେସ ସମାଜବାଦୀ ଦଳ ୧୯୩୪ ରେ ଗଠନ କଲେ । ଏହି ସମାଜବାଦୀ ଭାବଧାରାର ଓଡ଼ିଶାର ଭଗୀରଥ ଥିଲେ ନିତ୍ୟାନନ୍ଦୀୟ ନବ ବାବୁ । ଓଡ଼ିଶାରେ ସେ ସମାଜବାଦର କୁଳୀ ଖୋଲିଥିଲେ । ଏହାର ପ୍ରଥମ କାର୍ଯ୍ୟାଳୟ ବାଖରାବାଦର ତାହାଙ୍କର ନିଜର ବାସଗୃହରେ ଥିଲା । କଂଗ୍ରେସ ସୋସାଲିଷ୍ଟ ପାର୍ଟି ମଧ୍ୟରେ ଆଚାର୍ଯ୍ୟ ନରେନ୍ଦ୍ର ଦେବ, ଜୟପ୍ରକାଶ, ଲୋହିଆ ଓ ଅଶୋକ ମେହେଟ୍ଟା ଅଗ୍ରଗଣ୍ୟ ଥିଲେ । ଏମାନେ ମହାତ୍ମା ଗାନ୍ଧୀଙ୍କ ନୀତିକୁ ଗ୍ରହଣ କରି ନ ପାରି ମାର୍କସ ବିଚାରରେ ଆସ୍ଥାବାନ୍ ଥିଲେ । ମାତ୍ର ଏମାନେ ସମସ୍ତେ ମହାତ୍ମା ଗାନ୍ଧୀଙ୍କ ମୃତ୍ୟୁ ପରେ ଗାନ୍ଧୀ ବିଚାରର ଶ୍ରେଷ୍ଠତ୍ୱ ବୁଝିବାକୁ ଆରମ୍ଭ କଲେ; ମାତ୍ର ନବ ବାବୁଙ୍କ ଉପରୋକ୍ତ ସମାଜବାଦୀ ସାଥୀଙ୍କଠାରୁ କିଛି ବ୍ୟତିକ୍ରମ ଥିଲା ପରି ମନେହୁଏ । ନବ ବାବୁ ଗାନ୍ଧୀ ବିଚାରଧାରାକୁ ବୁଝି ତାକୁ ଜୀବନରେ ଓ ସେ ଯେଉଁ କ୍ଷେତ୍ରରେ ଯେତେବେଳେ ରହୁଥିଲେ, ତାହାର ପ୍ରୟୋଗ କରୁଥିଲେ । ସେ କେଉଁଠାରେ କେତେବେଳେ ଏହାର ପ୍ରୟୋଗ କରିଛନ୍ତି, ତାହାର ସବିଶେଷ ବିଶ୍ଳେଷଣାତ୍ମକ ଅଧ୍ୟୟନ ଦରକାର । ଏଠାରେ ମନେରଖିବାକୁ ହେବ ଯେ ଏହି ମାର୍କସପନ୍ଥୀ ସମାଜବାଦୀ ସାଥୀଗଣଙ୍କର ଗାନ୍ଧୀଜୀଙ୍କ ବ୍ୟକ୍ତିତ୍ୱ ପ୍ରତି ଯଥେଷ୍ଟ ସମ୍ମାନ ଓ ଆନୁଗତ୍ୟ ଥିଲା । ଗାନ୍ଧୀଜୀ ମଧ୍ୟ ସେମାନଙ୍କୁ ଶ୍ରଦ୍ଧା କରୁଥିଲେ । ଗୋଟିଏ ଉଦାହରଣରୁ ଜଣାପଡ଼ିବ ଯେ ୧୯୪୭ ରେ ଆଚାର୍ଯ୍ୟ ଜେ.ବି. କୃପାଳନୀ ଯେତେବେଳେ କଂଗ୍ରେସର ସଭାପତି ପଦରୁ ଇସ୍ତଫା ଦେଲେ, ଗାନ୍ଧୀଜୀ କଂଗ୍ରେସର ପରବର୍ତ୍ତୀ ସଭାପତି ପଦ ପାଇଁ ଆଚାର୍ଯ୍ୟ ନରେନ୍ଦ୍ର ଦେବଙ୍କ ନାମ ଉଲ୍ଲେଖ କରିଥିଲେ; କିନ୍ତୁ ଗାନ୍ଧୀଜୀଙ୍କ ବିଚାରଧାରା ତଥା ସମାଜବାଦ ବିଚାର ପ୍ରତି ଆନ୍ତରିକତାଶୂନ୍ୟ ପଣ୍ଡିତ ନେହେରୁ ଓ ସର୍ଦ୍ଦାର ପଟେଲ ଏହାକୁ ଚାହୁଁ ନ ଥିଲେ ଏବଂ ରାଜେନ୍ଦ୍ର ପ୍ରସାଦଙ୍କୁ ନିପୁଣତାର ସହିତ ସଭାପତି ପଦରେ ଥୋଇଲେ । ନରେନ୍ଦ୍ର ଦେବ ତୀକ୍ଷ୍ଣ ମେଧାସମ୍ପନ୍ନ ସମାଜବାଦୀ ମଧ୍ୟରେ ଅଗ୍ରଣୀ ଥିଲେ । ବୌଦ୍ଧ ଶାସ୍ତ୍ରରେ ତାହାଙ୍କର ଅସାଧାରଣ ପାଣ୍ଡିତ୍ୟ ଥିଲା । ୧୯୪୮ରେ ସେ ମୁକ୍ତକଣ୍ଠରେ ସ୍ୱୀକାର କଲେ ଯେ ସମାଜବାଦ ଗାନ୍ଧୀ ପନ୍ଥାରେ କେବଳ ସମ୍ଭବ । ୧୯୫୨ ରେ ସେ ଆଚାର୍ଯ୍ୟ କୃପାଳନୀଙ୍କ ସହ ପ୍ରଜା-ସମାଜବାଦୀ ଦଳ ଗଠନ କଲେ ଓ ୧୯୫୬ରେ ତାହାଙ୍କର ମୃତ୍ୟୁ ହେଲା ।

ଡକ୍ଟର ଲୋହିଆ ୧୯୫୫ରେ ପ୍ରଜା-ସମାଜବାଦୀ ଦଳରୁ ଅଲଗା ହୋଇ ରହିଲେ । ସେ ମୃତ୍ୟୁ ପର୍ଯ୍ୟନ୍ତ ଗାନ୍ଧୀଜୀଙ୍କ ବିକେନ୍ଦ୍ରିତ ରାଜନୀତି ଓ ବିକେନ୍ଦ୍ରିତ ଅର୍ଥନୀତିକୁ ଦୃଢ଼ ସମର୍ଥନ କଲେ ଏବଂ ଏହାକୁ କାର୍ଯ୍ୟକାରୀ କରିବାକୁ ଗାନ୍ଧୀ ପ୍ରଦର୍ଶିତ ଅସହଯୋଗ ଓ ସତ୍ୟାଗ୍ରହର ତୀବ୍ର ପ୍ରୟୋଗ କରୁଥିଲେ । ସମାଜବାଦୀ ନେତାଙ୍କ ମଧ୍ୟରେ ଗାନ୍ଧୀଜୀଙ୍କ ଜୀବିତାବସ୍ଥାରେ ସବୁଠାରୁ ନିକଟତମ ଲୋହିଆ ଥିଲେ । ଗାନ୍ଧୀଜୀ ତାଙ୍କ ମୃତ୍ୟୁ ପୂର୍ବରୁ ଲୋହିଆଙ୍କୁ ସେବାଗ୍ରାମ ଯିବାକୁ ନିମନ୍ତ୍ରଣ କରିଥିଲେ । ହୁଏତ ସେ କହିଥିଲେ ଭାରତରେ ଭାରତ ଉପଯୋଗୀ ସମାଜବାଦ ସ୍ଥାପନ ପାଇଁ ଆଲୋଚନା କରିଥାନ୍ତେ, ମାତ୍ର ତାହା ହୋଇପାରିଲା ନାହିଁ । ସ୍ୱାଧୀନତାପ୍ରାପ୍ତି ପରେ ଛଅମାସ ପରେ ଆମେ ତାଙ୍କୁ ହତ୍ୟା କଲୁ । ଗାନ୍ଧୀ ବିଚାରଧାରାର ଅର୍ଥନୀତି ଓ ରାଜନୀତି ପ୍ରତି ଅଶୋକ ମେହେଟ୍ଟାଙ୍କ ସମର୍ଥନ ଥିଲେ ମଧ୍ୟ ସେ ଉତ୍ତର ଜୀବନରେ କଂଗ୍ରେସରେ ଯୋଗ ଦେଇ ନିଜର ସ୍ୱାତନ୍ତ୍ର୍ୟ ହରାଇଲେ । ଏଣେ ମାର୍କସ ବିଚାର ନିପୁଣ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ଜୟପ୍ରକାଶ ନାରାୟଣ ପ୍ରଥମରୁ ଗାନ୍ଧୀଜୀଙ୍କ ବ୍ୟକ୍ତିଗତ ସମ୍ପର୍କରେ ଯେତିକି ନିକଟତମ ଥିଲେ, ତାହାଙ୍କର ବିଚାର ସହିତ ଗାନ୍ଧୀଜୀଙ୍କ ମୃତ୍ୟୁ ପୂର୍ବରୁ ସେତିକି ଦୂରତମ ଥିଲେ । ମାତ୍ର ଗାନ୍ଧୀଜୀଙ୍କ ମୃତ୍ୟୁ ପରେ ସେ ସମ୍ପୂର୍ଣ୍ଣ ସ୍ୱୟଂସ୍ଫୂର୍ତ୍ତ ଗାନ୍ଧୀବାଦୀ ହୋଇପଡ଼ିଲେ ଓ ଅନୁଶୋଚନା କଲେ ଯେ ସେ ଗାନ୍ଧୀଜୀଙ୍କ ଜୀବଦ୍ଦଶାରେ ଗାନ୍ଧୀଜୀଙ୍କୁ ଚିହ୍ନି ପାରିଲେ ନାହିଁ । ୧୯୫୭ ଗୟାଠାରେ (ବିହାର) ସର୍ବୋଦୟ ସମ୍ମିଳନୀରେ ସେ ଘୋଷଣା କଲେ କି ଶୁଦ୍ଧ ସମାଜବାଦ ସର୍ବୋଦୟ ବିଚାର ମଧ୍ୟରେ ରହିଛି ଓ ସେହିଦିନଠାରୁ ମୃତ୍ୟୁ ପର୍ଯ୍ୟନ୍ତ ସର୍ବୋଦୟ ବିଚାରକୁ ଆଗେଇନେବାକୁ ସକ୍ରିୟ ରହିଲେ । କ୍ରମେ ଅନ୍ୟାନ୍ୟ ବହୁ ସମାଜବାଦୀ ଗାନ୍ଧୀ ବିଚାରର ଅନୁବର୍ତ୍ତୀ ଓ ନିକଟବର୍ତ୍ତୀ ହେବାକୁ ଲାଗିଲେ । ଏହାର ପ୍ରମାଣ ମଧୁ ଦଣ୍ଡବତେଙ୍କ ଇଂରାଜୀ ପୁସ୍ତକ 'ମାର୍କସ ଓ୍ୱାଚ ଗାନ୍ଧି' ଏବଂ ୧୯୮୭ ପ୍ରକାଶିତ ମଧୁ ଲିମାଏଙ୍କ ହିନ୍ଦି ପୁସ୍ତକ 'ମାର୍କସ ଓ୍ୱାର ଗାନ୍ଧି' । ଏହି ଅବଧିରେ ଯେତେବେଳେ ଭାରତର ବଶିଷ୍ଟ ସମାଜବାଦୀଙ୍କ ମଧ୍ୟରେ ଏପରି ବିଚାର ବିପ୍ଳବ ଘଟୁଥିଲା, ଓଡ଼ିଶାରେ ନବ ବାବୁ ବିଭିନ୍ନ କ୍ଷେତ୍ରରେ ରହି ସମାଜବାଦର ପ୍ରୟୋଗାତ୍ମକ ପ୍ରକ୍ରିୟା ଚଳାଇଥିଲେ । ଦୁଃଖର କଥା, ସମାଜବାଦୀ ନବ ବାବୁଙ୍କ ପ୍ରୟୋଗାତ୍ମକ ପ୍ରକ୍ରିୟାକୁ ଓଡ଼ିଶାର ସମାଜବାଦୀ ବନ୍ଧୁଗଣ ମଧ୍ୟ ଗ୍ରହଣ କରିପାରିଲେ ନାହିଁ । ହୁଏତ ସେ ଶେଷଜୀବନ ପର୍ଯ୍ୟନ୍ତ ନିଷ୍ଠାପର ସମାଜବାଦୀ ଭାବରେ ଏକୁଟିଆ ରହିଗଲେ ।

ଅଭିଜାତ ନବ ବାବୁ ଛାତ୍ରାବସ୍ଥାରୁ ସ୍ଥିତାବସ୍ଥାର ବିପ୍ଳବ କରିବାରେ ଆଗୁଆ ଥିଲେ । ସେ ରେଭେନ୍‌ସା କଲେଜରେ ଛାତ୍ର ଥିବାବେଳେ ଭାରତୀ ମନ୍ଦିର ଗଠନ କରିଥିଲେ । ବିଦ୍ୟାଧ୍ୟୟନ ଛାଡ଼ି ସ୍ୱେଚ୍ଛାରେ ସ୍ୱାଧୀନତା ସଂଗ୍ରାମରେ ସୈନିକ ହୋଇ ଅନେକ ଥର ଜେଲ ବରଣ କଲେ । ସର୍ବପ୍ରଥମେ ସେ ବାଲେଶ୍ୱର ଜିଲ୍ଲାରେ ଚୌକିଦାରୀ ଟିକସର ବିରୋଧ କରି ଜେଲ ବରଣ କରିଥିଲେ । ୧୯୩୪ ରୁ ସମାଜବାଦୀ ଢାଞ୍ଚାରେ କୃଷକ ସଙ୍ଗଠନ କଲେ । ୧୯୩୮ରେ ଢେଙ୍କାନାଳ ରାଜାଙ୍କର ଅତ୍ୟାଚାରର ବିରୋଧ କଲେ । ତତ୍କାଳୀନ ଓଡ଼ିଶାର ବହୁ ଗଡ଼ଜାତରେ ଏହି ଆନ୍ଦୋଳନ ତେଜିଉଠିଲା । ଗଡ଼ଜାତ ପରିବେଷ୍ଟିତ ଇଂରାଜୀ ଶାସନାଧୀନ ଅନୁଗୁଳ ଜିଲ୍ଲାର ସଦର ଦପ୍ତର ଅନୁଗୁଳରେ ଆଶ୍ରୟପ୍ରାର୍ଥୀ ରାଜଦ୍ରୋହୀ ଗଡ଼ଜାତ ପ୍ରଜାଙ୍କ ଆଶ୍ରୟ ଓ ତାଙ୍କ ପିଲାଙ୍କ ଶିକ୍ଷାଦୀକ୍ଷା ଓ ରକ୍ଷଣାବେକ୍ଷଣ ପାଇଁ ତାହାଙ୍କର ସହଚରୀ ଧର୍ମପତ୍ନୀ ତଥା ବିପ୍ଳବିଣୀ ସମ୍ମାନନୀୟା ମାଳତୀ ଦେବୀଙ୍କ ପୂର୍ଣ୍ଣ ସହଯୋଗରେ ବାଜିରାଉତ ଛାତ୍ରାବାସ ସ୍ଥାପିତ ହେଲା । ବାଜିରାଉତ ଛାତ୍ରାବାସ ସ୍ୱନାମରେ ଯେତେ ପରିଚିତ ନୁହେଁ, 'ମାଳତୀ ଆଶ୍ରମ' ନାମରେ ସ୍ଥାନୀୟ ଲୋକଙ୍କ ମଧ୍ୟରେ ବେଶୀ ପରିଚିତ । ବାଣୀ ସତ୍ୟାଗ୍ରହ କରିବା ପୂର୍ବରୁ ନବ ବାବୁଙ୍କୁ ଇଂରେଜ ସରକାର ବନ୍ଦୀ କଲେ । 'ଭାରତ ଛାଡ଼' ଆନ୍ଦୋଳନରେ ତାହାଙ୍କର ବିପ୍ଳବାତ୍ମକ କାର୍ଯ୍ୟକଳାପ ଖୁବ୍ ତୀବ୍ର ଥିଲା । ସେ ପୁରୀ ଜେଲରେ ଥିବା ସମୟରେ ଅଲେଖ ପାତ୍ର ଓ ଲୋକନାଥ ସେନାପତିଙ୍କୁ ଜେଲ ପ୍ରାଚୀର ଅତି କୌଶଳରେ ଗୋପନରେ ଡିଆଁଇ ଦେଇଥିଲେ। ଜେଲରୁ ବାହାରିବା ପରେ ୧୯୪୬ ରେ ସେ ସଂସଦୀୟ କାର୍ଯ୍ୟରେ ପ୍ରବେଶ କଲେ ଓ ସର୍ବପ୍ରଥମେ ରାଜସ୍ୱ ମନ୍ତ୍ରୀ ହେଲେ । ସେ ଅତି ବିଚକ୍ଷଣ ରାଜସ୍ୱ ମନ୍ତ୍ରୀ ଥିଲେ । ଭୂସ୍ୱତ୍ୱ ସମ୍ବନ୍ଧରେ ତାହାଙ୍କର ଜ୍ଞାନ ଅତି ବ୍ୟାପକ ଥିଲା । ୧୯୪୮ ରେ ସେ ମନ୍ତ୍ରିତ୍ୱ ତ୍ୟାଗ କଲା ପରେ ଗାନ୍ଧୀଜୀଙ୍କ ମୌଳିକ ଶିକ୍ଷା ପ୍ରତି ଶ୍ରଦ୍ଧାବାନ୍ ହୋଇ ଓଡ଼ିଶା ସଙ୍ଗଠକ ଭାବରେ କାର୍ଯ୍ୟ କଲେ, ତତ୍କାଳୀନ ମନ୍ତ୍ରୀପଦ ପରି ସମ୍ମାନଜନକ ପଦ ଛାଡ଼ି ମୌଳିକ ଶିକ୍ଷା ସଙ୍ଗଠକ ହେବାରେ ଅନେକ ଆଶ୍ଚର୍ଯ୍ୟ ହେଲେ । ନବ ବାବୁଙ୍କୁ ପଚାରିବାରୁ ସେ ତାହାଙ୍କର ସ୍ୱଭାବ ସୁଲଭ ନମ୍ରତାର ସହିତ କହିଲେ ଯେ, ବାପ ମା ଶିକ୍ଷକ କରିବ ବୋଲି ପାଠ ପଢ଼ାଇଥିଲେ, ପାଠ ପଢ଼ିଲା ସମୟରେ ମଧ୍ୟ ସେପରି ଇଚ୍ଛା ଥିଲା, ତାହା ପୂରଣ ହେଲା । ତାହାପରେ ଘଟଣା ଚକ୍ରରେ ସେ, ଓଡ଼ିଶାର ମୁଖ୍ୟମନ୍ତ୍ରୀ ଭାବରେ ଦୀର୍ଘ ପାଞ୍ଚ ବର୍ଷ ନିଷ୍କଳଙ୍କ ଭାବରେ କୃତିତ୍ୱର ସହିତ ରହି ଭାରତରେ ଇତିହାସ ସୃଷ୍ଟି କରିଯାଇଛନ୍ତି । ଏ ପର୍ଯ୍ୟନ୍ତ ଭାରତର କୌଣସି ରାଜ୍ୟରେ କେହି ହେଲେ ମୁଖ୍ୟମନ୍ତ୍ରୀ ଭାବରେ ଏତେ ସମୟ ରହିନାହାନ୍ତି । ନବ ବାବୁ ଦୀର୍ଘ ସମୟ କେବଳ ମନ୍ତ୍ରୀ ହେବା ପାଇଁ ମନ୍ତ୍ରୀ ହୋଇ ଇତିହାସ ସୃଷ୍ଟି କରିନାହାନ୍ତି, ଅନେକ ବିପ୍ଳବାତ୍ମକ ଆଇନ କରିଥିଲେ । ତାହାଙ୍କର ବିପ୍ଳବାତ୍ମକ ଭୂସଂସ୍କାର ଆଇନକୁ ସଭାରୂଢ଼ କଂଗ୍ରେସ ବିଧାୟକ ଏପରିକି ସମାଜବାଦୀ ସଦସ୍ୟ ମଧ୍ୟ ସମର୍ଥନ କରିବାକୁ ଦ୍ୱିଧାବୋଧ କରିଥିଲେ । ସେ କ୍ଷମତାର ବିକେନ୍ଦ୍ରୀକରଣ ପାଇଁ ଯେଉଁ ଅଞ୍ଚଳ ଶାସନ ଆଇନ ପାସ କରିଛନ୍ତି, ତାହା ଶୀତଳଭଣ୍ଡାରରେ ପଡ଼ିଛି । ଏହା କାର୍ଯ୍ୟକାରୀ ହୋଇଥିଲେ ଓ ସଂଯୁକ୍ତ ଭାରତର ଅନ୍ୟାନ୍ୟ ରାଜ୍ୟମାନଙ୍କର ତାହା ଅନୁସୃତ ହୋଇଥିଲେ ଆଜି ଗଣତନ୍ତ୍ର ଯେଉଁ ସଙ୍କଟର ସମ୍ମୁଖୀନ ହେଉଛି, ତାହା ହୋଇ ନ ଥାନ୍ତା । ଶାସନ କ୍ଷମତାର ପ୍ରକୃତ ବିକେନ୍ଦ୍ରୀକରଣ ହୋଇଥାନ୍ତା ଓ ଗାଁଗହଳର ଲୋକେ ଗଣତାନ୍ତ୍ରିକ ଶାସନର ପ୍ରତ୍ୟେକେ ଜଣେ ଜଣେ ଅଂଶୀଦାର ବୋଲି ଗୌରବର ସହିତ ଦାୟିତ୍ୱପୂର୍ଣ୍ଣ ନାଗରିକତାର ମୂଲ୍ୟବୋଧ କରିପାରିଥାନ୍ତେ । ଆଜି ଭାରତବାସୀ ନିଜକୁ ସ୍ୱାଧୀନ ନାଗରିକ ବୋଲି ଭାବିପାରୁନାହାନ୍ତି । ଗଣତନ୍ତ୍ରରେ ସେମାନେ ସ୍ୱେଚ୍ଛାଚାରୀ ଜଣତନ୍ତ୍ରରେ ପୂର୍ବ ଗଡ଼ଜାତର ପ୍ରଜାଠାରୁ ହୀନତର ଭାବରେ ଭାବୁଛନ୍ତି । ଗାନ୍ଧୀ କଳ୍ପିତ ସ୍ୱାଧୀନ ଭାରତରେ ଏହା ଏକ ବିଡ଼ମ୍ବନା । ଏହି ଅବସ୍ଥାର ପରିବର୍ତ୍ତନ ପାଇଁ ନବ ବାବୁ ଅହରହ ଚିନ୍ତା କରୁଥିଲେ ଓ ଜୀବନର ଶେଷ ନିଃଶ୍ୱାସ ଛାଡ଼ିବା ପର୍ଯ୍ୟନ୍ତ ଶକ୍ତି ଅନୁସାରେ ସକ୍ରିୟ ଥିଲେ । ତାହାଙ୍କର ଆଜୀବନ ସାଧନାର ସମାଜବାଦ ଦୂରେଇଯାଉଛି ।

ନବ ବାବୁଙ୍କ ଜୀବନର ପ୍ରଥମ ପଚିଶ ବର୍ଷରୁ କୋଡ଼ିଏ ବର୍ଷ ପ୍ରାୟ ଛାତ୍ର ଜୀବନ ଓ ପରବର୍ତ୍ତୀ ତିରିଶ ବର୍ଷ ତାହାଙ୍କର ସଂଗ୍ରାମୀ ଜୀବନର ଇତିହାସ ସମ୍ବନ୍ଧରେ ମୁଁ ପ୍ରାୟ ଅଜ୍ଞ କହିଲେ ଠିକ୍ ହେବ । ମୋର ଛାତ୍ର ଜୀବନରେ ୧୯୩୭ରୁ ୧୯୩୯ କଟକ କାଠଯୋଡ଼ି କୂଳରେ ତାଙ୍କ ବାସଗୃହର ଅନତିଦୂରରେ ରହୁଥିଲି । କାଠଯୋଡ଼ି କୂଳର ତାଙ୍କ ଘର ସଂଲଗ୍ନ ସନ୍‌ହାଇନ୍ ଫିଲ୍‌ଡକୁ ଫୁଟ୍‌ବଲ ଖେଳିବାକୁ ଯାତାୟାତ ସମୟରେ ତାଙ୍କୁ କେତେ ଥର ଦେଖିଛି । ତାଙ୍କୁ ନେତା ଭାବରେ ଦୂରରୁ ଦେଖିଛି । କୃଷକ ନେତା ଭାବରେ କାଠଯୋଡ଼ି ପଥର ବନ୍ଧ ଉପରେ ଗ୍ରେଟ ଲୁଗା ସହିତ ଖଣ୍ଡିଏ ଟୋକ୍ନି ବା ଜାନ୍ଧରେ ଗାମୁଛା କିମ୍ବା ଅଣ୍ଟାରେ ଗାମୁଛା ଭିଡ଼ି କାଠଯୋଡ଼ି ପଥର ବନ୍ଧ ଉପରେ ଚଲାବୁଲା କରିବାର ଦୃଶ୍ୟ ମନେପଡ଼ୁଛି । ତା'ପରେ ୧୯୫୦ ପର୍ଯ୍ୟନ୍ତ ପ୍ରାୟ ଦେଖିନାହିଁ; କିନ୍ତୁ ତା'ପରେ ତାଙ୍କ ସହିତ ମୌଳିକ ଶିକ୍ଷାର ସଙ୍ଗଠକ ଓ ମୁଁ ଶିକ୍ଷକ ଭାବରେ ଘନିଷ୍ଠତା

ଯାହା ସ୍ଥାପିତ ହୋଇଥିଲା । ମୁଖ୍ୟ ମନ୍ତ୍ରୀ ହେବା ପରେ ତାହା ଶିଥିଳ ହୋଇପଡ଼ିଲା । ସେ ମୁଖ୍ୟମନ୍ତ୍ରୀ ପଦ ଛାଡ଼ିଲେ ଓ ପ୍ରଥମରେ ମନ୍ତ୍ରୀପଦ ଛାଡ଼ିବା ମାସକ ପରେ ସମ୍ବଲପୁର ଜିଲ୍ଲାର ଦେବଗଡ ଓ କୁଚିଣ୍ଡା ସବ୍‌ଡିଭିଜନ ସହିତ ଝାଡସୁଗୁଡ଼ା ଅଞ୍ଚଳରେ ଏକାଦିକ୍ରମେ ଚଉଷଠି ଦିନ ସମ୍ମାନିତା ମାଳତୀ ଦେବୀଙ୍କ ସହିତ ପଦଯାତ୍ରା କରିଥିଲେ ଓ ମୁଁ ବରାବର ସଙ୍ଗରେ ରହିଲି । ସେହି ଦିନଠାରୁ ଏହି ସମ୍ପର୍କ ସ୍ଥାୟୀ ଭାବରେ ରହିଛି ଓ ମୁଁ ବଞ୍ଚିଥିବା ପର୍ଯ୍ୟନ୍ତ ମାଳତୀ ଦେବୀଙ୍କ ସହିତ ରହିବ । ଅନେକ ଭୂଦାନ ଗ୍ରାମଦାନ କାମରେ ତାଙ୍କ ସହିତ ସମ୍ବଲପୁର ଜିଲ୍ଲା ବ୍ୟତୀତ ସମଗ୍ର ଓଡ଼ିଶାର ବିଭିନ୍ନ ସ୍ଥାନକୁ ଯାଇଛି । ଏହିସବୁ ସମୟର ତାହାଙ୍କର ଅମାୟିକ ବ୍ୟବହାର କାହାଣୀ ତାହାଙ୍କର ସ୍ୱତନ୍ତ୍ର ବ୍ୟକ୍ତିତ୍ୱ, ସରଳତା ଓ ଲୋକଶ୍ରଦ୍ଧାର ଅମୃତ ସ୍ମୃତି । ସର୍ବୋଦୟରେ ପ୍ରକାଶ ପାଉଥିବା ଭୂଦାନ ସ୍ମୃତିରେ ମାତ୍ର କେତୋଟି ଘଟଣାର ଉଲ୍ଲେଖ ରହିଛି । ସେ ଗାଁଗହଳର ପିଲାଠାରୁ ବୁଢ଼ା ଓ ଧନୀଠାରୁ ଦରିଦ୍ରତମ ପୁରୁଷ ସ୍ତ୍ରୀଙ୍କ ସହିତ ଯେପରି ଭାବରେ ମିଶୁଥିଲେ, ତାହା ଦେଖି ଅନେକ ସମୟରେ ମୁଁ ଆଶ୍ଚର୍ଯ୍ୟ ଚକିତ ହେଉଥିଲି ।

ନବ ବାବୁ ମୁଖ୍ୟମନ୍ତ୍ରୀ ପଦ ଛାଡ଼ିଲେ ତ ଛାଡ଼ିଲେ, ଆଉ କୌଣସି ପଦପ୍ରତି ଆଉ ମନ ବଳାଇଲେ ନାହିଁ । ସବୁ ଉଚ୍ଚ ପଦବୀକୁ ମୁହଁ ମୋଡ଼ି ଦେଲେ । ସର୍ବୋଦୟ କାମରେ ମନପ୍ରାଣ ଢାଳିଦେଲେ । ଭୂଦାନ ଗ୍ରାମଦାନ ପାଇଁ ଭାରତର ବିଭିନ୍ନ ପ୍ରଦେଶରେ ବୁଲିଲେ । କାଶ୍ମୀର ପୀରପଞ୍ଜାଲ ପାହାଡ଼ ଉପରେ ନିଜର ଓ ଅନ୍ୟର ବେଡ଼ିଂ ମୁଣ୍ଡାଇ ଚାଲିଲେ । ଶାନ୍ତି ସୈନିକ ଭାବରେ ନାଗାଲେଣ୍ଡକୁ ଯାତ୍ରା କଲେ । ସର୍ବସେବା ସଙ୍ଘର ସଭାପତି ହେଲେ । ଏହି ସବୁ କାର୍ଯ୍ୟରେ ଯାହାର ସମ୍ପର୍କରେ ଆସିଛନ୍ତି, ତାକୁ ଆପଣାର କରିଛନ୍ତି ଓ ସେ ନିଜେ ତା'ର ହୋଇଯାଇଛନ୍ତି । ଏ ସବୁ କାମରେ ତାହାଙ୍କର ଅଭିଜ୍ଞତା ତାଙ୍କ ମୁଖରୁ ଶୁଣିବାରେ କେବେ କୌତୂହଳ ନିବୃତ୍ତି ହେଉ ନ ଥିଲେ । ଗୋଟିଏ କଥାରେ ମୋର ନମ୍ର ବିଚାରରେ ନବ ବାବୁ ନବ ବାବୁ ପରି ଥିଲେ, ତାହାଙ୍କର ବାଲ୍ୟ ସାଙ୍ଗ ସାଥୀ ତଥା କ୍ରମାନ୍ୱୟ ସଂଗ୍ରାମୀ ଜୀବନର ସାଙ୍ଗ ସାଥୀ ଓ ସହଯୋଗୀ ସମକର୍ମୀ ଅନେକ ଅଛନ୍ତି, ଯେଉଁମାନେ ତାହାଙ୍କ ବିଷୟରେ ନାନା ଘଟଣାର ଅବତାରଣା କରିପାରିବେ । ତାଙ୍କ ପ୍ରତି ମୋର ଆନ୍ତରିକ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ଓ ତାହାଙ୍କର ସମାଜବାଦୀ ବନ୍ଧୁ ଜୟପ୍ରକାଶଙ୍କ ସମ୍ପର୍କ ସମ୍ବନ୍ଧରେ ସାମାନ୍ୟ କିଛି କହି ଏହି ଲେଖାର ଉପସଂହାର କରୁଛି । ପୂର୍ବରୁ କୁହାଯାଇଛି, ସମାଜବାଦର ପ୍ରବର୍ତ୍ତକ ଭାରତରେ ଜୟପ୍ରକାଶ ଯେପରି, ଓଡ଼ିଶାରେ ମାନନୀୟ ନବ ବାବୁ ସେପରି । ଜୟପ୍ରକାଶଜୀ ନବ ବାବୁଙ୍କ ଠାରୁ ମାତ୍ର ଦଶମାସ ସାନ । ଜୟପ୍ରକାଶଙ୍କ ଜନ୍ମ ୧୯୦୨ ଅକ୍ଟୋବର ୧୧ ତାରିଖରେ ଓ ନବ ବାବୁଙ୍କ ଜନ୍ମ ୧୯୦୧ ନଭେମ୍ବର ୭ମ ତାରିଖରେ । ଉଭୟେ ସମବୟସ୍କ, ସମଧର୍ମୀ ଓ ସମତ୍ୟାଗୀ । ଜୟପ୍ରକାଶ ଓ ପ୍ରଭାବତୀ ଯେପରି ଗାନ୍ଧୀଜୀଙ୍କ ଭାଷାରେ ଏକ 'ଅନୋଖୀ ଯୋଡ଼ୀ', ସେହି କଥା ନବ ବାବୁ ଓ ମାଳତୀ ଦେବୀଙ୍କ ପ୍ରତି ପ୍ରଯୁଜ୍ୟ । ନବ ବାବୁଙ୍କ ପ୍ରତି ଜେ.ପି.ଙ୍କ ଅନନ୍ୟଶ୍ରଦ୍ଧା ଥିଲା । ପ୍ରଥମେ ସେମାନଙ୍କ ମଧ୍ୟରେ ଯେଉଁ ସମାଜବାଦ ସ୍ଥାପନ ପାଇଁ ଯୋଗାଯୋଗ ରହିଥିଲା ଅନ୍ତିମ ଜୀବନରେ ବି ତାହା ରହିଲା । ଭାରତର ସ୍ୱାଧୀନତା ସଂଗ୍ରାମରେ ଉଭୟଙ୍କର ଭାବନା, ସାଧନା ଓ ନିର୍ଯ୍ୟାତନା ଭୋଗିବାରେ ଯେଉଁ ସବୁ ସାମଞ୍ଜସ୍ୟ ଥିଲା, ଦ୍ୱିତୀୟ ସ୍ୱାଧୀନତା ଲଢ଼ାଇ ଯାହା ଗଣତନ୍ତ୍ରର ଓ ନାଗରିକତାର ସୁରକ୍ଷା ପାଇଁ କରାଗଲା, ସେହି ସାମଞ୍ଜସ୍ୟ ରହିଲା । ୧୯୬୯ରୁ ଜୟପ୍ରକାଶଜୀ ଭାରତର ଶାସନ ଏକଛତ୍ରବାଦ ଆଡ଼କୁ ଗତି କରୁଥିବା ସୂଚନା ପାଇ ସର୍ବସେବା ସଙ୍ଘ ଓ ସର୍ବୋଦୟ ସମାଜ ଆଗରେ ଯେତେବେଳେ ପ୍ରକାଶ କରୁଥିଲେ, ବୋଧହୁଏ ନବ ବାବୁଙ୍କ ବ୍ୟତୀତ, ହୁଏତ ମୋ ଭଳିଆ କ୍ଷୁଦ୍ରକର୍ମୀ କେତେଜଣ ଛାଡ଼ି ଅନେକ ବିଶ୍ୱାସ କରିପାରୁ ନ ଥିଲେ । ଅନେକ ଇନ୍ଦିରା ମୋହଗ୍ରସ୍ତ ଥିଲେ । ଏହି ମୋହ ୧୯୭୩ ପରେ ଭାଙ୍ଗିବାର ଆରମ୍ଭ ହୋଇ ୧୯୭୪ ର ମଧ୍ୟଭାଗରେ ସମ୍ପୂର୍ଣ୍ଣ ଭାବରେ ଭାଙ୍ଗିଗଲା । ସର୍ବୋଦୟ ସମାଜର ଶତକଡ଼ା ପଞ୍ଚାନବେ ଜଣରୁ ଅଧିକ ଲୋକ ଜୟପ୍ରକାଶଜୀଙ୍କୁ ସମର୍ଥନ କଲେ । ଯେଉଁ ଗୁରୁ-ପାଞ୍ଚ ବିରୋଧ କଲେ, ସେହି ନିନ୍ଦନୀୟ ଅଗାନ୍ଧୀ ଓ ଅସର୍ବୋଦୟୀଙ୍କ କଥା ନ କହିବା ଭଲ । ଏହି ଦ୍ୱିତୀୟ ସ୍ୱାଧୀନତା ସମରରେ ଜୟପ୍ରକାଶଜୀ ଲୋକନାୟକ ହୋଇଗଲେ । ଲୋକନାୟକଙ୍କୁ ନବ ବାବୁ ଅକୁଣ୍ଠ ସମର୍ଥନ ଦେଲେ । ସମ୍ପୂର୍ଣ୍ଣ କ୍ରାନ୍ତିର ସେ ଓଡ଼ିଶାର ନାୟକ ହେଲେ । ସମ୍ପୂର୍ଣ୍ଣ କ୍ରାନ୍ତି ଉତ୍କଳନାୟକ ଓ ଲୋକନାୟକ ମଧ୍ୟରେ ଯୋଗସୂତ୍ର ସ୍ଥାପନ ପାଇଁ ଲେଖକ ବରାବର ଜୟପ୍ରକାଶଜୀଙ୍କ ପାଖକୁ ଯାଉଥିଲେ ଓ ଜେ. ପି. ଦେଖିବା ମାତ୍ରେ ପ୍ରଥମରେ ନବ ବାବୁଙ୍କ କୁଶଳ ସମାଚାର ପଚାରି ଆନନ୍ଦ ପାଉଥିଲେ । ଦ୍ୱିତୀୟ ସଂଗ୍ରାମ ସଫଳ ହେଲା; କିନ୍ତୁ ଫଳ ଅକାଳରେ ଅନ୍ତର ଝଞ୍ଜାରେ ମଉଳିଗଲା । ଜେ.ପି. ଓ ନବ ବାବୁ ଉଭୟ ଶେଷ ଜୀବନରେ ସ୍ୱାଧୀନ ଭାରତରେ ସ୍ୱାଧୀନତା ସଂଗ୍ରାମର ଶ୍ରେଷ୍ଠ ଅଗ୍ରଣୀ ହୋଇ ମଧ୍ୟ ଶେଷଥର ପାଇଁ କାରାବରଣ କଲେ । ଜେଲ ମଧ୍ୟରୁ ଉଭୟେ ରୁଗ୍ଣ ଅବସ୍ଥାରେ ମୁକ୍ତ ହେଲେ ଓ ସେହି ରୋଗରୁ ଜୀବନର ଶେଷ ପର୍ଯ୍ୟନ୍ତ ରୋଗମୁକ୍ତ ହୋଇ ନ ପାରି ଅମୂଲ୍ୟ ଜୀବନ ଶେଷ କରିଦେଲେ ସିନା, ଚିରଦିନ ମୃତ୍ୟୁଞ୍ଜୟ ହୋଇ ରହିଗଲେ । ଏହି ଉଭୟ ସହୋଦରୋପମ ସଖା ଓ ସାଥୀ ଭାରତ ବଞ୍ଚିଥିବା ପର୍ଯ୍ୟନ୍ତ ଭାରତବାସୀଙ୍କଠାରୁ ଶ୍ରଦ୍ଧାଞ୍ଜଳି ପାଉଥିବେ ।

---

# ଜଣେ ଯୁଗାନ୍ତକାରୀ ସାଧକ

**ସର୍ବେଶ୍ୱର ନାୟକ**

ଜୁନ୍ ୨୪ ତାରିଖ ସକାଳେ ଡାକ୍ତରଖାନାରେ ଥାଇ ଶୁଣିଲି ପୂର୍ବ ଦିନରେ ବାପିଙ୍କର ଅନୁଗୁଳଠାରେ ଦେହାନ୍ତ ହୋଇଗଲା । ମାତ୍ର ଦୁଇଦିନ ଆଗରୁ ଶୁଶ୍ରୂଷାବାସଠାରେ ଦେଖିଆସିଥିଲି ।

ପଛକଥା ସବୁ ମନେ ପଡ଼ିଲା । ପ୍ରାୟ ୪୦ ବର୍ଷର ଇତିହାସ ଚଳଚ୍ଚିତ୍ର ଭଳି ଆଖି ଆଗରେ ନାଚିବାକୁ ଲାଗିଲା । ମୋ ପକ୍ଷରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଦିନର ସ୍ମୃତି ସର୍ବପ୍ରଥମେ ଜାଗି ଉଠିଲା ।

୧୯୫୫ ମସିହା, ବିନୋବାଜୀଙ୍କ ପଦଯାତ୍ରା ଚାଲିଥାଏ । ଆମ ଗାଁପାଖ ମାନପୁର ଗ୍ରାମଦାନ ଖୁବ୍ ଚହଳ ପକାଇଥାଏ । ମାନପୁର ଯିବା ବାଟରେ ଆମ ଗାଁରେ ଅନ୍ୟମାନଙ୍କ ଗହଣରେ ବାପି କିଛି ସମୟ ପାଇଁ ଅଟକି ଥିଲେ ।

ସଭା ପରେ ହଠାତ୍ ସେ ଆମ ଘର ପସ୍ତ୍ୱର ଯିବାକୁ ଉଠିଲେ । ମୋର ବାପା ଅବଶ୍ୟ ସେ ସଭାକୁ ଆସିଥିଲେ ଓ ତାଙ୍କୁ ଦେଖା କରିବାକୁ ମନେକରି ସଭା ଶେଷ ହେବାଯାଏ ସୁଯୋଗ ପାଇଁ ଅପେକ୍ଷାରେ ଥିଲେ । ମାତ୍ର ହଠାତ୍ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଜଣେ ଅନାମଧେୟ ଦରିଦ୍ରର (ତାଙ୍କ ଆଶ୍ରମ ଅନୁଷ୍ଠାନ ସହ ପୂର୍ବର ସଂପର୍କକୁ ମନେପକାଇ) ଘରକୁ ଯିବାକୁ ଚାହିଁବେ, ଏକଥା ବାପାଙ୍କର କଳ୍ପନା ବାହାର ଥିଲା । ତାଙ୍କ ଆଖି ଲୁହ ଛଳ ଛଳ ହୋଇଗଲା ଓ ସେ ତୁରନ୍ତ ତାଙ୍କୁ ଦେଖାକରି ବାଟ କଢ଼ାଇ ଘରକୁ ଆଣିଲେ ।

ସଙ୍ଗରେ ଅଗଣିତ ସହଗାମୀ କର୍ମୀ । ଛୋଟିଆ ଭଙ୍ଗା ଘରେ ସେମାନଙ୍କ ପାଇଁ ବସିବାର ବ୍ୟବସ୍ଥା କରିପାରିବାର ଉପାୟ ନ ଥିଲା । ତଥାପି "ସମ୍ମାନନା" ଭଳି ଯତ୍‌ସାମାନ୍ୟ ବ୍ୟବସ୍ଥା ହେଉ ହେଉ, ବାପି ଆମ ଘର-ବାହାର ବୁଲି ଆସି ପିଲାମାନଙ୍କୁ କୋଳକରି ସମସ୍ତଙ୍କ ସହ ଆପଣାଛାଏଁ ପରିଚିତ ହୋଇଗଲେ ।

ବିଳମ୍ବ ଏଡ଼ାଇ ସେ ବିଦାୟ ନେବା ପୂର୍ବରୁ ବାପା ହଠାତ୍ ବିହ୍ୱଳ ହୋଇ କହିପକାଇଲେ, "ଆଜ୍ଞା, ପୁଅ (ଲେଖକ)ଙ୍କ କଥା ରହିଲା, ମୁଁ ହାରିଗଲି ।"

ସମସ୍ତେ ଅବାକ୍ ହୋଇ ଚାହିଁଲେ । ବାପି ଫେରିପଡ଼ି ହସି ହସି ପଚାରିଲେ, "କଅଣ ହାରିଗଲେ ?"

ବାପା କହିଲେ, "ମୁଁ କହୁଥିଲି ରଜା-ଜମିଦାରମାନେ ଇଂରେଜଙ୍କୁ ରଖିଛନ୍ତି । ଇଂରେଜ ଗଲେ, ରଜା-ଜମିଦାର ଆପେ ଆପେ ଯିବେ । ଯାହାହେଉ, ଆପଣ ତ ସମସ୍ତଙ୍କୁ ବନ୍ଧା କରିଦେଲେ ।"

ବାପି ଗମ୍ଭୀରତା ସହ କହିଲେ, "ପ୍ରକୃତରେ ଆପଣଙ୍କ ଯୁକ୍ତିଟା ଠିକ୍ ଥିଲା । ରଜା-ଜମିଦାରଙ୍କ ଯୋଗୁଁ ହିଁ ଇଂରେଜମାନେ ଯିବା ଡେରି ହେଲା ।" ସେ ଚାଲିଲେ ।

ଦୁଇଦିନ ପରେ ମାନପୁର ଯିବା ପାଇଁ ମୁଁ ଅନୁଗୁଳରୁ ଆସି ଘରେ ସବୁ କଥା ଜାଣିଲି । ପୂର୍ବରୁ ଜାଣିଥିଲେ ମୁଁ ମଧ୍ୟ ଉପସ୍ଥିତ ରହିପାରିଥାନ୍ତି । ତଥାପି ଆମର ଭଙ୍ଗା କୁଡ଼ିଆ କ୍ଷଣିକ ଯେ ଦେବତାର ପାଦସ୍ପର୍ଶରେ ପବିତ୍ର ହୋଇଛି । ଏ ଭାବନା ଏବେ ମଧ୍ୟ ମୋତେ ଆନନ୍ଦ ଦିଏ ।

"ରଜା-ଜମିଦାରଙ୍କ ଯୋଗୁଁହିଁ ଇଂରେଜମାନେ ଯିବା ତେଉର ହେଲା।" ଭାରତୀୟ ସ୍ୱାଧୀନତା ସଂଗ୍ରାମର କେନ୍ଦ୍ର-ବିନ୍ଦୁ ଥିଲା ଏ କଥାଟା। ବାସ୍ତବ କ୍ଷେତ୍ରରେ ଭାରତର ସାମନ୍ତବାଦୀ ସମାଜ ହିଁ ଏକ ଔପନିବେଶିକ ସାମନ୍ତବାଦୀ ଶାସନ ସୃଷ୍ଟି କରିଥିଲା। ସାମନ୍ତବାଦର ସ୍ୱାର୍ଥ ପାଖରେ ଦେଶ, ଜାତି ବା ମାନବିକତା ଅତ୍ୟନ୍ତ ଗୌଣ ହୋଇଯାଏ। ଭାରତ ଯେ ବାରମ୍ବାର ନିଜ ଭିତରେ ଏହି ସାମନ୍ତବାଦର ଶିକାର ହୋଇଛି। ଇତିହାସ ଅଧ୍ୟୟନକାରୀ ଯେ କୌଣସି ଲୋକ ତାହା ସହଜରେ ବୁଝିପାରିବ।

ମହାତ୍ମା ଗାନ୍ଧୀ ଏହା ଭଲଭାବେ ବୁଝିଥିଲେ ଓ ସେଥିଯୋଗୁଁ ଏହି ପ୍ରଥାକୁ ଲୋପ କରିବାର ପ୍ରତୀକ ସ୍ୱରୂପ ନିଜର ବିଭିନ୍ନ ରଚନାତ୍ମକ କାର୍ଯ୍ୟକ୍ରମ ସହ ସ୍ୱାଧୀନତା ସଂଗ୍ରାମୀ ତଥା ଦେଶବାସୀଙ୍କୁ ସ୍ୱେଚ୍ଛାକୃତ ଭାବେ ଜମିଦାରୀ ଛାଡ଼ି ନିଜକୁ ସର୍ବ-ସାଧାରଣଙ୍କ ସହ ସାମିଲ୍ କରିବାକୁ ଆହ୍ୱାନ ଦେଇଥିଲେ।

ମାତ୍ର ସ୍ୱେଚ୍ଛାକୃତଭାବେ କେତେ ଜଣ ଜମିଦାରୀ ଛାଡ଼ିଦେଲେ ଯେ ସମସ୍ୟାର ସମାଧାନ ହୋଇଯିବ ଓ କଂଗ୍ରେସର ଜମିଦାରୀ ଛାଡ଼ ନଷ୍ଟନୀତିର ଲକ୍ଷ୍ୟ ସାଧିତ ହୋଇଯିବ, ତାହା ନୁହେଁ। ଜମିଦାରୀ ଉଠିବା ପରେ ତାହାର ଭୂତ ଆମକୁ ଗୋଡ଼ାଇ ଚାଲିବ। ସେ ଭୂତ ହାତରୁ ବି ରକ୍ଷା ମିଳିବା ଦରକାର, ଅର୍ଥାତ୍ ସେ ଭୂତକୁ ମଧ୍ୟ ଶେଷ କରିବାକୁ ହେବ।

ମହାତ୍ମା ଗାନ୍ଧୀ ଓ କଂଗ୍ରେସର ଆହ୍ୱାନରେ ଜମିଦାରୀ ଛାଡ଼ି ସାରିବା ପରେ ଏହି ପ୍ରଥାର ମୂଳ ଉପାଡ଼ କରିବାର ସଂକଳ୍ପ ନେଇ ନିଜକୁ ଗଢ଼ୁଥିବା ଓଡ଼ିଶାର ଏକମାତ୍ର ସ୍ୱାଧୀନତା ସଂଗ୍ରାମୀ ଥିଲେ ସେହି ବାପି—ପୂର୍ବତନ ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀ। ଭାରତୀୟ ଜାତୀୟ କଂଗ୍ରେସ ଭିତରେ ସମାଜବାଦୀ ଚିନ୍ତାଧାରାର ପ୍ରଭାବରେ ଗଢ଼ିଉଠିଥିବା କଂଗ୍ରେସ ସୋସଲିଷ୍ଟ (CSP) ର ସେ ଥିଲେ ଓଡ଼ିଶା ପ୍ରଦେଶରେ ଅଦ୍ୱିତୀୟ ନେତା। ଦେଶକୁ ଏକ ସମାଜବାଦୀ ଶାସନ ଦେଇ ନ ପାରିଲେ, ଯୁଗ ଯୁଗର ପରମ୍ପରାକ୍ରମେ ତଥା ବ୍ରିଟିଶ ଶାସନର "ଫଟାଇ ଶାସିବା" ନୀତିର ପ୍ରଭାବରେ ଗଢ଼ିଉଠିଥିବା ସାମନ୍ତବାଦୀ ସମାଜର ମୂଳପିଣ୍ଡ ଜମିଦାରୀ ଓ ଗଡ଼ଜାତ ଶାସନ ଭାରତକୁ ପଙ୍ଗୁ କରି ରଖିବ। ସେଥିପାଇଁ କେବଳ ଶାସନ ସଂସ୍କାର ନୁହେଁ, ସ୍ୱାଧୀନତା ପ୍ରାପ୍ତି ପରେ ସେ ସବୁ ସଂସ୍କାରକୁ କାର୍ଯ୍ୟକାରୀ କରିବାର ସୁଯୋଗ ବି ଦରକାର।

ଦୀର୍ଘ ଈପ୍ସିତ ସ୍ୱାଧୀନତା ଲାଭର ଅବ୍ୟବହିତ ପୂର୍ବରୁ ୧୯୪୭ ନିର୍ବାଚନ ପରେ ଗଠିତ ଓଡ଼ିଶା ମନ୍ତ୍ରିମଣ୍ଡଳରେ ସ୍ୱର୍ଗତ ଚୌଧୁରୀ ଥିଲେ ରାଜସ୍ୱ ମନ୍ତ୍ରୀ; କିନ୍ତୁ ଏକମାତ୍ର ପୁତ୍ରର ବିୟୋଗ ହେତୁ ସେ ଅଳ୍ପଦିନ ପରେ ଏହି ମନ୍ତ୍ରୀ ପଦ ତ୍ୟାଗ କରିଥିଲେ। ତଥାପି ଏହି ସ୍ୱଳ୍ପକାଳ ମଧ୍ୟରେ ଓଡ଼ିଶାର ଭୂସଂସ୍କାର ପାଇଁ ସେ ପ୍ରାୟ ସମସ୍ତ ଚଟା କାର୍ଯ୍ୟ ଶେଷ କରିଥିଲେ ଓ ପ୍ରଥମ ପଦକ୍ଷେପ ସ୍ୱରୂପ ଓଡ଼ିଶା ଭାଗଚାଷ ଆଇନ କାର୍ଯ୍ୟକାରୀ ହୋଇଥିଲା। ତାଙ୍କର ନିକଟସଂପର୍କରେ ଆସିଥିବା ଲୋକେ ଭଲଭାବେ ଜାଣନ୍ତି ଯେ, ଟିକରପଡ଼ା ଡାକବଙ୍ଗଳା ହିଁ ତାଙ୍କର ଏହି ପରିକଳ୍ପନା ପ୍ରସ୍ତୁତି ପାଇଁ ଏକ ନିରୋଳା ସ୍ଥାନ ଥିଲା। ଓଡ଼ିଶା ଭୂସଂସ୍କାର ବୋର୍ଡ଼ର ଚେୟାରମ୍ୟାନ୍ ଭାବେ ତାଙ୍କର ଅବିଶ୍ରାନ୍ତ ପରିଶ୍ରମର ଫଳ ସ୍ୱରୂପ ଓଡ଼ିଶା ଜମିଦାରୀ ଉଚ୍ଛେଦ ପରବର୍ତ୍ତୀ ବ୍ୟାପକ ଭୂସଂସ୍କାର ପାଇଁ ଚଟାକାର୍ଯ୍ୟ ସଂପନ୍ନ ହୋଇପାରିଥିଲା। ମାତ୍ର ସେ ସବୁକୁ କାର୍ଯ୍ୟକାରୀ କରିବାକୁ ସେ ସମୟ ପାଇପାରି ନ ଥିଲେ।

୧୯୫୦ ଠାରୁ ୧୯୫୬ ପର୍ଯ୍ୟନ୍ତ ପ୍ରାୟ ସାତ ବର୍ଷକାଳ ସେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ରହିଥିଲେ। ଅନ୍ୟ କେହି ଏତେ ଦୀର୍ଘକାଳ ଓଡ଼ିଶାରେ ମୁଖ୍ୟମନ୍ତ୍ରୀ ଭାବେ ରହିନାହାନ୍ତି। ଏହି ସମୟ ଭିତରେ ଯେଉଁ ସବୁ ଗୁରୁତ୍ୱପୂର୍ଣ୍ଣ ଆଇନମାନ ଗୃହୀତ ହୋଇଅଛି, ସେସବୁ ମଧ୍ୟରେ ପ୍ରଥମ ପଞ୍ଚବାର୍ଷିକ ଯୋଜନାର ପ୍ରାରମ୍ଭରେ କାର୍ଯ୍ୟକାରୀ ହୋଇଥିବା ଓଡ଼ିଶା ଜମିଦାରୀ ଉଚ୍ଛେଦ ଆଇନ୍ ଓଡ଼ିଶା ରାଜ୍ୟପକ୍ଷେ ସର୍ବଶ୍ରେଷ୍ଠ ଲୋକହିତକର ତଥା ଲୋକପ୍ରିୟ ଆଇନ।

ଏହି ଆଇନ୍ ସାରା ଭାରତବର୍ଷରେ ଏକ ନୂତନ ଇତିହାସ ସୃଷ୍ଟି କରି ଓଡ଼ିଶାରୁ ଘୃଣ୍ୟ ଜମିଦାରୀ ପ୍ରଥାର ବିଲୋପ ସାଧନ କଲା ଓ ଦରିଦ୍ର ଓଡ଼ିଶାବାସୀଙ୍କୁ ବହୁ ଦୁର୍ଦ୍ଦାନ୍ତ, ଅତ୍ୟାଚାରୀ ଜମିଦାରଙ୍କ କବଳରୁ ରକ୍ଷାକଲା। ତାଙ୍କର ଏହି

ସାହସିକ ପଦକ୍ଷେପ ତାଙ୍କର ଭାରତୀୟ ଜାତୀୟ କଂଗ୍ରେସର ସମାଜବାଦୀ ରାଷ୍ଟ୍ର ଗଠନ ଲକ୍ଷ୍ୟର ମୂଳଭିତ୍ତି ସ୍ଥାପିତ ହେଲା, କହିଲେ ଅତ୍ୟୁକ୍ତି ହେବନାହିଁ ।

ସ୍ୱର୍ଗତ ସର୍ଦ୍ଦାର ବଲ୍ଲଭଭାଇ ପଟେଲଙ୍କ ସାହସିକତା ଯୋଗୁଁ ଯେଉଁଭଳି ଭାରତରୁ ରାଜୋଡ଼ା ଶାସନର କଳଙ୍କିତ ଅଧ୍ୟାୟ ଲୋପ ହୋଇଥିଲା, ସେଇଭଳି ଜମିଦାରୀ ଉଚ୍ଛେଦ ଯୋଗୁଁ ଓଡ଼ିଶାରୁ ତଦ୍ରୂପ ଏକ କଳଙ୍କିତ ଅଧ୍ୟାୟ ଶେଷ ହେଲା । ଓଡ଼ିଶାର ନିଷ୍ପେଷିତ, ଅନ୍ତିକଙ୍କାଳସାର ମଣିଷ ସ୍ୱସ୍ତିର ନିଃଶ୍ୱାସ ମାରିଲା । ଏଣିକି ତା'ର ଘରଡିହ ଖଣ୍ଡିକ ବା ଦାନାର ସମ୍ବଳ ଜମି ଦ'ଗୁଣ୍ଠ ଭଳି ନ ପାହୁଣ୍ଡ ଗୋଟାଏ ତ୍ରେଞ୍ଚ୍‌ର ପାହାଡରେ ଜମିଦାର ମହାପ୍ରଭୁଙ୍କ ହସ୍ତମୁଦ ମାହାଲ (ନିଜ୍‌ଯୋତ-ନିଜ ଭୃଷଣରେ) ପରିଣତ ହୋଇଯିବ ନାହିଁ । "ଛ'ମାଣ ଆଠଗୁଣ୍ଠ" ଉପନ୍ୟାସ ଲେଖା ହେବାର ଆବଶ୍ୟକତା ଆଉ ରହିଲା ନାହିଁ । ଏହା ଥିଲା ଓଡ଼ିଶାବାସୀଙ୍କ ପାଇଁ ସ୍ୱାଧୀନତାର ପ୍ରଥମ ମଧୁର ତଥା ମନୋରମ ବାସ୍ତବତା । ସେ ମାଲିକ ଓ ତା'ଦ୍ୱାରା ନିର୍ବାଚିତ ସରକାର କେବଳ ପରସ୍ପରକୁ ବୋଲି ବୁଝିବା ଭଳି ଏକ ସରଳ, ଅର୍ଥପୂର୍ଣ୍ଣ ଭାବର କାର୍ଯ୍ୟକାରୀ ରୂପ ।

ପୁଣି ଓଡ଼ିଶା ଭୂସଂସ୍କାର ଆଇନ ଜମିର ସର୍ବୋଚ୍ଚ ସୀମା ଧାର୍ଯ୍ୟର ବ୍ୟବସ୍ଥା ରଖି ଭବିଷ୍ୟତ ସମାଜରେ ନିମ୍ନ ଓ ନିମ୍ନମଧ୍ୟବିତ୍ତ ଶ୍ରେଣୀ ପାଇଁ ପ୍ରଶସ୍ତ ପଥ ପରିଷ୍କାର କରିଦେଲା । ସମାଜବାଦୀ ବ୍ୟବସ୍ଥାରେ ଏହା ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ପଦକ୍ଷେପ ।

ସ୍ୱର୍ଗତ ଚୌଧୁରୀ ଯେ ଓଡ଼ିଶାର ଦରିଦ୍ର ଜନହୃଦୟର ନିଭୃତ କୋଣ ସ୍ପର୍ଶ କରିପାରିଥିଲେ, ଏ ସବୁ ତାହାର ପ୍ରମାଣ ଦିଏ । ଜମିଜମା ସଂସ୍କାର ଦୃଷ୍ଟିରୁ ତାଙ୍କର ପରିକଳ୍ପନା "ମାଲିକା" ସ୍ୱରୂପ ହୋଇ ରହିଥିବ । ତାଙ୍କର ବୈପ୍ଳବିକ ଭାବନା ତାଙ୍କୁ ସମାଜବାଦର ଜଣେ ସୁଦକ୍ଷ ଶିଳ୍ପୀ-କଳାକାର ରୂପେ ପ୍ରତିଷ୍ଠିତ କରିପାରିଥିଲା ।

ସେ ଜଣେ ବୈପ୍ଳବିକ ପୁରୁଷ ଥିଲେ ଓ ବିଶ୍ୱର ବିଶିଷ୍ଟ ବୈପ୍ଳବିକ ମହାତ୍ମାଙ୍କ ଆଦର୍ଶ ଅନୁଶୀଳନ ଓ ଅଧ୍ୟୟନ ତାଙ୍କର ଜୀବନାଭ୍ୟାସ ଥିଲା । ମାତ୍ର ବୁଦ୍ଧିହୀନ ଅନୁସରଣ ବା ଅନୁକରଣ ପାଇଁ ସେ ପ୍ରସ୍ତୁତ ନ ଥିଲେ । ତାଙ୍କର ନିଜସ୍ୱ ଚିନ୍ତାଶୀଳ ସ୍ୱଭାବ ତାଙ୍କୁ କେବଳ ଓଡ଼ିଶାରେ ନାହିଁକି, ସାରା ଭାରତରେ ଏବଂ ବିଶ୍ୱର ବହୁ ମନୀଷୀଙ୍କ ନିକଟରେ ବୈପ୍ଳବିକ ରୂପେ ପରିଚିତ କରାଇପାରିଥିଲା । କୌଣସି ସମୟରେ, କୌଣସି କ୍ଷେତ୍ରରେ ସେ ନିଜ ପାଇଁ ଏକ ସ୍ୱତନ୍ତ୍ର ସ୍ଥାନର ଆଶାୟୀ ନ ଥିଲେ ବା ଏଭଳି ଆଶାକୁ ସେ ନିଜ ଭିତରେ ପ୍ରଶ୍ରୟ ଦେଇ ନ ଥାଲେ । ସେ ସର୍ବଦା ନିଜକୁ ଜଣେ ସାଧାରଣ ନାଗରିକ ବୋଲି ଭାବୁଥିଲେ ଓ ସେହି ଭାବନାନୁଯାୟୀ ଜୀବନ ବିତାଉ ଥିଲେ । ତାଙ୍କର ନିକଟସଂପର୍କରେ ଆସିଥିବା ଯେ କୌଣସି ଲୋକ ଏହା ହୃଦୟଙ୍ଗମ କରିଥିବେ । ମାତ୍ର ଅନେକ ସମୟରେ ଏଭଳି ପାଖଲୋକେ କୌଣସି ମହାପୁରୁଷଙ୍କର ଅନ୍ତର୍ନିହିତ ଶକ୍ତି ଓ ମହାନତା ଅନୁଭବ କରିବାକୁ ଭୁଲିଗଲା ଭଳି ଓଡ଼ିଶାର ଲୋକେ ନବ ବାବୁଙ୍କୁ ବୁଝିବାକୁ ଚେଷ୍ଟା କରିନାହାନ୍ତି । ଏବର ଦଗ୍‌ଭ୍ରଷ୍ଟ ସମାଜ ତାଙ୍କୁ ଉଚିତ ସମ୍ମାନ ଦେବାରେ ଅକ୍ଷମଣୀୟ ତ୍ରୁଟି କରିଛି । ସାମନ୍ତବାଦ ପ୍ରଭାବିତ ସମାଜରେ ଏହା ସ୍ୱାଭାବିକ ।

ଭାରତରେ ସ୍ୱାଧୀନତା ସଂଗ୍ରାମ ଓ ତତ୍‌ପରବର୍ତ୍ତୀ କାଳର ଜଣେ ଉଚ୍ଚକୋଟିର ନେତାଭାବେ ନିଜର ଉନ୍ନତ ଚିନ୍ତାଧାରାର ମାନ ସର୍ବଦା ଅତୁଟ ରଖି ଏହି ରାଜ୍ୟର ଅବହେଳିତ ଓ ଅନୁନ୍ନତ ଜନତାର ଆର୍ଥିକ, ସାମାଜିକ ଓ ରାଜନୈତିକ ବିକାଶ ପାଇଁ କର୍ତ୍ତବ୍ୟ କରିବାରେ ସେ କେବେ ପଶ୍ଚାତ୍‌ପଦ ହୋଇନାହାନ୍ତି । ୧୯୫୬ ମସିହାରେ ରାଜନୀତିରୁ ବିଦାୟ ନେଇ ସେ ଭୂଦାନ ଆନ୍ଦୋଳନ ଜରିଆରେ ଏହି ଦିଗ କାର୍ଯ୍ୟରେ ନିଜକୁ ନିୟୋଜିତ ରଖିଥିଲେ । ଏଥିରେ ସେ ବିନୋବାଙ୍କୁ ଅନୁସରଣ କରୁଥିଲେ ହେଁ ଭୂଦାନ ଆନ୍ଦୋଳନର କାର୍ଯ୍ୟକାରୀ ପଦ୍ଧତି ଉପରେ ତାଙ୍କର ସ୍ୱତନ୍ତ୍ର ମତ ଥିଲା ଏବଂ ବିନୋବାଙ୍କ ସହିତ ତାଙ୍କର ମତଦ୍ୱୈଧ ମଧ୍ୟ ହେଉଥିଲା ।

ସେଥିଯୋଗୁଁ ସେ ଜୀବନର ଶେଷ ଭାଗରେ ଜୟପ୍ରକାଶଙ୍କ କର୍ମପନ୍ଥାକୁ ଅଧିକ ସମର୍ଥନ ଦେଉଥିଲେ, କାରଣ ଭୂଦାନ ଆନ୍ଦୋଳନ ଜରିଆରେ ସମାଜରେ ଶାନ୍ତି ପ୍ରତିଷ୍ଠିତ କରିବାରେ ଜୟପ୍ରକାଶଙ୍କର ତତ୍ପରତାକୁ ସେ ଅଧିକ ପସନ୍ଦ କରୁଥିଲେ, ସେ ଜରୁରୀକାଳୀନ ପରିସ୍ଥିତିରେ ଏଥିପାଇଁ ଶେଷଥର କାରାବରଣ କରିଥିଲେ । ଫଳରେ ତାଙ୍କର ସ୍ୱାସ୍ଥ୍ୟ

ସଂପୂର୍ଣ୍ଣ ଭର୍ତ୍ତି ପଢ଼ିଥିଲେ ଓ ଜୀବନର ଶେଷପର୍ଯ୍ୟନ୍ତ ସ୍ୱାଧୀନ ଥିଲେ । ଏମିତି ଅସୁସ୍ଥତା ସତ୍ତ୍ୱେ ସେ ନିଜର ଅଧ୍ୟୟନ ଅଭ୍ୟାସ ଅବ୍ୟାହତ ରଖିଥିଲେ, କାରଣ ଜନସେବା ପାଇଁ ସତତ ନିରନ୍ତରତାରେ ଜ୍ଞାନର ଅନ୍ୱେଷଣରେ ଲାଗି ନିଜର ଜ୍ଞାନ-ଭଣ୍ଡାର ବଢ଼ାଇବା ଯେ ସର୍ବାଦୌ ଆବଶ୍ୟକ, ଏକଥା ତାଙ୍କର ପ୍ରତ୍ୟେକ କାର୍ଯ୍ୟରେ ପ୍ରତିପନ୍ନ ହେଉଥିଲା । ତିରିଶ ବର୍ଷରୁ ଅଧିକକାଳ ତାଙ୍କର ପ୍ରତ୍ୟକ୍ଷ ସଂପର୍କରେ ଆସି ମୋର ଏହି ଧାରଣା ହୋଇଅଛି । ଏପରି କି ଦୈନନ୍ଦିନ ଜୀବନରେ ଶ୍ରେଷ୍ଠବଡ଼ ପ୍ରତ୍ୟେକ କାର୍ଯ୍ୟରେ ମଧ୍ୟ ତାଙ୍କର କେତେକ ଏକ ପରୋମର୍ଜିତ ବୃତ୍ତି ଏବଂ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଥିଲା, ତାହା ପ୍ରତ୍ୟକ୍ଷ ସଂପର୍କରେ ଆସି ନ ଥିବା କେହି ଅନୁମାନ କରିପାରିବେ ନାହିଁ ।

ଅନୁଗୁଳ ବାଳକୃଷ୍ଣ ଗ୍ରନ୍ଥାଗାରର ନବକଳେବର, ବାହ୍ୟିକ ଗାମ୍ଭୀର୍ଯ୍ୟର ପୃଷ୍ଠଭୂମିରେ ଏହି ଚିରସ୍ମରଣୀୟ ଯୁଗାନ୍ତକାରୀ ମହାପୁରୁଷ ଏବଂ ତାଙ୍କର ମନସ୍ୱୀ ସହଧର୍ମିଣୀ, ଅନନ୍ୟ-ସାଧାରଣ ନାରୀନେତ୍ରୀ ଶ୍ରୀଯୁକ୍ତା ମାଳତୀ ଚୌଧୁରୀଙ୍କ ନିରବଚ୍ଛିନ୍ନ ତ୍ୟାଗପୂତ ସାଧନା ଯେ ବିଦ୍ୟମାନ, ଏହା ସେଠାକାର ଗଗନ-ପବନ ସୂଚାଇଦିଏ ।

ସେହି ସମାଜବାଦୀ ସାଧକ ମହାପୁରୁଷଙ୍କର ସାଧନା-ଜ୍ୟୋତି ଆମ୍ଭମାନଙ୍କୁ ଅନ୍ଧକାରରୁ ଆଲୋକକୁ ନେଇଯାଉ । ଏହା ହିଁ ଆମର ଧ୍ୟେୟ ହେଉ । ସେହି ମହାନ୍ ସ୍ୱର୍ଗତ ଆତ୍ମା ଉଦ୍ଦେଶ୍ୟରେ ମୁଁ ଅନ୍ତରର ଶ୍ରଦ୍ଧା ଓ ଭକ୍ତି ଅର୍ପଣ କରୁଅଛି । ମୋପାଇଁ ବାପିର ଆଶୀର୍ବାଦ ହିଁ ଯଥେଷ୍ଟ ।

# ଅତୀତର ସମାଧି ଭିତରୁ

ଗୋକୁଳମୋହନ ରାୟ ଚୂଡ଼ାମଣି

ଓଡ଼ିଶାର ଅତୀତ ଗୌରବକୁ ଖୋଜିବାକୁ ଯାଇ ପ୍ରତ୍ନତତ୍ତ୍ୱବିତ୍‌ମାନେ ମାଟି ତାଡ଼ି ସେସବୁର ଭଗ୍ନାବଶେଷକୁ ଉଦ୍ଧାର କରୁଛନ୍ତି । ଏ ଜାତିର ଅତୀତ ଗରିମା ପ୍ରକଟ କରିବା ପାଇଁ ସେସବୁର ଅଂଶସବୁ ଯାଦୁଘରେ ପ୍ରଦର୍ଶିତ ହେଉଛି । ଆମେ ଅତୀତର ଇତିହାସ ଭୁଲିଯାଇଥିଲୁ, ଆମେ ପୂର୍ବପୁରୁଷମାନଙ୍କର ଦକ୍ଷତା, କୃତିତ୍ୱ ପାସୋରି ଯାଇଥିଲୁ । ଆମେ ଆତ୍ମବିଶ୍ୱାସ ହରାଇଥିଲୁ, ନିର୍ଜୀବ ହୋଇପଡ଼ିଥିଲୁ । ତେଣୁ ଏହି ଯାଦୁଘରେ ବା ଖୋଲାଯାଇ ଉଦ୍ଧାର ହୋଇଥିବା ସ୍ଥାନମାନଙ୍କରେ ଆମର ଅତୀତର ଗୌରବମୟ ଇତିହାସର ପୁନରୁଦ୍ଧାର କରି ଆମ ଭିତରେ ଆତ୍ମପ୍ରତ୍ୟୟ ସୃଷ୍ଟି କରିବାର ଉଦ୍ୟମ ହେଉଛି ।

ଓଡ଼ିଶା ଏବଂ ଭାରତବର୍ଷର ରାଜନୀତି ଓ ସାମାଜିକ ଅବସ୍ଥା ଯାହା ବର୍ତ୍ତମାନ ସେଥିରେ 'ଅନେକ ଚିନ୍ତାଶୀଳ ବ୍ୟକ୍ତି ଓ ସ୍ୱାଧୀନତା ସଂଗ୍ରାମୀ ନୈରାଶ୍ୟରେ ପଡ଼ି ପାଣ୍ଡି ହେଉଛନ୍ତି । ହୁଏତ ପଚିଶ, ଷାଠିଏ ବର୍ଷ ତଳର ରାଜନୈତିକ ସଂଗ୍ରାମର-ସ୍ୱାଧୀନତା ସଂଗ୍ରାମର-ସମାଧିକୁ ଖୋଳି ତା ଭିତରୁ କଙ୍କାଳ ସବୁକୁ ବାହାର କରି ଆମର ବଂଶଧରମାନଙ୍କ ଆଗରେ ଠିଆ କରାଇଲେ ଗତିପଥର ମୋଡ଼ ଭବିଷ୍ୟତ ପାଇଁ ବଦଳିଯାଇପାରେ ।

ସେଥିପାଇଁ ନବ ବାବୁଙ୍କ କଥା ଦି'ପଦ ଲେଖିବାକୁ ସାହସ କରୁଛି । ସାହସ ବି କରି ନଥାନ୍ତି ଯଦି ସୁରେନ୍ଦ୍ର ନାଥ ଦ୍ୱିବେଦୀ ଚିଠି ଲେଖି ନ ଥାନ୍ତେ ।

୧୯୩୦ ମସିହା କଥା । ଏଥିଭିତରେ ଚଉବନ ବର୍ଷ ବିତିଗଲାଣି । ୩୭ ବର୍ଷ ହେଲା ଭାରତବର୍ଷ ସ୍ୱାଧୀନ ହେଲାଣି । ସେତେବେଳେ ରାଜନୈତିକ ନେତା ଓ କର୍ମୀମାନଙ୍କର ଜୀବନର ଆଦର୍ଶ ଥିଲା ତ୍ୟାଗ ଉପରେ ପ୍ରତିଷ୍ଠିତ । ବର୍ତ୍ତମାନ ତାହାର ବିପରୀତ ଦେଖିବାକୁ ମିଳୁଛି । ବର୍ତ୍ତମାନର କଂଗ୍ରେସ ନେତା ଓ କର୍ମୀଙ୍କର ଆଦର୍ଶ ଭୋଗ ଉପରେ ପ୍ରତିଷ୍ଠିତ । ମାଲତୀ ଦେବୀ ତାଙ୍କର ଅଳଙ୍କାର ଓ ନବ ବାବୁ ତାଙ୍କର ଜମି ରାଜନୈତିକ କାମ ପାଇଁ ଦାନ କରିଥିଲେ ଏବଂ ଅଣଷିଆରେ ଗୋଟିଏ ଗାଁରେ ରହିଥିଲେ । ସେହି ଅତୀତର କଙ୍କାଳକୁ ଠିଆ କରାଇବାକୁ ଚେଷ୍ଟା କଲାବେଳେ ନବ ବାବୁଙ୍କୁ ବାଦ୍ ଦିଆଯାଇପାରିବ ନାହିଁ, କାରଣ ସେତେବେଳକାର ପରିସ୍ଥିତିରେ ସେ ଥିଲେ ଏକ ବୈପ୍ଳବିକ ନେତୃତ୍ୱ । ଇଂରେଜ ସରକାରର ଶାସନ, ତା ସାଙ୍ଗକୁ ତାଙ୍କର ହୁକୁମ ତାମିଲ କରୁଥିବା ଜମିଦାର, ସାହୁକାର ଓ ରାଜଭକ୍ତ କର୍ମଚାରୀବୃନ୍ଦ । ଓଡ଼ିଶାର ଅର୍ଥନୀତି ଓ ସାମାଜିକ ବ୍ୟବସ୍ଥା ଥିଲା ସାମନ୍ତବାଦୀ । ଜମିଦାର, ମହନ୍ତ ଓ ଗଡ଼ଜାତ ରାଜାମାନଙ୍କର ଅତ୍ୟାଚାର ଓ ଶୋଷଣ ବର୍ଣ୍ଣନା କଲେ ଏକ ବିରାଟ ଗ୍ରନ୍ଥ ହୋଇଯିବ । ତେବେ ଏତିକି କହିଲେ ଯଥେଷ୍ଟ ହେବ ଯେ ନିଜର ଘରଡିହ ଉପରେ, ଗାଈଗୋରୁ, ଛେଳିମେଣ୍ଢା ଉପରେ, ନଡ଼ିଆଗଛ, କଦଳୀ ଗଛ, ଗାଡ଼ିଆ ପୋଖରୀ, ଅମଳ କରୁଥିବା ଫସଲ ଏପରି କି ନିଜର ପରିଶ୍ରମ ସବୁକିଛିର ଅଧିକାରୀ ଥିଲେ ଏହି ଜମିଦାର, ମଠ ମହନ୍ତ ଓ ରାଜାମାନେ । ନିଜର ସ୍ତ୍ରୀ ଓ କନ୍ୟା ଉପରେ ମଧ୍ୟ ସେମାନଙ୍କର ଅଧିକାର ଥିଲା । ଏହି ଜଘନ୍ୟ ଓ ପୈଶାଚିକ, ବର୍ବର ସାମାଜିକ ଓ ଅର୍ଥନୈତିକ ବ୍ୟବସ୍ଥା ବିରୁଦ୍ଧରେ ୧୯୩୪ରେ ବିଧିବଦ୍ଧ ଭାବରେ କୃଷକ ଆନ୍ଦୋଳନ ଆରମ୍ଭ ହେଲା । ନବ ବାବୁ ଏହି ବୈପ୍ଳବିକ ଆନ୍ଦୋଳନର ନେତୃତ୍ୱରେ ଥିଲେ ।

ତାଙ୍କୁ ଘେରି ଠିଆ ହେଲେ କଂଗ୍ରେସ ଭିତରେ ଥିବା ଯୁବଗୋଷ୍ଠୀ । ହଜାର ହଜାର ସଭା ସମିତି । ଦିନ ରାତି ସମାନ ହୋଇଗଲା । ଅବିରାମ କାମ । ମୋଗଲବନ୍ଦୀ ଓ ଗଡ଼ଜାତର ସମସ୍ତ ଗାଁଗଣ୍ଡାକୁ ସାମନ୍ତବାଦୀ ସମାଜ ବିରୁଦ୍ଧରେ ବିଦ୍ରୋହର ନିଆଁ ବ୍ୟାପିଲା । ନବ ବାବୁଙ୍କ କଥା କହିଲାବେଳେ ମାଲତୀ ଦେବୀଙ୍କୁ ବାଦ୍ ଦେଇହେବ ନାହିଁ । ସେତେବେଳେ ନେତାମାନଙ୍କ ପାଇଁ ଉଡ଼ାଜାହାଜ ତ ଦୂରର କଥା, ମଟର ବା ଜିପ୍ ନାହିଁ । ପାଦ ବା ଶଗଡ଼ (ବଳଦଗାଡ଼ି) ହେଉଛି ଯାନ-

ବାହିନୀ । ନବ ବାବୁଙ୍କ କଥା ଶୁଣି ମାଳତୀ ଦେବୀ ଏକାଦିକ୍ରମେ ପନ୍ଦର କୋଡ଼ିଏ ମାଇଲ ଚାଲି ଯାଉଥିଲେ ସଭା କରିବା ପାଇଁ, ଗାଁଗଣ୍ଡା ବୁଲିବା ପାଇଁ । ୧୯୩୪ ବା ୧୯୩୫ ହେବ । ପୁରୀ ଜିଲ୍ଲା ନୂଆହାଟରେ ଜିଲ୍ଲା କୃଷକ ସମ୍ମିଳନୀର ସମସ୍ତ ଆୟୋଜନ; କିନ୍ତୁ ସମ୍ମିଳନୀର ପୂର୍ବ ଦିନରୁ କଳାହାଣ୍ଡିଆ ମେଘ ଆକାଶକୁ ଘୋଡ଼ାଇଲା । ଅଜସ୍ର ବର୍ଷା, ନଈରେ ବଢ଼ି ଆସିଲା, ତଥାପି ସମ୍ମିଳନୀ ହେବ । ସେହି ଘୋର ବର୍ଷାରେ ଭୀମ ବଢ଼ିଲା ନଈକୁ ପାରହୋଇ ନବ ବାବୁ ଓ ମାଳତୀ ଦେବୀ ଆସି ପହଞ୍ଚିଲେ ନୂଆହାଟରେ । ସନ୍ଧ୍ୟା ପୂର୍ବରୁ ଆକାଶ ମେଘାଚ୍ଛନ୍ନ ଥିଲେ ଘୁଡ଼ା, ବିଜୁଳି ଓ ଘଡ଼ଘଡ଼ି ମାରୁଥିଲେ ବି ବର୍ଷା ଛାଡ଼ିଗଲା । ସମ୍ମିଳନୀ ହେଲା, ଅପୂର୍ବ ଉତ୍ସାହ । ୧୦ ହଜାର ଲୋକ ସମ୍ମିଳନୀରେ, ୧୯୩୪ ଠାରୁ ୧୯୩୯ ଭିତରେ ମୋଗଲବନ୍ଦୀ ଜମିଦାରୀ ଅଞ୍ଚଳଠାରୁ ଆରମ୍ଭ କରି ଗଡ଼ଜାତ ଅଞ୍ଚଳରେ ଗଣ ବିପ୍ଳବ ଅଭୂତପୂର୍ବ ରୂପ ଧାରଣ କରିଥିଲା ।

ଏହି ବିପ୍ଳବରେ ସବୁ ଗାଁ, ସମଗ୍ର ଚାଷୀ ଝାମ୍ପ ଦେଇଥିଲେ । ସାମନ୍ତବାଦର ବିଲୋପ ପାଇଁ ସେ ଦିନ ଯେଉଁ ବିପ୍ଳବ, ତା'ର ମୂଳକୁ ଦୋହଲାଇ ଦେଇଥିଲା । ତା'ର ସମାପ୍ତି ଘଟିଲା ଜମିଦାରୀ ପ୍ରଥା ଉଚ୍ଛେଦ ଓ ଗଡ଼ଜାତ ଶାସନର ଅବସାନରେ । ଓଡ଼ିଶାର ଏହି ବାମପନ୍ଥୀ ଆନ୍ଦୋଳନର ପ୍ରତିରୋଧ କଂଗ୍ରେସ ଭିତରେ ମଧ୍ୟ ଚାଲିଥିଲା । ବାହାରେ ତ ଇଂରେଜ ସରକାର ଓ ଜମିଦାର ରାଜାମାନେ ଏହାକୁ ଦମନ କରିବା ପାଇଁ ସମସ୍ତ ଶକ୍ତି ଖଟାଉଥିଲେ; କିନ୍ତୁ ସମସ୍ତ ପ୍ରତିରୋଧ ସତ୍ତ୍ୱେ ଏହି ଆନ୍ଦୋଳନ ଏକ ଗଣ ବିଦ୍ରୋହର ରୂପ ନେଇ ଆଗେଇ ଯାଇଥିଲା ଅତି କ୍ଷିପ୍ରଗତିରେ । ନବ ବାବୁ ଥିଲେ ଏହି ବାମପନ୍ଥୀ ଆନ୍ଦୋଳନର ନେତୃମଣ୍ଡଳୀ ଭିତରେ ଜଣେ ମୁଖ୍ୟ । ଢେଙ୍କାନାଳରେ ଯେତେବେଳେ ଦ୍ୱିତୀୟ ପର୍ଯ୍ୟାୟରେ ସତ୍ୟାଗ୍ରହ କରିବାର ନିଷ୍ପତ୍ତି ହେଲା, ସେ ପ୍ରଥମେ ସତ୍ୟାଗ୍ରହୀ ଦଳର ନେତୃତ୍ୱ ନେଇ ବନ୍ଦୀ ହୋଇଥିଲେ । ଏହି ଗଡ଼ଜାତ ଆନ୍ଦୋଳନ ତୀବ୍ର ଜନସାଧାରଣଙ୍କ ଭିତରେ ଏତେଦୂର ବ୍ୟାପିଥିଲା ଯେ ରଣପୁରରେ ପଲିଟିକାଲ୍ ଏଜେଣ୍ଟଙ୍କୁ ଲୋକେ ପିଟି ପିଟି ମାରିଦେଇଥିଲେ । ଏ ଆନ୍ଦୋଳନର ନିର୍ଦ୍ଦିଷ୍ଟ ଲକ୍ଷ୍ୟ, ଉଦ୍ଦେଶ୍ୟ ଥିଲା ତା'ର ସଂଗଠନ । ସେତେବେଳେ ସାହିତ୍ୟ ଓ ଲେଖାରେ ମଧ୍ୟ ପରିବର୍ତ୍ତନ ଘଟିଲା ।

ପ୍ରଥମ କରି ସାମ୍ୟବାଦ ଚିନ୍ତାଧାରାକୁ ଜନସାଧାରଣଙ୍କ ସାମନାରେ ଥୋଇବା ପାଇଁ ବାହାରିଲା ସାପ୍ତାହିକ ପତ୍ରିକା 'ସାରଥି' । ତା'ର ସମ୍ପାଦକ ଥିଲେ ନବ ବାବୁ । ତା'ପରେ ବାହାରିଲା 'କୃଷକ'— ସାମନ୍ତବାଦ ବିରୋଧୀ ବିପ୍ଳବର ଶାଣିତ ହତିଆର । ପ୍ରତିଷ୍ଠିତ ହେଲା କଂଗ୍ରେସ-ସାମ୍ୟବାଦୀ ଦଳ ବା କଂଗ୍ରେସ ସୋସିଆଲିଷ୍ଟ ପାର୍ଟି । ଭାରତବର୍ଷ କେବଳ ସ୍ୱାଧୀନ ହେବ ନାହିଁ, ଭାରତବର୍ଷରେ ସାମ୍ରାଜ୍ୟବାଦୀ ଇଂରେଜ ସରକାରକୁ ଲୋପ କରିବା ସଙ୍ଗେ ସଙ୍ଗେ ଭାରତବର୍ଷରୁ ସାମନ୍ତବାଦୀ ଓ ପୁଞ୍ଜିବାଦୀ ଶୋଷଣକୁ ଲୋପ କରିବାକୁ ହେବ । ସେଥିପାଇଁ କଂଗ୍ରେସ ଭିତରେ ଥିବା ତରୁଣ କର୍ମୀମାନଙ୍କୁ ନେଇ ଗଠିତ ହେଲା କଂଗ୍ରେସ ସୋସିଆଲିଷ୍ଟ ପାର୍ଟି । ସମ୍ମିଳନୀ ହେଲା କାଠଯୋଡ଼ି କୂଳରେ ଥିବା ନବ ବାବୁଙ୍କ ଘରେ । ସେ ଥିଲେ ଏହାର ଜଣେକ ନାୟକ ।

୧୯୩୪-୧୯୩୯ ଛଅ ବର୍ଷ ହେଉଛି ଓଡ଼ିଶାର ଇତିହାସରେ ଏକ ବୈପ୍ଳବିକ ଯୁଗ । ସମାଜର ପ୍ରତ୍ୟେକଟି ଅଂଶରେ ଏହା ବୈପ୍ଳବିକ ପରିବର୍ତ୍ତନ ଆଣିଥିଲା । କୁସଂସ୍କାର, ସାମାଜିକ ବିଧି ବ୍ୟବସ୍ଥା, ମାନ୍ଦା ରାଜନୈତିକ ଚିନ୍ତାଧାରା ଓ କାର୍ଯ୍ୟ, ପୁରାତନ ଅର୍ଥନୈତିକ ବ୍ୟବସ୍ଥା ସବୁର ଉପରେ ସେ କୁଠାରାଘାତ କରିଥିଲେ । ଏହି ଯୁଗର ନାୟକମାନଙ୍କ ମଧ୍ୟରେ ମୁଖ୍ୟ ସ୍ଥାନରେ ଥିଲେ ନବ ବାବୁ ଓ ମାଳତୀ ଦେବୀ । ଓଡ଼ିଶାର ସମସ୍ତ ପ୍ରଗତିଶୀଳ ଆନ୍ଦୋଳନର ଆଗଭୂମି ବାହିନୀରେ ଥିବେ ନବ ବାବୁ ଓ ମାଳତୀ ଦେବୀ ।

ନବ ବାବୁ ବା ମାଳତୀ ଦେବୀଙ୍କ ବିଷୟରେ ଲେଖିବାକୁ ହେଲେ ଓଡ଼ିଶାର ବୈପ୍ଳବିକ ଯୁଗର ଇତିହାସ ଲେଖିବାକୁ ହେବ । ଏହାର ସମୟକାଳ ସ୍ୱଳ୍ପ ହେଲେ ମଧ୍ୟ ଏହାର ଗଳ୍ପାଘର ବିରାଟ ଏବଂ ଏହା ବୈପ୍ଳବିକ ମାଳପଞ୍ଝରେ ଭରପୂର ।

ନବ ବାବୁଙ୍କ ସହିତ ମୋର ରାଜନୈତିକ ମତଭେଦ ଥିଲା ମାର୍କସବାଦ ଓ କମ୍ୟୁନିଷ୍ଟ ପାର୍ଟି ନେଇ । ଏପରି କି ତାଙ୍କ ମୋ ଭିତରେ ଦୂରତା ମଧ୍ୟ ବେଶୀ ବଢ଼ି ଯାଇଥିଲା । ବିଶେଷ କରି ସ୍ୱାଧୀନତା ପରେ । ତଥାପି ସତ୍ୟର ଯଦି ଅପଲାପ ନ କରେ, ତେବେ ସ୍ୱୀକାର କରିବି ଓଡ଼ିଶାର ବୈପ୍ଳବିକ ଅଭ୍ୟୁତ୍ଥାନରେ ତାଙ୍କର ଅବଦାନ ଅମାପ ଏବଂ ବ୍ୟକ୍ତିଗତ ଜୀବନ, ସାଧୁତା ଓ ତ୍ୟାଗର ପରାକାଷ୍ଠା ଆଦର୍ଶ ସ୍ଥାନୀୟ ଓ ଅନୁକରଣୀୟ ।

---

# ସେଦିନର ସ୍ମୃତି

## ଚନ୍ଦ୍ରଶେଖର ନାୟକ

୧୯୪୨ ମସିହାର ଏକ ଭୟଙ୍କର ମୁହୂର୍ତ୍ତ । କାର୍ତ୍ତିକ ମାସ । ହଠାତ୍ ମାଡ଼ିଆସିଲା ଏକ ନାହିଁ ନ ଥିବା ତୋଫାନ । ଦିନେ ନାହିଁ କାଳେ ନାହିଁ, ବୁଢ଼ାବୁଢ଼ୀମାନେ ଏତେ ବୟସ ମୂଳ ପାଳଟି ଯାଉଥାନ୍ତି; ତାଙ୍କ ଜୀବନକାଳ ଭିତରେ ଏ ଭୟଙ୍କର ଦୃଶ୍ୟ ସେମାନେ କେବେ ଦେଖିନାହାନ୍ତି । ପୁଣି ମିଳିଲା ତଳେ ଏ କି କାଣ୍ଡ ! ସୁଦର୍ଶନଚକ୍ର ଘୂରିଲା ପରି ପବନର ସାଇଁ ସାଇଁ ଡାକ । ଶତ ଶତ ବୃକ୍ଷଲତାର ଭୂମିଶଯ୍ୟା । ପକ୍କାଘର ଦୋହଲି ଉଠୁଛି । ପ୍ରାବୃଟର ପ୍ରବଳ ବର୍ଷଣ । ବଡ଼ଦାଣ୍ଡ ଜନମାନବଶୂନ୍ୟ । ବାସସ୍ଥାନମାନଙ୍କ ଅବସ୍ଥା ଗାଁ'ଣି ଗାଇଲେ ସରିବ ନାହିଁ । ନାହିଁ ଚୁଲି, ନାହିଁ ଶୁଖିଲା । ସତେ ଯେପରି ମନେହେଉଛି ଖଣ୍ଡ ପ୍ରଳୟ ମାଡ଼ିଆସୁଛି ।

ମୁଁ ସେତେବେଳେ ପୁରୀ ବନ୍ଦୀଶାଳାରେ ଅଟକବନ୍ଦୀ । ଯୋଗକୁ ବିପ୍ଳବୀ ନବକୃଷ୍ଣ ଚୌଧୁରୀ ଥାନ୍ତି ସେହି ବନ୍ଦୀଶାଳାରେ । ବନ୍ଦୀଶାଳାର କର୍ତ୍ତା, ଭର୍ତ୍ତା ପ୍ରହରୀ ଯେ ଯାହା ଘରେ ଆତ୍ମରକ୍ଷାରତ । ଆମ ବନ୍ଦୀମାନଙ୍କୁ ବା ପଚାରେ କିଏ ? ଦୁଇଦିନ ବିତିଗଲା । ଝଡ଼ବତାସର ଅନ୍ତ ନାହିଁ । ବନ୍ଦୀଶାଳାରେ କାହାରି ଦେଖା ନାହିଁ । ବନ୍ଦୀମାନଙ୍କ ଭିତରେ ପ୍ରବଳ ଆଲୋଡ଼ନ, ଫାଟକ ଭାଙ୍ଗି ପଳେଇଯିବା । ନବ ବାବୁଙ୍କ ପରାମର୍ଶ ଲୋଡ଼ିଲୁ । ଆମେ ତାଙ୍କୁ ମୁରବି ପରି ମାନୁଥାଉ । ସେ କହିଲେ, ନା । ଆମେ ପଳାୟନପନ୍ଥୀ ନୋହୁଁ । ତେଣୁ ଚାଲ, ଆଗ ବନ୍ଦୀଶାଳାରେ କୌଣସି ସୁରକ୍ଷିତ କକ୍ଷରେ ଆତ୍ମରକ୍ଷା କରିବା । ବନ୍ଦୀଶାଳାର ବିରାଟ ପ୍ରାଚୀର ବାହାରପଟକୁ ଲାଗିଛି । ଦେବାନୀ ଫାଟକ (Civil Jail) କକ୍ଷଟିର ମୁଖ ବାହାରପଟକୁ । ନବ ବାବୁଙ୍କ ପରାମର୍ଶ ଏଇ ପାଚେରୀକୁ ଭାଙ୍ଗି ଦେବାନୀ ଫାଟକରେ ପଶି ଆତ୍ମରକ୍ଷା କରିବା । ଏହା ଅତ୍ୟନ୍ତ ଯୁକ୍ତିଯୁକ୍ତ । ସମସ୍ତଙ୍କ ମନକୁ ପାଇଲା । ତେବେ ପଡ଼ିବ କିପରି ? ଆମ ଭିତରୁ ପଞ୍ଚାଏ ଦୌଡ଼ିଲେ ଘାଣି (ତେଲଘଣା) ଆଡ଼କୁ । ଘଣାର ଶାବଳ ଓ ଆଉ କେତେକ ଆନୁଷଙ୍ଗିକ ଲୌହ ଉପକରଣ ଗୋଟାଇ ଆଣିବାକୁ । ସେହି ବର୍ଷା ତୋଫାନ ଭିତରେ ଚାଲିଲା ପାଚେରୀ ଭଙ୍ଗା । ଏତେବେଳକୁ ଯାଇ ଜେଲକର୍ତ୍ତାଙ୍କ ନିଦ ଭାଙ୍ଗିଲା । ଜରୁରୀକାଳୀନ ବିଗୁଲ ବାଜିଉଠିଲା । ମାତ୍ର ଆରକ୍ଷୀ କାହାନ୍ତି ? ସେହି ଝଡ଼ବତାସ ଭିତରେ ଥରି ଥରି ବନ୍ଧୁକଟିମାନ ହାତରେ ଧରି କେତେଟି ସଶସ୍ତ୍ର ପୋଲିସ ଦେବାନୀ ଫାଟକର ଛାତ ଉପରେ ଚଢ଼ି ପାଚେରୀ ପଡ଼ୁଥିବା ଆମ ବନ୍ଦୀମାନଙ୍କୁ ଗୁଳି କରିବାକୁ ଉଦ୍ୟତ । ମୋର ନୂଆ ବନ୍ଦୀଜୀବନ । ମୁଁ କେବଳ ନୀରବଦ୍ରଷ୍ଟା ଥାଏ । ଆମ ରାଜବନ୍ଦୀଙ୍କ ଛଡ଼ା ଆଉ କେତେକ ଅଣରାଜନୈତିକ ବନ୍ଦୀ ମଧ୍ୟ ଏହି ଆତ୍ମରକ୍ଷା ପାଚେରୀ ତଡ଼ାରେ ଭାଗ ନେଇଥାନ୍ତି । ଦେଖିଲି ପୁରୋଭାଗରେ ରହିଛନ୍ତି ନବ ବାବୁ । ତାଙ୍କ ସଙ୍ଗେ ପୁରୀର ସ୍ୱନାମଧନ୍ୟ ଯୁବ-ସଂଗ୍ରାମୀ ଶ୍ରୀ ଭଗବାନ ପ୍ରତିହାରୀ । ପ୍ରତିହାରୀଙ୍କ ସ୍ଥୂଳ ବପୁ, ଗୋରା ତକ ତକ ଦେହ । ଅପୂର୍ବ ସାହସ ମୋତେ ଅଭିଭୂତ କରୁଥାଏ । ନବ ବାବୁଙ୍କ ସହ ସେ ଉନ୍ମୁକ୍ତ ବକ୍ଷାଗତ ବକ୍ଷ ଦେଖାଇ—"ମାର ଯେତେ ପାରୁଛ ଗୁଳି ମାର" ବୋଲି କହି ଯେପରି ସମସ୍ତଙ୍କର ନେତୃତ୍ୱ ନେଇଥାନ୍ତି, ତାହା ଅଭୂତପୂର୍ବ । ତାଙ୍କ ସଙ୍ଗକୁ ଥାନ୍ତି ଆଉ ଜଣେ ରାଜବନ୍ଦୀ ଶ୍ରୀ ପଦ୍ମଚରଣ ସାମନ୍ତସିଂହାର । ସମସ୍ତଙ୍କର ପ୍ରିୟ ପଦଭାଇ । ନିମାପଡ଼ା ଥାନା ମଣିକର୍ଣ୍ଣ ସାଆନ୍ତ ପରିବାରରେ ତାଙ୍କର ଜନ୍ମ । ନିମାପଡ଼ା ଥାନା ଦଖଲ ଅଭିଯାନ ସନ୍ଦେହରେ ଗିରଫ ହୋଇଥାନ୍ତି । ଦେବାନୀ ଫାଟକ ପାଚେରୀ ତଡ଼ାରେ ତାଙ୍କର ସାହସ କୌଣସି ଗୁଣରେ ଊଣା ନ ଥାଏ । ମନରେ ଆତଙ୍କ ଜାତ ହେଉଥାଏ, ଏମାନେ ପୋଲିସର ଗୁଳିରେ ଆମର ପାଇଁ ଶିକାର ହୋଇଯିବେ ।

ଏହି ଆତ୍ମରକ୍ଷା ସଂଗ୍ରାମ ବୃଥା ହେଲା ନାହିଁ । ସ୍ୱର୍ଗତ ସିଭିଲ ସର୍ଜନ କାଶୀନାଥ ମିଶ୍ର ସେତେବେଳେ ପୁରୀ ବନ୍ଦୀଶାଳାର ଅଧୀକ୍ଷକ । ସେ ଅତ୍ୟନ୍ତ ଭଦ୍ର ଓ ଉଦାର । ଖବର ପାଇବାମାତ୍ରେ ସେ ସେହି ବର୍ଷା ତୋଫାନରେ ଉଠନ୍ତ ବୁଡ଼ନ୍ତ ଆମ ପାଖକୁ ଆସିଲେ । ବନ୍ଦୀଶାଳାର ପ୍ରତିବେଶୀ ବଡ଼ଡାକ୍ତରଖାନାର ସମ୍ମୁଖ କକ୍ଷରୁ ରୋଗୀମାନଙ୍କୁ ଅନ୍ୟତ୍ର ସ୍ଥାନାନ୍ତର କରାଯାଇ ଆମ ପାଇଁ ସେହିଠାରେ ସ୍ଥାନ କରାଗଲା । ସମସ୍ତେ ସେହି କକ୍ଷକୁ ଯାଇ ଶୁଷ୍କାବାସରେ ରହିଲା ପରି ଅବସ୍ଥାନ କଲୁ । ଦ୍ୱାରପାଖେ ଆରକ୍ଷୀ ଜଗିଲେ । ଆମର ଆତ୍ମରକ୍ଷା ହେଲା । ଖାଦ୍ୟପେୟ ଓ ପରିଧାନର ସମସ୍ତ ବନ୍ଦୋବସ୍ତ ହୋଇଗଲା ।

ଦ୍ୱିତୀୟ ପର୍ଯ୍ୟାୟରେ ଆରମ୍ଭ ହେଲା ମୋକଦ୍ଦମା । ବନ୍ଦୀଶାଳାରୁ ପଳାୟନ ପାଇଁ ଉଦ୍ୟମ ଅଭିଯୋଗର ମାମଲା । ସ୍ୱର୍ଗତ ଦାମୋଦର ମହାନ୍ତି ସେତେବେଳେ ପୁରୀର ଜେଲର । ନବ ବାବୁଙ୍କୁ ସେ ନବଭାଇ ବୋଲି ଡାକନ୍ତି । ତାଙ୍କ କଥା ବଡ଼ ଧୀର ସ୍ଥିର । ବ୍ୟବହାର ଭଲ । ବନ୍ଦୀମାନଙ୍କର କେହି ଆତ୍ମୀୟସ୍ୱଜନ ବନ୍ଦୀଶାଳାକୁ ସାକ୍ଷାତ ପାଇଁ ଆସି ଶୋକାକୁଳ ହେଉଥିବା ବେଳେ ଦାମୋଦରଙ୍କ ଚକ୍ଷୁ ମଧ୍ୟ ଅଶ୍ରୁସ୍ନାତ ହୋଇଯାଉଥିଲା । ନବ ବାବୁ ତାଙ୍କୁ ଦାମଭାଇ ବୋଲି ଡାକୁଥିଲେ । ଡାକ୍ତର ଦୁର୍ଗା ବାବୁ ଜେଲ ଡାକ୍ତର ସୁପ୍ରସନ୍ନ ବାବୁ ସହକାରୀ ଜେଲର । ସେ ପୋକ ପରି ନଖ ରଖିଥାନ୍ତି । କଥା ଧୀର; ମାତ୍ର ଟିକିଏ ଫୁଲିଆ । ସମସ୍ତେ ସାକ୍ଷୀ ତଲବ ହେଲେ ।

ବନ୍ଦୀମାନଙ୍କ ତରଫରୁ ମୋକଦ୍ଦମା ଲଢ଼ିବ କିଏ ? ଇଂରେଜ ସରକାରଙ୍କ କୂଟକପଟ ଜାଲଚକ୍ର ଭେଦକରି ଆଗେଇ ଆସିବା ଭଳି ସତ୍‌ସାହସ ଅଛି କାହାର ! ନବ ବାବୁଙ୍କ ଦୃଷ୍ଟିରେ ଥିଲେ ସେହି ସ୍ୱାଧୀନଚେତା ଆଡ଼ଭୋକେଟ ଶ୍ରୀ ହରିହର ମହାପାତ୍ର । ପରବର୍ତ୍ତୀ ସମୟରେ ସେ ପାଟନା ହାଇକୋର୍ଟର ଜଷ୍ଟିସ ହେଲେ । ପୁରୀ କଚେରୀରେ ବନ୍ଦୀମାନଙ୍କର ବିଚାର ହେଲା । ସ୍ୱର୍ଗତ ନବକୃଷ୍ଣ ଚୌଧୁରୀ ଓ ଭଗବାନ ସତପଥୀ ପ୍ରମୁଖ ବନ୍ଧୁ ରାଜବନ୍ଦୀ ମୁଦ୍ଦାଲା ରୂପେ ଥରକୁ ଥର ଆରକ୍ଷୀ ପରି-ବେଷ୍ଟିତ ହୋଇ କଚେରୀକୁ ଯିବାକୁ ଲାଗିଲେ । କଚେରୀରେ ନବ ବାବୁ ପ୍ରମୁଖଙ୍କୁ ଦେଖିବାକୁ ପ୍ରବଳ ଭିଡ଼ । ନବ ବାବୁ ଶ୍ରୀଯୁକ୍ତ ମହାପାତ୍ରଙ୍କୁ ମୋକଦ୍ଦମାର ସବୁ ଭେଦ ବତାଇ ଦେଲେ । ବନ୍ଦୀମାନଙ୍କ ତରଫରୁ ଆଡ଼ଭୋକେଟ ମହାପାତ୍ର ଜବାବରେ କହିଲେ ଯେ ଯେଉଁ ସ୍ଥାନରେ ଜେଲ ପାଚେରି ଭଙ୍ଗା ଯାଉଥିଲା, ତାହା ଦେବାଣୀ ଫାଟକକୁ ଯିବାର ପ୍ରବେଶପଥ ହୋଇଥାଏ । ବାହାରକୁ ପଳାଇ ଯିବାର କୌଣସି ସୁବିଧା ଉପୁଜି ନ ଥାଏ ।

ଏହି ଗୋଟିକ ଯୁକ୍ତିରେ ଅଭିଯୋଗ ସାବ୍ୟସ୍ତ ହୋଇପାରିଲା ନାହିଁ । ବନ୍ଦୀମାନେ ମୂଳ ଅଭିଯୋଗରୁ ମୁକ୍ତ ହେଲେ । ମାତ୍ର ସରକାରୀ ସମ୍ପତ୍ତି ନଷ୍ଟଭ୍ରଷ୍ଟାଦି ଅଭିଯୋଗରେ କେତେକଙ୍କୁ ସଜା ହେଲା ।

କଂଗ୍ରେସରେ ସମାଜବାଦୀ ଦଳ ସଙ୍ଗଠନରେ ଜୟପ୍ରକାଶ ନାରାୟଣଙ୍କ ନେତୃତ୍ୱରେ ଯେଉଁ ଉଦ୍ୟମ ଆରମ୍ଭ ହୋଇଥିଲା, ନବକୃଷ୍ଣ ଚୌଧୁରୀ ଥିଲେ ତହିଁର ଅନ୍ୟତମ ଉଦ୍ୟୋକ୍ତା । ସମାଜବାଦୀ ଦଳ ଭାରତରୁ ଇଂରେଜ ଶାସନର ଆଶୁ ଅବସାନ ପାଇଁ ଅସ୍ଥିର ହୋଇ ଉଠିଥାନ୍ତି । ଗାନ୍ଧୀଜୀ ଜନଜାଗୃତିକୁ ଚାପି ଦେଉଛନ୍ତି ବୋଲି ସେମାନଙ୍କର ଧାରଣା ଜନ୍ମିଥାଏ । ମାତ୍ର ମହାତ୍ମା ଗାନ୍ଧୀଙ୍କ ନିର୍ଦ୍ଦେଶ ପରାମର୍ଶ ଓ ସମ୍ମତିରେ ଭାରତରୁ ଇଂରେଜ ଶାସନର ତୁରନ୍ତ ଅବସାନ ପାଇଁ ୧୯୪୨ ଅଗଷ୍ଟ ୮ ତାରିଖରେ ବମ୍ବେ ଗୋଆଲିଆ ଟ୍ୟାଙ୍କ ମଇଦାନରେ କଂଗ୍ରେସ ଯେଉଁ ଐତିହାସିକ ପ୍ରସ୍ତାବ ଗ୍ରହଣ କଲା, ସେଥିରେ କଂଗ୍ରେସ ସମାଜବାଦୀମାନଙ୍କ ଦୃଷ୍ଟିଭଙ୍ଗୀ ବଦଳିଗଲା । ସେମାନେ ମହାତ୍ମା ଗାନ୍ଧୀଙ୍କୁ ଜଣେ ଅଦ୍ୱିତୀୟ ବିପ୍ଳବୀ ବୋଲି ସ୍ୱୀକାର କରିଗଲେ । ଯେଉଁ କେତେଜଣ ମୁଷ୍ଟିମେୟ କଂଗ୍ରେସ ସମାଜବାଦୀ ଦଳରୁ ବିଚ୍ଛିନ୍ନ ହୋଇ କମ୍ୟୁନିଷ୍ଟ ହେଲେ ସେମାନେ "ଭାରତ ଛାଡ଼" ପ୍ରସ୍ତାବର ବିରୋଧ କଲେ । ନବ ବାବୁ ଗାନ୍ଧୀବାଦର ଜଣେ ଶ୍ରେଷ୍ଠ ପ୍ରବକ୍ତା ଭାବରେ ଗାନ୍ଧୀଙ୍କୁ ମହାନ ବିପ୍ଳବୀ ରୂପେ ସ୍ୱୀକାର କରିଗଲେ ।

ଗାନ୍ଧୀଜୀ ପ୍ରମୁଖ ଶୀର୍ଷ ନେତାମାନଙ୍କୁ ସେହି ୪୨ ଅଗଷ୍ଟ ୮ ତାରିଖ ରାତି ନ ପାହୁଁ ତୋଫାନୀ ଆକ୍ରମଣ ପରି ଗିରଫ କରିନେବା ଦ୍ୱାରା ଦେଶ ନେତୃତ୍ୱହରା ହୋଇପଡ଼ିବା ଦେଖି ଜୟପ୍ରକାଶ ପ୍ରମୁଖ ବନ୍ଦୀଶାଳାରେ ଅସ୍ଥିର ହୋଇ ରହିପାରିଲେ ନାହିଁ । ଭାରତସାରା ବିପ୍ଳବର ବହ୍ନି ପ୍ରଜ୍ୱଳନ କରିଦେବାକୁ କଂଗ୍ରେସ ସମାଜବାଦୀମାନେ ବଡ଼ ଚଞ୍ଚଳ, ବିବ୍ରତ ଓ ଉଦ୍‌ବେଳିତ ହୋଇପଡ଼ିଲେ ।

ହଠାତ୍ ଶୁଣାଗଲେ ହଜାରିବାଗ ବନ୍ଦୀଶାଳାରୁ ଜୟପ୍ରକାଶ ନାରାୟଣ ରାମନନ୍ଦନ ମିଶ୍ର ଖସିଯାଇଛନ୍ତି । ନବ ବାବୁ ସତେ ଯେପରି ଏକ ନୂତନ ଆଲୋକର ସନ୍ଧାନ ପାଇଲେ । ନବ ବାବୁ ପ୍ରକାଶ୍ୟରେ ମନ୍ତବ୍ୟ କଲେ ଯେ ଜେଲଜାଗରଙ୍କୁ ସରକାରୀ କର୍ମଚାରୀମାନେ ସମର୍ଥନ କରୁଥିବା ଏହାର ପ୍ରମାଣ, କାରଣ ଜୟପ୍ରକାଶଙ୍କ ପରି ଯାହା ଜାଣନ୍ତି ଜେଲ କର୍ତ୍ତୃପକ୍ଷଙ୍କ ବିନା ସହଯୋଗରେ ସେ କେବେ ଏପରି କରି ନ ଥାନ୍ତେ । ବିପ୍ଳବର ପଥପ୍ରଦର୍ଶନ ଓ ବାହାରେ ଆତ୍ମଗୋପନରେ ରହି ଆନ୍ଦୋଳନର ପରିଚାଳନା କରୁଥିବା ସଂଗ୍ରାମୀମାନଙ୍କ ସହ ଯୋଗସୂତ୍ର ସ୍ଥାପନ ପାଇଁ ପୁରୀ ଜେଲରୁ କେତେ ଜଣଙ୍କୁ ଖସାଇଦେବାକୁ ନବ ବାବୁ ମନସ୍ଥ କଲେ । ତାଙ୍କୁ ସହାୟତା ଦେଲେ ପୂର୍ବତନ ଛାତ୍ର ସଂଗଠକ ଶ୍ରୀ ଜଗନ୍ନାଥ ମିଶ୍ର, ଶ୍ରୀ ଭଗବାନ ପ୍ରଧାନ ପ୍ରମୁଖ ସାହସୀ ରାଜବନ୍ଦୀମାନେ । ହଠାତ୍ ଶୁଣାଗଲା ଯେ ନିମାପଡ଼ା ଅଞ୍ଚଳର ଦୁଇଜଣ ଯୁବ ରାଜବନ୍ଦୀ ଶ୍ରୀ ଅଲେଖ ପାଣ୍ଡ ଓ ଲୋକନାଥ ସେନାପତି (ସମ୍ପ୍ରତି ଅଲେଖ ସମ୍ବଲପୁର ଜିଲ୍ଲାରେ ଜଣେ ପ୍ରତିଷ୍ଠିତ ସର୍ବୋଦୟ କର୍ମୀ ଓ ଲୋକନାଥ ନିଜ ଗାଁ ଭିଲଗ୍ରାମରେ ଗ୍ରାମସେବାରେ ମନ ଦେଇଛନ୍ତି) ବନ୍ଦୀଶାଳାରୁ ଖସିଯାଇଛନ୍ତି । ସେମାନେ କିଭଳି ଉପାୟରେ ଖସିଗଲେ ମୁଁ ଜାଣିଥିଲେ ସୁଦ୍ଧା ସଂପ୍ରତି ବନ୍ଦୀଶାଳାର ନିରାପତ୍ତା ବିପନ୍ନ ହେବା ଆଶଙ୍କାରେ ପ୍ରକାଶ କରୁନାହିଁ । ଜାଗ୍ରତ କର୍ତ୍ତୃପକ୍ଷ ଜାଣିବା ବେଳକୁ ଦୁଇ ସ୍ୱଣଦନ ଅତିକ୍ରାନ୍ତ ହୋଇସାରିଥିଲା । ପୁରୀ ବନ୍ଦୀଶାଳାରେ ପ୍ରବଳ ଆଲୋଡ଼ନ । ଆମେ ରାଜବନ୍ଦୀମାନଙ୍କ କକ୍ଷରେ ରାତିରେ ଖୁବ ପଡ଼ୁ-ନ ଥିଲା । ଏଣିକି ଖୁବ ପଡ଼ିଲା । କର୍ତ୍ତୃପକ୍ଷ ଆମ ଉପରେ ଅଧିକ ସତର୍କ ଦୃଷ୍ଟି ରଖିଲେ । ଯାହାହେଉ ଏଇପରି କେତେକ ଘଟଣାରେ ଜେଲର ଓ ନାଏବ ଜେଲରଙ୍କ ବଦଳି ହୋଇଗଲା ।

ପୁରୀ ବନ୍ଦୀଶାଳାରେ ଆମେ ନବ ବାବୁଙ୍କ ନେତୃତ୍ୱରେ ନିୟମିତ ପ୍ରାତଃସ୍ମରଣ ଓ ସାଂଧ୍ୟ ଉପାସନା କରୁ । ବନ୍ଦୀମାନଙ୍କୁ ଶଯ୍ୟୋତ୍ଥାନ କାଳୀନ ଉତ୍ସାହ ଧ୍ୱନି ଶୁଣାଇବା ପାଇଁ ଡେଲାଙ୍ଗର ରାଜବନ୍ଦୀ ଜୟକୃଷ୍ଣ ନାୟକ (ସମ୍ପ୍ରତି ସ୍ୱର୍ଗତ) ଆମକୁ "ରାତି ପାହିଗଲା ଉଠ ସଇନିକ ଭାଇ, ସ୍ୱାଧୀନତା ଦେବ ନଭେ ଅଛେ ଚାହିଁ" ଉଦ୍‌ବୋଧନୀ ଗାନ କରାଇ କକ୍ଷଗୁଡ଼ିକ ପରିକ୍ରମା କରାଉଥାନ୍ତି । ସଂଧ୍ୟା ପ୍ରାର୍ଥନାରେ ଆମେ ସମସ୍ତେ ସମବେତ ହେଉ । ନବ ବାବୁ ବଡ଼ ଗାମ୍ଭୀର୍ଯ୍ୟପୂର୍ଣ୍ଣ କଣ୍ଠରେ ଗୀତୋକ୍ତ ସ୍ଥିତପ୍ରଜ୍ଞ ଲକ୍ଷଣ ଆବୃତ୍ତି କରନ୍ତି । ସମସ୍ତେ ସମବେତ ଭାବରେ ଶ୍ରୀ ଜଗନ୍ନାଥ ମିଶ୍ରଙ୍କ ନେତୃତ୍ୱରେ ନିତ୍ୟ "ବନ୍ଦେ ମାତରମ୍" ଗାନ ଓ ଧ୍ୱନି ଦେଇ ଦିନଯାପନ କରିବାକୁ ଯାଉ । ସବୁ କାର୍ଯ୍ୟକ୍ରମରେ ନବ ବାବୁ ଭାଗ ନିଅନ୍ତି । ବନ୍ଦୀଭାଇମାନଙ୍କ ସଙ୍ଗେ ମିଶି ସେ ଏତେ ସୁନ୍ଦର ଚେସ ଖେଳନ୍ତି ଯେ, ନ ଦେଖିଲା ଲୋକ ବିଶ୍ୱାସ କରିପାରିବ ନାହିଁ । ଜଣେ ପ୍ରତିଷ୍ଠିତ ନେତା ବୋଲି ସାଧାରଣ କର୍ମୀଙ୍କ ସଙ୍ଗେ ମିଶିବାରେ ତାଙ୍କର କେବେ ହେଲେ ଗ୍ଳାନି ନ ଥାଏ ।

ଆମେ ବ୍ରହ୍ମପୁର କେନ୍ଦ୍ର ଜେଲକୁ ବଦଳି ହେଲୁ । ନବ ବାବୁ ମଧ୍ୟ ବଦଳି ହେଲେ । ସେଠାରେ ଦେଖିଛୁ ଯୁବବନ୍ଦୀମାନଙ୍କୁ ସତ୍ୟାଗ୍ରହର ତତ୍ତ୍ୱ ବୁଝାଇବାରେ ସେ ଅନେକ ସମୟ ଦିଅନ୍ତି । ନିଜେ ନିୟମିତ ସୂତା କାଟନ୍ତି । ହାତରେ ବାସନ ମାଜନ୍ତି—କୌଣସି କର୍ମୀଙ୍କୁ କରାଇ ଦିଅନ୍ତି ନାହିଁ । ଗୋପବନ୍ଧୁ ଚୌଧୁରୀ, ଆଚାର୍ଯ୍ୟ ହରିହର ଓ ବ୍ରଜମୋହନ ସିଂ (ଖୁଣ୍ଟୁ ବାବୁ) ପ୍ରମୁଖଙ୍କ ଦ୍ୱାରା ବନ୍ଦୀଶାଳାର ହତାରେ ବ୍ୟବସ୍ଥିତ ଟମାଟୋ କ୍ଷେତରେ ଶରୀରଶ୍ରମ କରନ୍ତି । ଭଗବତୀ ଚରଣ ପାଣିଗ୍ରାହୀ ସେତେବେଳେ କମ୍ୟୁନିଷ୍ଟ । ତାଙ୍କର ଆକସ୍ମିକ ବିୟୋଗବାର୍ତ୍ତା ବନ୍ଦୀଶାଳାରେ ପହଞ୍ଚିଲା । ନବ ବାବୁ କଂଗ୍ରେସରେ, ଭଗବତୀ ବାବୁ କମ୍ୟୁନିଷ୍ଟ ଦଳରେ । ନବ ବାବୁ କୋହ ସମ୍ଭରଣ କରିପାରିଲେ ନାହିଁ । ଭଗବତୀଙ୍କ ପାଇଁ ଅନୁଷ୍ଠିତ ଶୋକ-ସଭାରେ ଦେଖିଛୁ ନବ ବାବୁ ବିଶେଷ କିଛି କହିପାରିଲେ ନାହିଁ । ଭଗବତୀଙ୍କ ଦୁଇ ଶିଶୁ ସନ୍ତାନଙ୍କ କଥା ମନେପକାଇ କାନ୍ଦି କାନ୍ଦି ହୋଇ ସେହି ବିରାଟ ବନ୍ଦୀ ସମାବେଶରେ କାନ୍ଦିବାକୁ ଲାଗିଲେ । ବନ୍ଧୁମାନଙ୍କ ସହ ତାଙ୍କର ମତାନ୍ତର ଥିଲା—ମନାନ୍ତର ନ ଥିଲା । ସତେ ଯେପରି ଏ ଜଗତରେ ସେ ଥିଲେ ଜଣେ ଆଦର୍ଶ ପୁରୁଷ ।

ବାଲେଶ୍ୱରର ସଂଗ୍ରାମୀ ଶ୍ରୀ ରବୀନ୍ଦ୍ର ମୋହନ ଦାସ, କଟକର ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ସୁଧୀର ଘୋଷ ଓ ଗଞ୍ଜାମର ନେତା ଉମାଚରଣ ପଟ୍ଟନାୟକଙ୍କ ନେତୃତ୍ୱରେ ଆମେ ଯୁବବନ୍ଦୀମାନେ ନିୟମିତ ସେବାଦଳ ଡ୍ରିଲ, ମାର୍ଚିଂ ଶିଖୁଥାଉ । ନବ ବାବୁ ସେଠି ମଧ୍ୟ ହାଜର ହୋଇ ଆମକୁ ପ୍ରେରଣା ଯୋଗାଉଥାନ୍ତି ।

ବନ୍ଦୀଶାଳାରେ ଦିନେ ସଂବାଦପତ୍ରରେ ଦେଖିଲୁ ଯେ କମ୍ୟୁନିଷ୍ଟ ଇଣ୍ଟରନ୍ୟାସନାଲ ଭାଙ୍ଗି ଦିଆଯାଇଛି । ଏହାର ଅନ୍ତର୍ନିହିତ ତତ୍ତ୍ୱର ବିଶ୍ଳେଷଣ ପାଇଁ ବନ୍ଦୀଶାଳାରେ ଆମର ଏକତ୍ର ସମାବେଶ ହେଲା । ନବ ବାବୁ ଓ ସମ୍ପ୍ରତି ଜ୍ଞାନମଣ୍ଡଳର ପ୍ରଣେତା ବିଶିଷ୍ଟ ସଂଗ୍ରାମୀ ଶ୍ରୀ ବିନୋଦ କାନୁନଗୋ ସେଦିନ ଆମମାନଙ୍କୁ ଏହାର ତତ୍ତ୍ୱ ବୁଝାଇ ଯେଉଁ ବିଶ୍ଳେଷଣ ଦେଇଥିଲେ ତାହା ମନେପଡ଼ୁଛି । କମ୍ୟୁନିଷ୍ଟ ଇଣ୍ଟରନ୍ୟାସନାଲକୁ ଭାଙ୍ଗିଦେଇ ଦେଶକାଳପାତ୍ର ବିଚାରରେ କମ୍ୟୁନିଷ୍ଟମାନଙ୍କୁ ସ୍ୱାଧୀନ ଚିନ୍ତାଧାରାରେ ଅନୁପ୍ରାଣିତ ହେବାପାଇଁ କମ୍ୟୁନିଜମ୍‌ର ପ୍ରବର୍ତ୍ତକ ରୁଷ ଦେଶର ପ୍ରବକ୍ତାମାନେ ଯେଉଁ ଆଦର୍ଶଗତ ନୀତି ନିର୍ଦ୍ଧାରଣ କଲେ, ଭାରତସ୍ଥିତ କମ୍ୟୁନିଷ୍ଟ ବନ୍ଧୁମାନେ ତଦ୍ଧିରେ ଅନୁପ୍ରାଣିତ ହୋଇ ଭାରତର ସ୍ୱାଧୀନତା ଆନ୍ଦୋଳନକୁ ସମର୍ଥନ କରିବେ ବୋଲି ନବ ବାବୁ ଯେତେବେଳେ ଦୃଢ଼ ମତ ବ୍ୟକ୍ତ କଲେ ସଭାସ୍ଥଳ କରତାଳି ଧ୍ୱନିରେ ପ୍ରକମ୍ପିତ ହୋଇଉଠିଲା । ପରବର୍ତ୍ତୀ ସମୟରେ କମ୍ୟୁନିଷ୍ଟ ପାର୍ଟିର ନିର୍ବାଚନ ମାଧ୍ୟମରେ ଶାସନତନ୍ତ୍ରକୁ ଆସିବା ନୀତିରୁ ସେ ଦିନର ନବ ବାବୁଙ୍କ ବିଚାର ସତ ପ୍ରମାଣିତ ହୋଇଛି ।

ଘଟଣାକ୍ରମେ ଭାରତ ସ୍ୱାଧୀନ ହେଲା । ନବ ବାବୁ ରାଜସ୍ୱ ମନ୍ତ୍ରୀ ହେଲେ ଓ ମୌଳିକ ଶିକ୍ଷାର ପ୍ରସାର ଦ୍ୱାରା ଗାନ୍ଧୀଜୀଙ୍କ ରାମରାଜ୍ୟ ସ୍ୱପ୍ନକୁ ସଫଳ କରିବା ଲକ୍ଷ୍ୟ ନେଇ ସେ କିଛି ଦିନ ମୌଳିକ ଶିକ୍ଷା ସଂଗଠକ ରୂପେ ସରକାରୀ ଦାୟିତ୍ୱ ଗ୍ରହଣ କଲେ । ୧୯୫୦ ମସିହାରେ ସେ ଏହି ଦାୟିତ୍ୱରେ ଥିଲାବେଳେ ମୁଁ ଦେଖିଛି ଅନୁଗୁଳରେ ଅନୁଷ୍ଠିତ ସର୍ବୋଦୟ ସମ୍ମେଳନକୁ ଆସୁଥିବା ପ୍ରତିନିଧିମାନଙ୍କ ବିଛଣାପତ୍ର ସେ ନିଜେ ବହନ କରି କକ୍ଷକୁ ନେଇଯିବାରେ ଟିକିଏ ହେଲେ ଘୃଣାବୋଧ କରୁ ନ ଥିଲେ । ତାଙ୍କ ଦେଖାଦେଖି ଶ୍ରୀ ଉଇଲିୟମ ଜେମ୍‌ସ ପ୍ରମୁଖ ଉଚ୍ଚ ସରକାରୀ କର୍ମକର୍ତ୍ତାମାନେ ମଧ୍ୟ ଅନୁରୂପ ଆଚରଣ କଲେ ।

୧୯୫୫ ମସିହାରେ ତାଙ୍କ ମୁଖ୍ୟମନ୍ତ୍ରିତ୍ୱ ବେଳେ ପୁରୀ ଚାଲିଶିଆରେ ଅଖିଳ ଭାରତ ସର୍ବୋଦୟ ସମ୍ମେଳନ ଅନୁଷ୍ଠିତ ହେଲା । ଆଚାର୍ଯ୍ୟ ବିନୋବା ଭାରତରେ ଉତ୍କଟ ଧନମାନ ଭେଦ ଜନିତ ଏକ ନିଶ୍ଚିତ ଶ୍ରେଣୀ ସଂଘର୍ଷରୁ ଭାରତକୁ ରକ୍ଷା କରିବା ପାଇଁ ୧୯୫୧ ରୁ ଯେଉଁ ଭୂଦାନ ଯଜ୍ଞ ଆନ୍ଦୋଳନ ଆରମ୍ଭ କରିଥିଲେ ତାହାର ପର୍ଯ୍ୟାୟ ଭିତରେ ପୁରୀରେ ଏ ସର୍ବୋଦୟ ସମ୍ମେଳନ ଥିଲା ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ଏହି ସର୍ବୋଦୟ ମାଧ୍ୟମରେ ଭୂ-ବିପ୍ଳବରେ ଏକାନ୍ତ ଆସ୍ଥାବାନ୍ ସ୍ୱୟଂ ମୁଖ୍ୟ ମନ୍ତ୍ରୀ ସ୍ୱର୍ଗତ ଚୌଧୁରୀ ଏ ସମ୍ମେଳନକୁ ସୁରୁଖୁରୁରେ ସମ୍ପାଦନ କରିବାର ସମସ୍ତ ଦାୟିତ୍ୱ ନେଇଥାନ୍ତି । ମୁଁ ନିଜେ ଦେଖିଛି ପୋଲିସ, ବିଦ୍ୟୁତ୍, ସାଧାରଣ ସ୍ୱାସ୍ଥ୍ୟ ଇତ୍ୟାଦି ଯାବତୀୟ ବ୍ୟବସ୍ଥାରେ ବିଭାଗୀୟ ଉଚ୍ଚ ସରକାରୀ କର୍ମକର୍ତ୍ତାମାନେ ଅହରହ ଖଟୁଥାନ୍ତି । ମନେହେଉଥାଏ ସତେ ଯେପରି ସେମାନେ ପାଞ୍ଚବର୍ଷ ବୟସ୍କ ସାଧାରଣତନ୍ତ୍ର ଭାରତର ଏକନିଷ୍ଠ ଜନସେବକ । ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀ ନିଜେ ସେହି ଗହଳ ଚହଳ ମଧ୍ୟରେ ଯେଉଁଠି ରହୁଯାଉଥାନ୍ତି ତାହା ଜାଣି ହେଉ ନ ଥାଏ । ପୁରୀ ସର୍କିଟ ହାଉସରେ କେତେଥର ଦେଖିଛି ତାଙ୍କୁ ଅଭିବାଦନ ଜ୍ଞାପନ କରିବାକୁ କର୍ତ୍ତବ୍ୟରତ ସଶସ୍ତ୍ର ପୋଲିସଙ୍କୁ ସେ ଶକ୍ତ ହସ୍ତରେ ଫେରାନ୍ତି ନାହିଁ । ତାଙ୍କର ସ୍ଥାୟୀ ବିରୋଧ ଥାଏ । ତାଙ୍କ ଗହଣରେ ଆସିଥିବା ତାଙ୍କ ବ୍ୟକ୍ତିଗତ ସରକାରୀ ଗାର୍ଡ଼ମାନଙ୍କୁ ଛୁଟିଆ ଦେଇ ବିଦା କରାନ୍ତି ।

ମନ୍ତ୍ରୀତ୍ୱ ତାଙ୍କର ପେଶା ନ ଥିଲା । ତାଙ୍କୁ ମନ୍ତ୍ରୀତ୍ୱରୁ ହଟାଇବା ପାଇଁ ବହୁ ସ୍ୱାର୍ଥାନ୍ୱେଷୀ ଷଡ଼ଯନ୍ତ୍ର ହୋଇଛି । ମାତ୍ର କୌଣସିମତେ କ୍ଷମତାକୁ ଜାବୁଡ଼ି ଧରିବା ପାଇଁ ସେ ଦଳୀୟ ସଂଗଠନ ଭିତରେ ନିଜର ବ୍ୟକ୍ତିତ୍ୱକୁ ବଳି ଦେଇ ନ ଥିଲେ । ମନ୍ତ୍ରୀତ୍ୱ ଛାଡ଼ିଲେ ଦଳ ଛାଡ଼ିଲେ । କ୍ଷମତାକୁ ଆଉ ମନ କଲେ ନାହିଁ । କ୍ଷମତାରେ ରହିବା ପାଇଁ କାହାର ପାଖକୁ ଧାଁ ଧପଡ଼ କଲେ ନାହିଁ କି ଓଲିନାଲି ହେଲେ ନାହିଁ । ସେଇ ଧୋତି ଚଦର, ଅଧିକନ୍ତୁ ବିଦେଶାଗତ ପର୍ଯ୍ୟଟକଙ୍କ ପରି ଝୁଲି କାନ୍ଧ ଗଲା ବ୍ୟାଗରେ ପିଠିରେ ନିତ୍ୟ ବ୍ୟବହାର୍ଯ୍ୟ ଜିନିଷ ବୋହି ନେଇ ଗସ୍ତ କରିବାକୁ ଶ୍ରେୟ ମଣିଲେ । ମୁଁ ତୁ ଭିତରେ କୌଣସି ପ୍ରଭେଦ ସେ ଦେଖି ପାରିଲେ ନାହିଁ । ଘର ଛାଡ଼ିଲେ, ମାଲିକାନା ଛାଡ଼ିଲେ, ଆଦିବାସୀ ଗ୍ରାମ ଅଧ୍ୟୁଷିତ ଅନୁଗୁଳ ସ୍ଥିତ ବାଜିରାଉତ ଛାତ୍ରାବାସ ହେଲା ତାଙ୍କର ଆଶ୍ରୟସ୍ଥଳ ।

ବଡ଼ଭାଇ ଗୋପବନ୍ଧୁ ଚୌଧୁରୀଙ୍କ ଦେହାନ୍ତ ହେଲା । ନିଜର ଏକମାତ୍ର ପୁଅ ଗଲା । ଚୌଧୁରୀ ପରିବାର ଏକମାତ୍ର ଉତ୍ତରାଧିକାରୀ କବୀର ଗଲେ । ନାତି ଗଲା । ତାଙ୍କର ଆଖି ଆଗରେ ତାଙ୍କର ପ୍ରାଣାଧିକ ସ୍ୱାଧୀନତା ସଂଗ୍ରାମର ସ୍ମୃତି ବହନ

ବନ୍ଧୁମାନେ ତାଙ୍କ ସମ୍ପତ୍ତିକୁ କଣେ କଣେ ନିଜ ନିଜ ନାଁରେ ବାଣ୍ଟିନେଇ ଛିନ୍ନଛତ୍ର କଲେ । ନବ ବାବୁ ସବୁ ଦେଖି ଦେଖି କେବଳ ନୀରବ ରହିଗଲେ । ହେଲେ ସେତେବେଳେ ସେ କହିଲେ ଏ ସବୁ ବିଧାତାର ବିଧାନ । ଜନ୍ମ ଥିଲେ ଏକ ଆଭିଜାତ୍ୟ ବଂଶରେ । ଅଥଚ ଅଭିଜାତ୍ୟରୁ ବହୁ ଦୂରରେ ସେ ଦୂରେଇ ଗଲେ । କଏ ସିନା କ୍ଷମତାକୁ ଧରି ବଡ଼ ହୁଅନ୍ତି, ନବକୃଷ୍ଣ ଚୌଧୁରୀ କ୍ଷମତାକୁ ଛାଡ଼ି ବଡ଼ ହେଲେ । ସେମାନଙ୍କ ହୃଦୟରେ ସ୍ଥାନ ପାଇଲେ । ଦେଖେଇ ହେବା ତାଙ୍କ ଜାତକରେ ନ ଥିଲା । ତେଣୁ ତାଙ୍କ ଶୋକସଭା ପାଇଁ ଫଟୋଟିଏ ମଧ୍ୟ ସହଜଲଭ୍ୟ ହେଲା ନାହିଁ ।

ତାଙ୍କର ଅନ୍ତିମ ଜୀବନ ହେଉଛି ବର୍ଣ୍ଣାଶ୍ରମ ଧର୍ମର ଅନ୍ତିମ ପର୍ଯ୍ୟାୟ, ଯତିବ୍ରତର ଜୀବନ । ନିର୍ଗୁଣ ଅବସ୍ଥାରେ ହିଁ ସେ ଇହସଂସାରରୁ ବିଦାୟ ନେଲେ ।

ଶୁଣାଯାଏ ଗୋଟିଏ କଥା ତାଙ୍କୁ ବଡ଼ ବାଧୁଥିଲା । ଲୋକଙ୍କର ଧର୍ମ-ଭାବନା କମି କମି ଯାଉଛି । ଆଗେ ସମାଜ ସେବା ପାଇଁ ଯେପରି ଉଚ୍ଚ ଶିକ୍ଷିତ, ବିଦ୍ୱାନ୍ ଓ ଅଭିଜାତ୍ୟ ଘରର ପିଲାଏ ବାହାରୁଥିଲେ ଏବେ ସେପରି ନାହିଁ । ତେଣୁ ଦୁର୍ଗତଙ୍କ ଅର୍ଥିକ ସ୍ଥିତିକୁ ସୁଧାରିବା ପାଇଁ ଯେଉଁ ବିପୁଳ ରାଷ୍ଟ୍ରୀୟ ସମ୍ବଳ ବିନିଯୋଗ ହେଉଛି, ତାହା ପାଣିରେ ପଡ଼ିଯାଉଛି ।

ଧର୍ମଶାସ୍ତ୍ରରେ କୁହାଯାଇଛି କରୁଣାହିଁ ହେଉଛି ଭଗବାନ୍ । କରୁଣା ପାଦରେ ମୃତ୍ୟୁ ଦ୍ୱାର ମାନେ । ନବକୃଷ୍ଣ ଚୌଧୁରୀ କରୁଣାର ମୂର୍ତ୍ତିମନ୍ତ ପ୍ରତୀକ ରୂପେ ଆମ ପାଖେ ଚିରଂଜୀବୀ ହୋଇରହିଲେ ।

---

# ତାଙ୍କ ପରି ସିନା ସିଏ

**ଯୁଗଳକିଶୋର ପାଣିଗ୍ରାହୀ**

ନବ ବାବୁଙ୍କ କଥା ମନେପଡ଼ିଲେ, ଅଳଙ୍କାର ଶାସ୍ତ୍ରର ଅନନ୍ୱୟ ଅଳଙ୍କାରଟି ମନେପଡ଼େ । ତାର ଉଦାହରଣ ହେଲା :

ରାଧା ପରି ରାଧା ସିନା ରେ ସଙ୍ଗାତ
ରାଧା ପରି ସିନା ରାଧା,
ତ୍ରିଭୁବନ ମାତରିକ ଅଛନ୍ତି ଯେତେକ
ସବୁ ପିତଳ ସେ ସୁନା ।

(ଗୋପାଳକୃଷ୍ଣ)

ସେହିପରି ନବ ବାବୁ ତାଙ୍କ କର୍ମକ୍ଷେତ୍ରରେ ଅନନ୍ୟରୂପ ଥିଲେ । ଓଡ଼ିଶାର ଖ୍ୟାତନାମା-ଖାନଦାନୀ-ଧନାଢ୍ୟ ପରିବାରରେ ଜନ୍ମଲାଭ କରି ସପରିବାର ସେ ନିଜଙ୍କ ଭଉଣୀ, ଭଉଜ, ଭାର୍ଯ୍ୟା, ପୁତୁରା, ପୁତୁରାବୋହୂ, ଝିଆରୀ, ଝିଆରୀଜୋଇଁ, ଝିଅ-ଜୋଇଁମାନଙ୍କ ସହିତ ଗାନ୍ଧୀ ମତରେ ସ୍ୱେଚ୍ଛାକୃତ ରୂପେ ଆଜୀବନ କଂଗ୍ରେସରେ ରହି, ବିପ୍ଳବର ଦାବାଗ୍ନି ଜାଳି, ଏ ପ୍ରଦେଶରେ ତ୍ୟାଗ ଓ ସେବାକ୍ଷେତ୍ରରେ ଯେଉଁ ଉଚ୍ଚ ପରମ୍ପରା ସୃଷ୍ଟି କରିଦେଇଗଲେ, ତାହା ଅପୂର୍ବ । ତାଙ୍କର ଶାନ୍ତ-କାନ୍ତ ମୂର୍ତ୍ତି ଭିତରେ, ଜନ-ବାତ୍ସଲ୍ୟ, ସେବାନୁରାଗ ଓ ତ୍ୟାଗ ଓଡ଼ିଶାରେ ଏକ ନବ ଯୁଗ ସୃଷ୍ଟି କରିଥିଲା । କଂଗ୍ରେସ ଭିତରେ ଜୟପ୍ରକାଶ, ସୁଭାଷଚନ୍ଦ୍ର, ନରେନ୍ଦ୍ର ଦେବ, ଜବାହରଲାଲଙ୍କ ସହିତ ନବ ବାବୁ ପକ୍ଷସମର୍ଥକରୂପେ ରହି, "ସମାଜବାଦ ସଙ୍ଗଠନ"ର ଯେ ମନ୍ଦାକିନୀ ଧାରା ଏ ଦେଶରେ ପ୍ରବାହିତ କରିଥିଲେ, ତାହା ଓଡ଼ିଶାରେ ସୁରେନ୍ଦ୍ରନାଥ ଦ୍ୱିବେଦୀ, ମାଳତୀ ଚୌଧୁରୀ, ସାରଙ୍ଗଧର ଦାସ ଓ ରବି ଘୋଷ ପ୍ରଭୃତି ଇଷ୍ଟଗୋଷ୍ଠୀଙ୍କ ଦ୍ୱାରା କିପରି ପରିପ୍ଳାବିତ ହୋଇଥିଲା, ତାହା ଚିର ସ୍ମରଣୀୟ ହୋଇ ରହିବ ।

ତାଙ୍କର ଅକୁଣ୍ଠ ତ୍ୟାଗ, ପ୍ରଗାଢ଼ ଦେଶପ୍ରୀତି, ଅଗାଧ ଦୁଃସ୍ଥସେବା, ପ୍ରଖର ବୋଧଶକ୍ତି, ନିର୍ଭୀକତା, ବିଚକ୍ଷଣ ଧୀମତ୍ତା, ସୁଦକ୍ଷ ବ୍ୟବସ୍ଥାପକତା, ସୁଦୃଢ଼ କର୍ମନିଷ୍ଠା ଅତୁଳନୀୟ ।

ଦୁଃସ୍ଥ, ପ୍ରପୀଡ଼ିତ, ପତିତ, ହରିଜନ-ଆଦିବାସୀଙ୍କ ସେବାରେ ସେ ଯେଉଁ ଅପୂର୍ବ ତ୍ୟାଗ ଓ କ୍ଳେଶ ବରଣ କରିଅଛନ୍ତି, ତାହା ଏ ଦେଶର ଅସଂଖ୍ୟ ନାଗରିକଙ୍କୁ ବିମୁଗ୍ଧ କରିଅଛି । ଗାନ୍ଧୀନୀତି ଓ ଗଣତାନ୍ତ୍ରିକ ଆନୁଗତ୍ୟ ତାଙ୍କଠାରେ ରୂପଗ୍ରହଣ କରିଥିଲା । ଉତ୍ସର୍ଗୀକୃତ ଜୀବନର ସେ ଅନନ୍ୟରୂପ ପନ୍ଥାନ୍ତର ଥିଲେ ।

ଏକଦା ଓଡ଼ିଶା ରାଜନୀତିର କାର୍ଣ୍ଣଧାର ଓ ଓଡ଼ିଶାର ମୁଖ୍ୟମନ୍ତ୍ରୀରୂପେ ଦୀର୍ଘ ଦିନ ରହି, ରାଜନୀତି ଓ ପ୍ରଶାସନିକ କ୍ଷେତ୍ରରେ ନବ ବାବୁ ଯେଉଁ ସାଧୁତା, ସରଳତା, ନିର୍ମଳତା, ପବିତ୍ରତା ଓ ସଂଯମୀସ୍ୱ ଗଣତନ୍ତ୍ରର ପୂଜାରୀରୂପେ ଯେଉଁ ତେଜସ୍ୱର ପ୍ରତିଭା ପ୍ରଦର୍ଶନ କରିଯାଇଛନ୍ତି, ତାହା ଅନନୁକରଣୀୟ ।

ତାଙ୍କ ବହୁମୂଲ୍ୟ ଜୀବନର କ୍ଷଣିକ ସଂସ୍ପର୍ଶରେ ଆସି ଯେଉଁମାନେ ତାଙ୍କ ଦେଶପ୍ରୀତି, ସେବା ଓ ତ୍ୟାଗ ଧର୍ମର ପ୍ରତିଭା ଓ ଆଲୋକ ପାଇଛନ୍ତି, ତାହା ଜୀବନରେ ଭୁଲିବାର ନୁହେଁ ।

ପଣ୍ଡିତ ନୀଳକଣ୍ଠଙ୍କ ଭାଷାରେ "ନବ ବାବୁ କଂଗ୍ରେସ ଭିତରେ ଜଣେ "କଂଗ୍ରେସୀ" ଥିଲେ—କଂଗ୍ରେସବାଲା ନୁହେଁ।" ତାଙ୍କ ମତରେ ଯେ ନିଜର ସର୍ବସ୍ୱ ଦେଇ କଂଗ୍ରେସକୁ ଗଢୁଥିଲେ ସେ ଥିଲେ କଂଗ୍ରେସୀ ଏବଂ ଯେଉଁମାନେ କଂଗ୍ରେସ ଦ୍ୱାରା ନିଜକୁ ନିଜେ ଗଢ଼ି ହେଉଥିଲେ ସେମାନେ ହେଲେ କଂଗ୍ରେସବାଲା । ସେହିପରି ନବ ବାବୁ ନିଜର ସର୍ବସ୍ୱ ଦେଇ କଂଗ୍ରେସକୁ ଗଢ଼ିଥିଲେ ଏବଂ ପଣ୍ଡିତ ଗୋପବନ୍ଧୁଙ୍କ ପ୍ରଣୀତ "ବନ୍ଦୀର ଆତ୍ମକଥା"ର ନିମ୍ନ ପଂକ୍ତିଟି ଆବୃତ୍ତି କରି ଗାଇବାକୁ ଭଲ ପାଉଥିଲେ :

"ମିଶୁ ମୋର ଦେହ ଏ ଦେଶ ମାଟିରେ
ଦେଶବାସୀ ଚାଲିଯାଆନ୍ତୁ ପିଠିରେ,
ସ୍ୱାଧୀନତା ପଥେ ଯେତେସବୁ ଗାଡ଼
ପଡ଼ୁ ପୂରୁ ତହିଁ ମୋର ମାଂସହାଡ଼ ।

କିନ୍ତୁ ବର୍ତ୍ତମାନ କଂଗ୍ରେସବାଲାମାନେ ଆପଣଙ୍କର ଉକ୍ତ ପଂକ୍ତିଟିକୁ ସଂଶୋଧିତ ତଥା ବିକୃତ କରି ନିମ୍ନପ୍ରକାରେ ଗାଉଅଛନ୍ତି :

ମିଶୁ ଦେଶପାଣି ମୋ ନିଜ ପାଣିରେ
ଚାଲିଯାଏ ଦେଶବାସୀଙ୍କ ପିଠିରେ,
ମୋ ସ୍ୱାର୍ଥ ସିଦ୍ଧିରେ ଯେତେ ସବୁ ଗାଡ଼
ପଡ଼ୁ ପୂରୁ ତହିଁ ମୋର ମାଂସହାଡ଼ ।

ପଣ୍ଡିତ ନୀଳକଣ୍ଠ ଦୂରଦର୍ଶନରେ କଂଗ୍ରେସୀ ଓ କଂଗ୍ରେସବାଲାର ଯେଉଁ ଅର୍ଥ ବହୁକାଳ ପୂର୍ବେ କରିଥିଲେ, ତାହାର ପୂର୍ଣ୍ଣ ସଫଳତାର ପରିପ୍ରକାଶ ବର୍ତ୍ତମାନ ଘଟିଛି ।

ସ୍ୱାଧୀନତା ପରେ ସ୍ୱାଧୀନ ଭାରତର ଉପ-ପ୍ରଧାନମନ୍ତ୍ରୀ ତଥା ଘରୋଇ ମନ୍ତ୍ରୀ ସର୍ଦ୍ଦାର ବଲ୍ଲଭଭାଇ ପଟେଲ ନିଷ୍ପତ୍ତି ନେଲେ, ଘରୋଇ ମନ୍ତ୍ରଣାଳୟରେ ବିଦେଶୀ ସରକାର ଭାରତୀୟଙ୍କ ବିରୁଦ୍ଧରେ ଗୋଇନ୍ଦା ବିଭାଗ ଦ୍ୱାରା ଯେଉଁସବୁ ଗୁପ୍ତ ରିପୋର୍ଟ ରଖିଯାଇଛନ୍ତି, ତାହା ମଧ୍ୟରୁ ମୁଖ୍ୟ ଓ ଗୁରୁତ୍ୱପୂର୍ଣ୍ଣ ଦଲିଲ୍‌ଗୁଡ଼ିକୁ ରଖି ଅନ୍ୟଗୁଡ଼ିକ ସ୍ମୃତିପଟରେ ରଖି ପୋଡ଼ି ଦେବା ପାଇଁ । ତା ବଳରେ ଗୁପ୍ତ ଦଲିଲ ମଧ୍ୟରୁ ଗୁରୁତ୍ୱହୀନ ଯେଉଁ ସବୁ ଗୁପ୍ତ ମନ୍ତବ୍ୟ ଗୋରା ଗୋଇନ୍ଦାମାନେ ଲିପିବଦ୍ଧ କରିଥିଲେ, ସେଗୁଡ଼ିକୁ ବାଛି ଏକତ୍ରିତ କରିରଖିଲେ ପ୍ରତିଦିନ ଅପରାହ୍ଣରେ ସର୍ଦ୍ଦାର ପଟେଲ ଘଣ୍ଟାଏ ସେଗୁଡ଼ିକୁ ଗୋଟି ଗୋଟି କରି ପଢ଼ି, ବିଷୟବସ୍ତୁ ସ୍ମୃତିଗର୍ଭରେ ରଖି ଇଲେକ୍‌ଟ୍ରିକ୍ ଚୁଲିରେ ଜଳାଇ ଦେବେ । ଉକ୍ତ ଦାୟିତ୍ୱ ସେତେବେଳେ ଦିଲ୍ଲୀରେ ଅବସ୍ଥାପିତ କେନ୍ଦ୍ର ଗୋଇନ୍ଦା ବିଭାଗର ଡେପୁଟି ଡାଇରେକ୍ଟର ଓ ଓଡ଼ିଶାର ପୂର୍ବତନ ପୁଲିସ୍ ଆଇ.ଜି. ରାମକୃଷ୍ଣ ପାତ୍ରଙ୍କ ଉପରେ ନ୍ୟସ୍ତ କରାଯାଇଥିଲା । ଏ ସୁଯୋଗରେ ବହୁ ଗୁପ୍ତ କାଗଜ ପଢ଼ିବାର ସୁଯୋଗ ପାଇଥିଲେ । ଓଡ଼ିଶାର ସେତେବେଳର କଂଗ୍ରେସ ନେତା ତଥା ସ୍ୱାଧୀନତା ଆନ୍ଦୋଳନର ରଥୀମାନଙ୍କର କାର୍ଯ୍ୟକଳାପ ବିଷୟରେ ବହୁ କଥା ଜାଣିଥିଲେ । ପ୍ରତିଦିନ ଅପରାହ୍ଣ ୪ ଟା ବେଳେ ସେ ସର୍ଦ୍ଦାର ପଟେଲଙ୍କୁ ନଷ୍ଟୋପଯୋଗୀ ଗୁପ୍ତ କାଗଜଗୁଡ଼ିକୁ ଗୋଟି ଗୋଟି କରି ନିକଟରେ ରଖି ବଢ଼ାଇ ଦେଉଥାନ୍ତି । ସର୍ଦ୍ଦାର ପଟେଲ ବସ୍ତୁଗୁଡ଼ିକୁ ସ୍ମୃତିଗର୍ଭରେ ରଖି ଇଲେକ୍‌ଟ୍ରିକ୍ ଚୁଲିରେ ଜଳାଇ ଦେଉଥାନ୍ତି ।

ତା ମଧ୍ୟରେ ଗୋରା ଗୋଇନ୍ଦାମାନେ ଲେଖିଥିବା ଗୋଟିଏ ରିପୋର୍ଟରେ ଲେଖାଥିଲା, "କଂଗ୍ରେସ ଭିତରେ ଗୋଟିଏ "ସମାଜବାଦୀ ସଂସ୍ଥା" ଗଢ଼ା ଯାଇଅଛି । ସେଥିରେ ନିମ୍ନଲିଖିତ ୫ ଜଣଙ୍କୁ ରଖାଯାଇଅଛି, ଯଥା :- ଜୟପ୍ରକାଶ, ସୁଭାଷଚନ୍ଦ୍ର, ନମ୍ବୁଦ୍ରିପଦ, ଜବାହରଲାଲ ନେହେରୁ ଓ ନବକୃଷ୍ଣ ଚୌଧୁରୀ । ଭାରତକୁ ୫ ଟି ଅଞ୍ଚଳରେ ବିଭକ୍ତ କରି ଉକ୍ତ ୫ ଜଣ ତା'ର ଦାୟିତ୍ୱରେ ଅଛନ୍ତି ।"

ମହାତ୍ମା ଗାନ୍ଧୀ ଉକ୍ତ ସମାଜବାଦୀ ସଙ୍ଗଠନର ସୂଚନା ପାଇ ତା ମଧ୍ୟରୁ ଜବାହରଲାଲ ନେହେରୁଙ୍କୁ ଖସାଇ ନେଇଥିଲେ ।

"ଜବାହରଲାଲ ଉକ୍ତ ସଂସ୍ଥାର ବାହାଘରିବା ପରେ ଭାରତକୁ ୪ ଟି ଅଞ୍ଚଳରେ ବିଭକ୍ତ କରି ଉକ୍ତ ୪ ଜଣ ତା'ର ଦାୟିତ୍ୱରେ ରହିଛନ୍ତି ଏବଂ ଓଡ଼ିଶାରେ ତା'ର ପ୍ରଚାର ପାଇଁ ଓଡ଼ିଶାର ସୁରେନ୍ଦ୍ରନାଥ ଦ୍ୱିବେଦୀଙ୍କୁ, ନବକୃଷ୍ଣ ଚୌଧୁରୀଙ୍କ ସହକର୍ମୀ ରୂପେ ରଖା ଯାଇଅଛି ।"

ଅନ୍ୟ ଏକ ରିପୋର୍ଟରେ ଉଲ୍ଲେଖ ଥିଲା "ଉପକୂଳ ଅଞ୍ଚଳରେ 'ଭାରତ ଛାଡ଼' ଆନ୍ଦୋଳନକୁ ତୀବ୍ର କରିବା ପାଇଁ ମାନ୍ଦ୍ରାଜର ତତ୍କାଳୀନ ଆଡ଼ଭୋକେଟ୍ ବାବୁ ଜଗନ୍ନାଥ ଦାସଙ୍କୁ (ଓଡ଼ିଶାର ପୂର୍ବତନ ମୁଖ୍ୟ ବିଚାରପତି) ଦାୟିତ୍ୱରେ ରଖିଲେ । ସେ ଓଡ଼ିଶାରେ ନବକୃଷ୍ଣ ଚୌଧୁରୀ ଓ ସୁରେନ୍ଦ୍ରନାଥ ଦ୍ୱିବେଦୀଙ୍କ ଉପରେ ଆନ୍ଦୋଳନ ଦାୟିତ୍ୱ ନ୍ୟସ୍ତ କରିଥିଲେ ।"

ନବ ବାବୁ ମୁଖ୍ୟମନ୍ତ୍ରୀରୁ ଓହରି ଆସି ପାରଳାଖେମୁଣ୍ଡିଠାରେ ଗୋଟିଏ ସାଧାରଣ ସଭାରେ ଭାଷଣ ଦେବା ପୂର୍ବରୁ ମୁଁ ତାଙ୍କର ପରିଚୟ ଦେବାକୁ ଯାଇ ଉପରୋକ୍ତ ଘଟଣା ବର୍ଣ୍ଣନା କରିଥିଲି । ସେତେବେଳେ ସ୍ୱର୍ଗତ ରାମକୃଷ୍ଣ ପାତ୍ରୀ, ଓଡ଼ିଶାର ପୋଲିସ ଆଇ. ଜି. ଥାଇ ତାଙ୍କର ଭ୍ରାତୃ ଓ ମାତୃ ବିୟୋଗର ଶୁଦ୍ଧି କ୍ରିୟା ପାଇଁ ଛୁଟିରେ ପାରଳା ଆସିଥାନ୍ତି । ସେ ସାଧାରଣ ସଭାରେ ମୋର ଉକ୍ତ ପରିଚୟ ପ୍ରଦାନ ବର୍ଣ୍ଣନା ଶୁଣି ପରଦିନ ଆମ ଘରକୁ ଆସି ବିସ୍ମିତ ହୋଇ ପରେ ମୋତେ ପଚାରିଲେ, କାଲି ସାଧାରଣ ସଭାରେ ନବ ବାବୁଙ୍କ ପରିଚୟ ଦେବାକୁ ଯାଇ ଯେଉଁ ସବୁ ଘଟଣାବଳୀ ବର୍ଣ୍ଣନା କଲ, ତାହା ତୁମେ ଜାଣିଲ କେଉଁଠୁଁ ? ମୁଁ ତାଙ୍କୁ କହିଲି, ଥରେ କଟକରେ ବନ୍ଧୁମେଳ ଭିତରେ ତୁମେ କହିବାର ମୁଁ ଶୁଣିଥିଲି । ଶୁଣି ସେ ତୁନି ରହିଲେ । ତା'ପରେ ତାଙ୍କୁ ମୁଁ ପଚାରିଲି କ'ଣ ମୁଁ କହିବା ଖରାପ ହେଲା କି ? ସେ କହିଲେ, ନା ଖରାପ କିଛି ନାହିଁ, ସତ ଘଟଣା ତ, ନହେଲେ ତୁମେ ଏ ଘଟଣା ଜାଣିଲ କିପରି ବୋଲି ମୁଁ ବିସ୍ମିତ ହୋଇ ପଚାରିଲି ।

୧୯୩୭ରେ ଓଡ଼ିଶାରେ ବିଶ୍ୱନାଥ ଦାସ ମନ୍ତ୍ରିମଣ୍ଡଳରେ ଉତ୍କଳ କଂଗ୍ରେସରେ ଗୋଷ୍ଠୀ ବିବାଦର ପଦଧ୍ୱନି ପ୍ରଥମେ ଶୁଣାଗଲା । ସେତେବେଳେ ମୁଁ ପ୍ରାଦେଶିକ କଂଗ୍ରେସର ସଦସ୍ୟ ଭାବେ ପଣ୍ଡିତ ନୀଳକଣ୍ଠଙ୍କ ଗୋଷ୍ଠୀରେ ରହିଥିଲି । ନବ ବାବୁ ଅପର ଗୋଷ୍ଠୀ ଅର୍ଥାତ୍ ବିଶ୍ୱନାଥ ଦାସ ଓରଫ ମହତାବ ଗୋଷ୍ଠୀରେ ଥିଲେ । ସେତେବେଳେ ତାଙ୍କ ସମ୍ପର୍କରେ ଆସି ମୁଁ ତାଙ୍କୁ ଯାହା ବୁଝିଲି, ସେ ଗଣତନ୍ତ୍ରର ସୁରକ୍ଷା ପାଇଁ ଆବଶ୍ୟକ ବେଳେ ଗାନ୍ଧୀଙ୍କୁ ଛାଡ଼ି ଦେଉଥିଲେ ।

କଂଗ୍ରେସ ସଭାପତି ପଦ ପାଇଁ ଗାନ୍ଧୀଜୀଙ୍କ ମନୋନୀତ ପ୍ରାର୍ଥୀ ପଟ୍ଟାଭି ସୀତାରାମାୟାଙ୍କୁ ସୁଭାଷଚନ୍ଦ୍ର ବୋଷ ଯେତେବେଳେ ପ୍ରତିଦ୍ୱନ୍ଦ୍ୱିତା କଲେ, ସୁଭାଷ ବାବୁଙ୍କ ବିଜୟ ଆଶଙ୍କା କରି ମହାତ୍ମାଜୀ "ପଟ୍ଟାଭିଙ୍କ ପରାଜୟ ମୋର ପରାଜୟ ବୋଲି ବୁଝିବାକୁ ହେବ" ବୋଲି ଭୋଟରମାନଙ୍କୁ ଆହ୍ୱାନ ଦେଲେ । ମହାତ୍ମାଜୀଙ୍କ ଏହି ଆହ୍ୱାନ ପରେ ଉତ୍କଳ କଂଗ୍ରେସର ସୁଭାଷ ବାବୁଙ୍କ ସମର୍ଥକ ସଂଖ୍ୟା ଗରିଷ୍ଠ; ନୀଳକଣ୍ଠ ବାବୁଙ୍କ ଗୋଷ୍ଠୀ, ନେତୃତ୍ୱ (ଗାନ୍ଧୀ) ଭାଙ୍ଗିପଡ଼ିଲେ ଦଳ (କଂଗ୍ରେସ) ଭାଙ୍ଗି ପଡ଼ିବ ଆଶଙ୍କା କରି, ବଳିଷ୍ଠ ତର୍କ ଦ୍ୱାରା ଦଳର ସଦସ୍ୟମାନଙ୍କୁ ବୁଝାଇ ପଟ୍ଟାଭିଙ୍କୁ ସମର୍ଥନ କଲେ । ନବ ବାବୁ ମହାତ୍ମାଜୀଙ୍କ ଉକ୍ତ ଆହ୍ୱାନକୁ ଅଗଣତାନ୍ତ୍ରିକ ମନେକରି ପୂର୍ବରୁ ପଟ୍ଟାଭିଙ୍କୁ ସମର୍ଥନ କରିବା ପାଇଁ ସିଦ୍ଧ ଥିବା ସଂଖ୍ୟାଲଘୁ ଗୋଷ୍ଠୀକୁ ସୁଭାଷ ବାବୁଙ୍କ ସପକ୍ଷରେ ଭୋଟ ଦେବା ପାଇଁ ତାଙ୍କର ବିଚକ୍ଷଣ ତର୍କ ଶକ୍ତି ଦ୍ୱାରା ସଦସ୍ୟମାନଙ୍କୁ ବୁଝାଇ ସୁଭାଷ ବାବୁଙ୍କ ସପକ୍ଷରେ ଭୋଟ ଦିଆଇ ଗଣତନ୍ତ୍ରର ସୁରକ୍ଷା ପାଇଁ ଉତ୍କଳ କଂଗ୍ରେସରେ କ୍ଷଣିକ ମଧ୍ୟରେ ଗୋଟିଏ ନାଟକୀୟ ପରିବର୍ତ୍ତନ ଘଟାଇ ପାରିଥିଲେ । ଭୋଟରେ ସୁଭାଷ ବାବୁଙ୍କର ବିଜୟ ହେଲା ।

ବିଶ୍ୱନାଥ ଦାସ ମନ୍ତ୍ରିମଣ୍ଡଳରେ "ମନି ଲେଣ୍ଡର୍ସ ବିଲ୍" ଓ "ମେଡ୍ରାସ ଏଷ୍ଟେଟ ଲେଣ୍ଡ ଆକ୍ଟ" ବିଧାନ ସଭାରେ ଆଗତ ହେବା ପୂର୍ବରୁ ପ୍ରାଦେଶିକ କଂଗ୍ରେସ କମିଟି ତଥା ସଭାପତିଙ୍କ ସହ କଂଗ୍ରେସ ସମ୍ବିଧାନ ଅନୁଯାୟୀ ପରାମର୍ଶ କରାଯାଇ ନ ଥିବାରୁ ସଭାପତି ପଣ୍ଡିତ ନୀଳକଣ୍ଠ ଦାସ ମୁଖ୍ୟମନ୍ତ୍ରୀ ବିଶ୍ୱନାଥ ଦାସଙ୍କ କଂଗ୍ରେସର ସମ୍ବିଧାନ ପ୍ରତି ଦୃଷ୍ଟି ଆକର୍ଷଣ କରି ଉପରୋକ୍ତ ଦୁଇଟି ବିଲ୍ ବିରୁଦ୍ଧରେ ଘୋର ଆପତ୍ତି ଦର୍ଶାଇ ସେତେବେଳେ ଇଂରାଜୀରେ ବିଶ୍ୱନାଥ ବାବୁଙ୍କୁ କହିଥିଲେ, "We are the chalk piece and you are the black-board. You have only to show what is right."

ଅର୍ଥାତ୍ ପ୍ରାଦେଶିକ କଂଗ୍ରେସ କମିଟି ଯାହା ଲେଖିଦେବ, ମନ୍ତ୍ରିମଣ୍ଡଳ କଳାପଟା ରୂପେ ତାହା ଦେଖାଇ ଦେବେ ମାତ୍ର ।

କଂଗ୍ରେସ ସମ୍ବିଧାନ ଘେନି ପ୍ରାଦେଶିକ କଂଗ୍ରେସ ଭିତରେ ଉପୁଜିଥିବା ଘଟଣାକୁ କେନ୍ଦ୍ର କରି ଉତ୍କଳ କଂଗ୍ରେସ ଭିତରେ ଗୋଷ୍ଠୀ ବିବାଦ ତୀବ୍ର ହେଲା । କଂଗ୍ରେସ କର୍ତ୍ତୃପକ୍ଷ କୌଣସି ସମାଧାନ କରି ନ ପାରି ଉକ୍ତ କଂଗ୍ରେସ ସମ୍ବିଧାନକୁ ସଂଶୋଧନ କରିଦେଲେ । ମନ୍ତ୍ରିମଣ୍ଡଳର କାର୍ଯ୍ୟରେ କଂଗ୍ରେସର ହସ୍ତକ୍ଷେପ ନିଷିଦ୍ଧ ହେଲା ।

ନବ ବାବୁ ଅପର ଗୋଷ୍ଠୀରେ ଅର୍ଥାତ୍, ବିଶ୍ୱନାଥ ବାବୁଙ୍କ ଗୋଷ୍ଠୀରେ ଥିଲେ ସୁଦ୍ଧା ଉତ୍କଳ କଂଗ୍ରେସ ସଭାପତିଙ୍କ ଉପରୋକ୍ତ ସାମ୍ବିଧାନିକ ଆପତ୍ତିକୁ ସମର୍ଥନ କରିଥିଲେ ଏବଂ କଂଗ୍ରେସ ଉଚ୍ଚ କର୍ତ୍ତୃପକ୍ଷଙ୍କ ସେଥିରେ ହସ୍ତକ୍ଷେପ ଏବଂ କଂଗ୍ରେସ ସମ୍ବିଧାନ ସଂଶୋଧନକୁ ଅଗଣତାନ୍ତ୍ରିକ ଓ ଏକଛତ୍ରବାଦ ବୋଲି ସମାଲୋଚନା କରିଥିଲେ ।

ଏହି ଘଟଣାରେ ନବ ବାବୁ କଂଗ୍ରେସ ତଥା ଦେଶର ଜନସାଧାରଣଙ୍କ ମଧ୍ୟରେ ନିର୍ଭୀକ ଓ ନିରପେକ୍ଷ ବ୍ୟକ୍ତି ଭାବେ ଲୋକପ୍ରିୟ ହୋଇ ପ୍ରଶଂସିତ ହୋଇଥିଲେ ।

ଓଡ଼ିଶା ବିଧାନ ସଭାରେ ମୁଖ୍ୟମନ୍ତ୍ରୀ ଭାବେ ନବ ବାବୁ ଭୂସଂସ୍କାର ବିଷୟରେ ଯେଉଁ ସୁଚିନ୍ତିତ ସୁଦୀର୍ଘ ଭାଷଣ ଦେଇଥିଲେ, ବିଧାନ ସଭା ବିରୋଧି ଦଳେ ପଣ୍ଡିତ ନୀଳକଣ୍ଠ ସଭାଗୃହରେ ସମସ୍ତଙ୍କ ସମକ୍ଷ ବ୍ୟାହାରରେ ନବ ବାବୁଙ୍କୁ କୁଣ୍ଢାଇ ପକାଇ କହିଥିଲେ, ନବ ବାବୁ ଆଜି ବକ୍ତୃତାରେ ମାତ୍ କରିଦେଲେ । ସେ ଦିନ ପଣ୍ଡିତ ନୀଳକଣ୍ଠଙ୍କର ନବ ବାବୁଙ୍କୁ ଏହି ଅଭିନନ୍ଦନ, ନବ ବାବୁଙ୍କର ମନ୍ତ୍ରିତ୍ୱରେ ଦକ୍ଷତା ଓ କୃତିତ୍ୱ ଏବଂ ସୁଦୃଢ଼ ବ୍ୟବସ୍ଥାପନାର ପରିଚାୟକ ମାତ୍ର ।

ନବ ବାବୁ ମୁଖ୍ୟମନ୍ତ୍ରୀ ଥିଲା ବେଳେ ନୀଳକଣ୍ଠ ବାବୁ ତାଙ୍କ ବସାକୁ ଯାଇ ନିଜ ବସାକୁ ଫେରିଆସିଲା ବେଳେ ତାଙ୍କ ବସାରେ ମୁଁ ଓ ସଦୁମଣି ମଙ୍ଗରାଜ ଥାଉ । ନୀଳକଣ୍ଠ ବାବୁ ଖୁବ୍ ବିସ୍ମୟ ମନରେ ଆମକୁ କହୁଥିଲେ, "ଗୋକୁଳାନନ୍ଦ ଚୌଧୁରୀଙ୍କ ପୁଅ ଆଜି ପଖାଳ ଭାତ, ଲାଉ ସନ୍ତୁଳା ଖାଇବା ଦେଖିଲି ।" ଯେପରି ନବ ବାବୁଙ୍କର ପଖାଳ ଭାତ ଓ ଲାଉ ସନ୍ତୁଳା ଆଦି ବସ୍ତୁ ସମସ୍ତ ଧରି ନୀଳକଣ୍ଠ ବାବୁଙ୍କୁ ବିସ୍ମିତ କରାଇଦେଇଥିବା ଦେଖାଯାଇଥିଲା ।

ଦଲେଇଘାଇ ବନ୍ୟାବେଳେ ବନ୍ୟାଞ୍ଚଳ ରିଲିଫ ବଣ୍ଟନରେ କେତେକ କଂଗ୍ରେସ କର୍ମୀଙ୍କ ଦୁର୍ନୀତି, ତାଙ୍କ ପ୍ରାଣରେ ଆଘାତ ଦେଇଥିଲା । ଜଣେ ପ୍ରଭାବଶାଳୀ କଂଗ୍ରେସ କର୍ମୀ ମୁଖ୍ୟମନ୍ତ୍ରୀ ରିଲିଫ ପାଣ୍ଠିରୁ ୧୦ ହଜାର ଟଙ୍କା ମାଗିବା କଥା ତାଙ୍କର ପି. ଏ. କୈଳାସ ଘୋଷ, ମୁଖ୍ୟମନ୍ତ୍ରୀ ନବ ବାବୁଙ୍କୁ କହିବାରୁ ନବ ବାବୁ ଖୁବ୍ ବିରକ୍ତ ମନରେ ପଚାରିଥିଲେ, ଆଉ କେତେ ଟଙ୍କା ପାଣ୍ଠିରେ ଅଛି ? ଆଉ ମୋଟ ୨୦ ହଜାର ଟଙ୍କା ଅଛି ବୋଲି ତାଙ୍କର ପି. ଏ. କହିବା ପରେ ନବ ବାବୁ ଖୁବ୍ ବ୍ୟଥିତ ଓ ବିରକ୍ତ ହୋଇ କହିଥିଲେ, ୧୦ ହଜାର କାହିଁକି, ସମୁଦାୟ ଟଙ୍କା ତାଙ୍କୁ ଦେଇଦିଅ । ଟଙ୍କା ଥିବାରୁ ସିନା ଥରକୁ ଥର ଆସି ମାଗୁଛନ୍ତି । ନ ଥିଲେ ଆଉ କଏ ମାଗିବେ ନାହିଁ । ରିଲିଫ ପାଣ୍ଠି ଥିବା ଆବେଦନ ଓ କାଗଜପତ୍ର ସବୁ ପ୍ରାଦେଶିକ କଂଗ୍ରେସ ସଭାପତିଙ୍କୁ ଦେଇଦିଅ । କଂଗ୍ରେସ କର୍ମୀଙ୍କ ଦୁର୍ନୀତିରେ ନବ ବାବୁଙ୍କ ବେଦନାର ବ୍ୟଥା ମୁଁ, ବ୍ରହ୍ମପୁରର ତତ୍କାଳୀନ ବିଧାୟକ ଗାଡ଼ି ନାରାୟଣ ମୂର୍ତ୍ତି ଓ ନବ ବାବୁଙ୍କର ଅନ୍ୟତମ ପି. ଏ. ବଳରାମ ମହାନ୍ତି ଦେଖିଥିଲୁ ।

ସେହି ବନ୍ୟାରେ ବନ୍ୟାପ୍ରପୀଡ଼ିତଙ୍କ ଚିକିତ୍ସା ପାଇଁ ଭାରତ ବାହାରୁ ଓ ବିଦେଶରୁ ଆସିଥିବା ବହୁମୂଲ୍ୟ ଔଷଧଗୁଡ଼ିକୁ ସ୍ୱାସ୍ଥ୍ୟ ଉପମନ୍ତ୍ରୀ ସ୍ୱାସ୍ଥ୍ୟ ଡିରେକ୍ଟରଙ୍କ ଦପ୍ତରକୁ ନ ଦେଇ ଓ ନ ଜଣାଇ ନିଜ ପାଖରେ ରଖିବାର ସ୍ୱେଚ୍ଛାଚାର ଓ ମନମୁଖୀ କାରବାରରେ ଦୁର୍ନୀତି ଅଭିଯୋଗ ପାଇ ମୁଖ୍ୟମନ୍ତ୍ରୀ ନବ ବାବୁ ସ୍ୱାସ୍ଥ୍ୟ ଉପମନ୍ତ୍ରୀଙ୍କୁ କଡ଼ା ନିର୍ଦ୍ଦେଶ ଦେଇଥିଲେ । ସେ କଥା ପ୍ରପୀଡ଼ିତଙ୍କ ଚିକିତ୍ସା ପାଇଁ ବାହାରୁ ପାଇଥିବା ଔଷଧଗୁଡ଼ିକୁ ତୁରନ୍ତ ସ୍ୱାସ୍ଥ୍ୟ ଡିରେକ୍ଟୋରେଟ୍‌ରେ ଦେବା ପାଇଁ ଏବଂ ତତ୍କାଳୀନ ସ୍ୱାସ୍ଥ୍ୟ ଡାଇରେକ୍ଟର ଡା. ସତ୍ୟନାରାୟଣ ଗନ୍ତାୟତଙ୍କୁ ନିର୍ଦ୍ଦେଶ ଦେଇଥିଲେ । ସ୍ୱାସ୍ଥ୍ୟ ଉପମନ୍ତ୍ରୀ ପାଇଥିବା ଔଷଧ ଓ ସେ ବିତରଣ କରିଥିବା ଔଷଧର ତାଲିକା ନ ପାଇଲେ ତାଙ୍କ ବିରୁଦ୍ଧରେ ଦୃଢ଼ ପଦକ୍ଷେପ ନେବା ପାଇଁ ନବ ବାବୁଙ୍କ ମୁଖ୍ୟମନ୍ତ୍ରୀ ସମୟରେ ବିରୋଧୀ ଦଳର ନେତା ଶ୍ରୀ ଗ୍ରହ.କର ସୂପକାରଙ୍କ ଅନୁରୋଧରେ କଟକ ମେଡ଼ିକାଲ କଲେଜର ପ୍ରତିଷେଧକ ଭେଷଜ ବିଭାଗର ମୁଖ୍ୟ ଅଧ୍ୟାପକ ଡା. ରାଧାଗୋବିନ୍ଦ ପାଣିଗ୍ରାହୀ ଦୂଷିତ ଜଳ ସାଧାରଣ ସ୍ୱାସ୍ଥ୍ୟ ପକ୍ଷରେ କେତେଦୂର କ୍ଷତିକାରକ, ସେ ବିଷୟରେ ବିଶେଷ ଜ୍ଞାନଲାଭ କରିବା ପାଇଁ ତାଙ୍କୁ ଏକ ବୃତ୍ତି ଦେଇଥିବା ଯୋଗୁ ସ୍ୱାସ୍ଥ୍ୟ ଉପମନ୍ତ୍ରୀ ତାହା ଗୁରୁତର ଅପରାଧ ବୋଲି କହି ତାଙ୍କ ବିରୁଦ୍ଧରେ ପ୍ରତିଜ୍ଞା କରିଥିଲେ ଏବଂ ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟର ଏକ୍ସଟର୍ନାଲ୍. ପରୀକ୍ଷକ ଆଦେଶକୁ ସେ ନିଜେ

ସିଧାସଳଖ ବିଶ୍ୱବିଦ୍ୟାଳୟକୁ ଜଣାଇଥିଲେ । ଏହା ଅଧ୍ୟାପକଙ୍କ ଅଜ୍ଞାତରେ କରାଯାଇଥିବାରୁ ଅଧ୍ୟାପକ ଡା. ପାଣିଗ୍ରାହୀ ସ୍ୱାସ୍ଥ୍ୟ ଉପମନ୍ତ୍ରୀଙ୍କ ଶାସନଗତ ଅସଙ୍ଗତି ଓ ସ୍ୱେଚ୍ଛାଚାର କହି ତତ୍କାଳୀନ ଘରୋଇ ବିଭାଗ ସଚିବ ମୋହନନାଥ ମହାପାତ୍ରଙ୍କୁ ଦେଖାକରି କାର୍ଯ୍ୟରୁ ଇସ୍ତଫା ଦେଇଥିଲେ ।

ଏହି ସମସ୍ତ ଘଟଣାରେ ଖବର ପାଇ ଶ୍ରୀ ବିଜୟ କୁମାର ପାଣି, ବୀରେନ୍ ମିତ୍ର ପ୍ରମୁଖ ୧୨ ଜଣ କଂଗ୍ରେସ ବିଧାୟକ ସ୍ୱାସ୍ଥ୍ୟ ଉପମନ୍ତ୍ରୀଙ୍କ ଉପରୋକ୍ତ ସ୍ୱେଚ୍ଛାଚାର ଓ ଦଳୀୟ ମନୋବୃତ୍ତି କାର୍ଯ୍ୟ ମୁଖ୍ୟମନ୍ତ୍ରୀ ନବ ବାବୁଙ୍କ ଗୋଚର କରାଇଥିଲେ । ନବ ବାବୁ ସମସ୍ତ ଘଟଣା ବିଧାୟକମାନଙ୍କଠାରୁ ଶୁଣିବା ପରେ କ୍ଷୁବ୍ଧ ଓ କ୍ରୋଧାନ୍ୱିତ ହୋଇ ସ୍ୱାସ୍ଥ୍ୟ ଉପମନ୍ତ୍ରୀଙ୍କୁ ତାଗିଦ୍ କରି କହିଥିଲେ, 'ଭବିଷ୍ୟତରେ ଦଳୀୟ ମନୋବୃତ୍ତିରେ ପ୍ରତିହିଂସା ପ୍ରଣୋଦିତ କାମ ଓ ପ୍ରଶାସନିକ ଅସଙ୍ଗତିର ଆଉ ଯେପରି ପୁନରାବୃତ୍ତି ନ ହୁଏ ଏବଂ ଘରୋଇ ବିଭାଗ ସଚିବ ନିର୍ଦ୍ଦେଶ ଦେଇଥିଲେ ଯେ ନିଜେ ଅଧ୍ୟାପକ ପାଣିଗ୍ରାହୀଙ୍କ ସହ ଦେଖାକରି ତାଙ୍କର ଇସ୍ତଫାପତ୍ର ଫେରାଇନେବା ପାଇଁ ଅନୁରୋଧ କରନ୍ତୁ । ଏଥିରୁ ଘଟଣାରୁ ସ୍ପଷ୍ଟ ପ୍ରମାଣିତ ହୁଏ, ନବ ବାବୁ ତାଙ୍କ ଶାସନ କାଳରେ, ଶାସନ ମଧ୍ୟରେ ଦଳୀୟ ମନୋଭାବ, ଦୁର୍ନୀତି, ଶାସନଗତ ଅସଙ୍ଗତି, ସ୍ୱେଚ୍ଛାଚାର ଓ ମନମୁଖୀ କାରବାରକୁ ଦୃଢ଼ହସ୍ତରେ ଦମନ କରୁଥିଲେ ।

ମୁଖ୍ୟମନ୍ତ୍ରୀରୁ ଓହରି ଆସି ନବ ବାବୁ ନିର୍ବାଚନ ସଭାରେ କଂଗ୍ରେସକୁ ଶାସନକ୍ଷେତ୍ରରୁ ହଟାଇବା ପାଇଁ ଜନତାଙ୍କୁ ଯେଉଁ ଆହ୍ୱାନ ଦେଇଥିଲେ, ତାହା କଂଗ୍ରେସ ଇତିହାସରେ ଗୋଟିଏ ନବଯୁଗ ସୃଷ୍ଟି କରିଥିଲା । ବାଲେଶ୍ୱରଠାରେ ଗୋଟିଏ ନିର୍ବାଚନ ସଭାରେ ସେ କଂଗ୍ରେସ ବିରୁଦ୍ଧରେ ଭାଷଣ ଦେଲାବେଳେ ଗୁରୁଗମ୍ଭୀର କଣ୍ଠ ସ୍ୱରରେ କହିଲେ, "କଂଗ୍ରେସର ଦୁର୍ନୀତି ସପକ୍ଷରେ ମୁଁ ସାକ୍ଷୀ ହେବି । ଯଦି ତାଙ୍କ ଦୁର୍ନୀତି ବିରୁଦ୍ଧରେ କୌଣସି କାର୍ଯ୍ୟାନୁଷ୍ଠାନ ନ ହୁଏ, ତେବେ ମୁଁ କାନୁ ସାନ୍ୟାଲ ହେବି; ଚାରୁ ମଜୁମଦାର ହେବି ।" ସେଦିନ ବାଲେଶ୍ୱର ବିରାଟ ସଭାର ଉକ୍ତ ଭାଷଣ ଅଗଣିତ ଜନତାଙ୍କୁ ମୁଗ୍ଧ କରିଦେଇଥିଲା ଏବଂ ନବ ବାବୁ ବାଲେଶ୍ୱରଠାରେ ବଜାଇଥିବା ସେହି ତୂରୀ ଓଡ଼ିଶାବାସୀଙ୍କ କର୍ଣ୍ଣକୁହରରେ ଗୁରୁଗମ୍ଭୀର ନିନାଦରେ ନିନାଦିତ ହୋଇଥିଲା ।

ସେହିଥର ନବ ବାବୁଙ୍କ ଆହ୍ୱାନରେ ଓଡ଼ିଶା ବିଧାନ ସଭାରେ କଂଗ୍ରେସ ସଂଖ୍ୟାଲଘୁ ହୋଇଥିଲା ।

ଆଜି ନବ ବାବୁଙ୍କ ବିଭିନ୍ନ କ୍ଷେତ୍ରରେ ବହୁମୁଖୀ ଅସାଧାରଣ ପ୍ରତିଭା ସ୍ମରଣ କଲାବେଳେ ଭକ୍ତିପୂର୍ଣ୍ଣ ଆନନ୍ଦ ଗଦ୍‌ଗଦ କଣ୍ଠ ବିୟୋଗ ଶୋକରେ ରୁଦ୍ଧ ହୋଇଯାଉଛି ।

ବିଭିନ୍ନ କ୍ଷେତ୍ରରେ ଦୀର୍ଘକାଳ ବ୍ୟାପୀ ତାଙ୍କର ସାଧନା, କୃତିତ୍ୱ, ସେବା, ତ୍ୟାଗ କହିବସିଲେ ଗୋଟିଏ ବିରାଟ ଗ୍ରନ୍ଥ ହେବ । ସ୍ଥୂଳତଃ କହିବାକୁ ଗଲେ ତାଙ୍କ ଜୀବନ ହିଁ ନବଜାଗ୍ରତ ଓଡ଼ିଶାର ଜନ-ମାନସର ସାଧନା, ସେବା, ତ୍ୟାଗର ଗୋଟିଏ ଆଲୋକ ଉତ୍ସ ।

# ଏକ ଭକ୍ତିପୂତ ଶ୍ରଦ୍ଧାଞ୍ଜଳି

**ବାଙ୍କବିହାରୀ ଦାସ**

ଓଡ଼ିଶାର ଯେଉଁ କେତେ ଜଣ ବିଶିଷ୍ଟ ଜନନାୟକ ପ୍ରଥମ ମହାଯୁଦ୍ଧ ପରଠାରୁ ଆଜି ପର୍ଯ୍ୟନ୍ତ ଜନମାନସରେ ତାଙ୍କର ପ୍ରତିଚ୍ଛବି ଆଙ୍କି ଯାଇଛନ୍ତି, ତାଙ୍କ ମଧ୍ୟରେ ସ୍ୱର୍ଗତ ନବ ବାବୁ ଅଗ୍ରଗାମୀ। ଜାତୀୟ ଜୀବନରେ ବିଭିନ୍ନ କ୍ଷେତ୍ରରେ ତାଙ୍କର ଅବଦାନ ଅତୁଳନୀୟ। ଉତ୍କଳମଣି ଗୋପବନ୍ଧୁଙ୍କର ଓଡ଼ିଆ ଜାତିକୁ ମହାଭାରତୀୟ ସ୍ରୋତରେ ସାମିଲ କରିବାରେ ଯଥେଷ୍ଟ ଅବଦାନ ଥିଲେ ହେଁ ତାହାକୁ ଏକ ପ୍ରଗତିଶୀଳ ମୋଡ଼ ଦେବାରେ ନବ ବାବୁଙ୍କର ପ୍ରଚେଷ୍ଟା ଅନେକ ପରିମାଣରେ ସଫଳ ହୋଇଥିଲା। ସେଥିପାଇଁ ସେ ପ୍ରତ୍ୟେକ ଜାତୀୟତାବାଦୀ ବ୍ୟକ୍ତିର ପ୍ରେରଣାର ଉତ୍ସ ଥିଲେ। ଯେଉଁ କେତେ ଜଣ ଯୁବକ ଚଳିତ ଶତାବ୍ଦୀରେ ସମାଜବାଦୀ ଆନ୍ଦୋଳନରେ ଅଗ୍ରଦୂତ ଥିଲେ, ସେମାନଙ୍କ ମଧ୍ୟରେ ତାଙ୍କର ସ୍ଥାନ ଖୁବ ଉଚ୍ଚରେ ଥିଲା। ଓଡ଼ିଶାରେ ଜାତୀୟ ଆନ୍ଦୋଳନ ସମୟରେ କୃଷକ ଆନ୍ଦୋଳନ ଏବଂ ଗଡ଼ଜାତ ଆନ୍ଦୋଳନରେ ତାଙ୍କର ଭୂମିକା ଇତିହାସବକ୍ଷରେ ଲିପିବଦ୍ଧ ରହିବ। ୧୯୪୭ ମସିହାରେ ଓଡ଼ିଶାର ମନ୍ତ୍ରିମଣ୍ଡଳରେ ଯୋଗ ଦେବା ପୂର୍ବରୁ ନିଜକୁ ଅଗଣିତ ନିଷ୍ପେଷିତ ଲୋକଙ୍କ ଭିତରେ ନିଜର ପ୍ରତିଷ୍ଠା ହାସଲ କରିପାରିଥିଲେ।

ନବ ବାବୁଙ୍କର ଏକ ଅଦ୍ଭୁତ ଆକର୍ଷଣୀ ଶକ୍ତି ଥିଲା, ଯାହା କି ଖୁବ୍ କମ୍ ଜନନାୟକଙ୍କ ପାଖରେ ଥାଏ। ଯେଉଁମାନେ ଅଳ୍ପ ସମୟ ପାଇଁ ମଧ୍ୟ ତାଙ୍କର ନିକଟବର୍ତ୍ତୀ ହୋଇଥିଲେ, ସେମାନଙ୍କୁ ତାଙ୍କର ଆକର୍ଷଣୀ ଶକ୍ତି ସବୁଦିନ ପାଇଁ ଅଭିଭୂତ କରୁଥିଲା। ଅମାୟିକ ବ୍ୟବହାର, ଆନ୍ତରିକତାପୂର୍ଣ୍ଣ ଆଲୋଚନା ଓ ସରଳ ଜୀବନଯାପନ ସବୁ ଲୋକଙ୍କୁ ଏକ ଆତ୍ମିକ ସମ୍ପର୍କରେ ବାନ୍ଧି ରଖୁଥିଲା। ଛାତ୍ରଜୀବନରୁ ଆମେମାନେ ତାଙ୍କ ସହିତ ସମୟେ ସମୟେ ଭିନ୍ନ ମତ ପୋଷଣ କରୁଥିଲେ ହେଁ ତାଙ୍କର ବ୍ୟକ୍ତିତ୍ୱ ଆଗରେ ସବୁବେଳେ ମୁଣ୍ଡ ନଇଁବାକୁ ପଡ଼ୁଥାଏ। ୧୯୩୮ ମସିହାଠାରୁ ଯେତେବେଳେ ସେ ଓଡ଼ିଶାର ସମାଜବାଦୀ ଆନ୍ଦୋଳନ ତଥା କୃଷକ ଓ ଗଡ଼ଜାତ ଆନ୍ଦୋଳନର ସୂତ୍ରଧର ହେଲେ, ସେତେବେଳଠାରୁ ଓଡ଼ିଶାର ଅଗଣିତ ଯୁବକ ତାଙ୍କ ଦ୍ୱାରା ଅନୁପ୍ରେରିତ ହେବାକୁ ଆରମ୍ଭ କଲେ। ସେ ଯୁଗରେ ତାଙ୍କର ବୌଦ୍ଧିକ ବିଚାର ପ୍ରତ୍ୟେକ ଶିକ୍ଷିତ ଯୁବକଙ୍କୁ ଆହୁରି ଆକୃଷ୍ଟ କଲା। ପରବର୍ତ୍ତୀ କାଳରେ ଅନେକ ଯୁବକ ଯେଉଁମାନେ କି ଜାତୀୟ ଆନ୍ଦୋଳନ ଓ ବିଭିନ୍ନ ଦଳର ନେତୃତ୍ୱରେ ପରିଚାଳିତ ଜନଆନ୍ଦୋଳନରେ ପ୍ରତିଷ୍ଠା ଅର୍ଜନ କରିଛନ୍ତି, ସେମାନେ ସମସ୍ତେ ଅଳ୍ପ ବହୁତେ ସ୍ୱର୍ଗତ ନବ ବାବୁଙ୍କର ପ୍ରେରଣାରେ ଉପକୃତ ହୋଇଛନ୍ତି।

ମୋର ପ୍ରଥମ ଘନିଷ୍ଠ ସମ୍ପର୍କ ତାଙ୍କ ସାଙ୍ଗରେ ହୁଏ, ଯେତେବେଳେ କି ୧୯୪୪ ମସିହାରେ ସେ କଟକ ଜେଲକୁ ବଦଳି ହୋଇ ଆସନ୍ତି। ବର୍ଷେ ପର୍ଯ୍ୟନ୍ତ ଏକ କୋଠରିରେ ଦିନ ରାତି ରହିବାର ସୌଭାଗ୍ୟ ଅର୍ଜନ କରିଛି। ଗାନ୍ଧୀଜୀଙ୍କ ଦର୍ଶନ ଓ ସମାଜବାଦୀ ଦର୍ଶନ ଅଧ୍ୟୟନ କଲାବେଳେ, ଯେତେବେଳେ କୌଣସି ମାନସିକ ଦ୍ୱନ୍ଦ୍ୱ ଉପୁଜେ, ତା'ର ସମାଧାନ ତାଙ୍କରି ପାଖରେ କରେ। ମୃତ୍ୟୁ ପର୍ଯ୍ୟନ୍ତ ଏକ ଛାତ୍ର ଭଳି ସେ ବରାବର ଅଧ୍ୟୟନରତ ରହୁଥିଲେ ଏବଂ ମୋ ଭଳି ଅଗଣିତ ବ୍ୟକ୍ତିଙ୍କୁ ପ୍ରକାଶିତ ହେଉଥିବା ଉପାଦେୟ ପୁସ୍ତକ ସବୁ ଅଧ୍ୟୟନ କରିବାକୁ ବରାବର ସୁପାରିଶ କରୁଥିଲେ। ଆଜିକାଲି ଯୁଗରେ ବିଶ୍ୱର ଚିନ୍ତା ସହିତ ସଂଶ୍ଳିଷ୍ଟ ହେବାର ଅନୁସନ୍ଧିତ୍ସା ରାଜନୀତି କ୍ଷେତ୍ରରେ ବିରଳ। ଯେଉଁ ଲେଖକ ବା ଲେଖାର ପ୍ରଭାବ ତାଙ୍କ ମନ ଉପରେ ଛାପ ପକାଉଥିଲା, ସେପରି ଲେଖା ପଢ଼ିବାକୁ ସବୁ ବନ୍ଧୁମାନଙ୍କୁ ସେ ଉତ୍ସାହିତ କରୁଥିଲେ। ଦର୍ଶନ ଓ ଜୀବନ ପରସ୍ପରକୁ କେତେ ପ୍ରଭାବିତ କରିପାରେ, ତାହା ନବ ବାବୁଙ୍କ ଜୀବନରେ ରୂପାୟିତ ହୋଇଥିଲା।

ସେଥିପାଇଁ ସେ କେବଳ ଜଣେ ପ୍ରତିଷ୍ଠିତ ରାଜନୀତିଜ୍ଞ ଥିଲେ, ଏହା କହିବା ସମ୍ପୂର୍ଣ୍ଣ ଭୁଲ୍ ହେବ । ମୋ ବିଚାରରେ ସେ ଥିଲେ ଜଣେ ନିରୋଳା, ସର୍ବାଙ୍ଗ ପୁରୁଷ । ନିଜେ ଯେଉଁଥିରେ ବିଶ୍ୱାସ କରୁଥିଲେ, ସେଇଥିରେ ସେ ଆତ୍ମୋତ୍ସର୍ଗ କରୁଥିଲେ । ସେଥିପାଇଁ କଂଗ୍ରେସ ଦଳରେ ସେ ନିଜକୁ ସଂପୂର୍ଣ୍ଣଭାବେ ମିଳେଇ ପାରୁ ନ ଥିଲେ କି ଶାସନ ଥିଲାବେଳେ ମଧ୍ୟ ମନ୍ତ୍ରୀତ୍ୱର ପ୍ରଭାବ ତାଙ୍କ ଉପରେ ରେଖାପାତ କରିପାରୁ ନ ଥିଲା । ଜାତୀୟ ଆନ୍ଦୋଳନ ବେଳେ ସେ ଯେତେବେଳେ କଂଗ୍ରେସ ଆନ୍ଦୋଳନକୁ ଏକ ସମାଜବାଦୀ ମୋଡ଼ ଦେବାକୁ ପ୍ରଚେଷ୍ଟା ଚଳାଇଥିଲେ, ଅନେକ କଂଗ୍ରେସ ଲୋକ ତାହାକୁ ନାପସନ୍ଦ କରୁଥିଲେ । ସେହିପରି ମନ୍ତ୍ରୀ ଓ ମୁଖ୍ୟମନ୍ତ୍ରୀ ଥିଲାବେଳେ ଯେତେବେଳେ କଂଗ୍ରେସଦଳ ଓ କଂଗ୍ରେସର ଲୋକେ ତାଙ୍କ ସହିତ ଭିନ୍ନ ମତ ହେଉଥିଲେ, ସେତେବେଳେ ମଧ୍ୟ ତାଙ୍କର ପ୍ରାଣର କଥା ସେ ସ୍ପଷ୍ଟ ଭାବରେ ଅଭିବ୍ୟକ୍ତ କରିବାକୁ ପଶ୍ଚାତ୍‌ପଦ ହେଉ ନ ଥିଲେ । ଦଳର ତଥାକଥିତ ଶୃଙ୍ଖଳାର ଊର୍ଦ୍ଧ୍ୱକୁ ଉଠି ନିଜର ପ୍ରାଣର ବେଦନା ଅଭିବ୍ୟକ୍ତ କରିବାର ସତ୍‌ସାହସ ତାଙ୍କଠାରେ ହିଁ ଥିଲା । ସେଇଥିପାଇଁ ତାଙ୍କର ମତ ଓ କାର୍ଯ୍ୟ ଭିତରେ ତାରତମ୍ୟ ନ ଥିଲା, ଶଠତା ନ ଥିଲା, ବା କ୍ଷମତା ନିଶା ତାଙ୍କୁ ଗ୍ରାସ କରିପାରି ନ ଥିଲା । ଏହିପରି ମହାନ୍ ପୁରୁଷ ହିଁ ଏକ ପୂର୍ଣ୍ଣାଙ୍ଗ ପୁରୁଷ ହୋଇପାରନ୍ତି ।

ଏହି ସବୁ କାରଣରୁ ସେ ଥିଲେ ବାସ୍ତବରେ ଜଣେ ବିଦ୍ରୋହୀ । ପ୍ରଚଳିତ ବ୍ୟବସ୍ଥାକୁ ଭାଙ୍ଗି, ଚୂରମାର କରି ଏକ ନୂଆ ବ୍ୟବସ୍ଥାର କଳ୍ପନା ପଛରେ ସେ ବରାବର ଧାବମାନ ଥିଲେ । କ୍ଷମତା ରାଜନୀତିରୁ ବିଦାୟ ନେଲା ପରେ ମଧ୍ୟ ଦଳିତ ନିଷ୍ପେଷିତଙ୍କ ପାଇଁ ଦରଦ ଏବଂ ସେମାନଙ୍କ ଆନ୍ଦୋଳନ ପ୍ରତି ସହାନୁଭୂତି ମୃତ୍ୟୁର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଜାଜ୍ଜ୍ୱଲ୍ୟମାନ ହୋଇ ରହିଥିଲା । ଶାରୀରିକ ସକ୍ରିୟତା ଯେତେ କ୍ଷୁଣ୍ଣ ହେଉଥିଲା, ତାଙ୍କ ଭିତରେ ବିଦ୍ରୋହ ଭାବ ସେତେ ପରିସ୍ଫୁଟ ହେଉଥିଲା । ନକ୍ସଲ୍ ପନ୍ଥୀ ଆନ୍ଦୋଳନ ପ୍ରତି ତାଙ୍କର ସହାନୁଭୂତିର କାରଣ ଏହି ବିଦ୍ରୋହ ଭାବର ଅଭିବ୍ୟକ୍ତି । ସେ ଜଣେ ଅହିଂସାର ପୂଜାରୀ ଥିଲେ ହେଁ କେହି ଯଦି ହିଂସା ବାଟରେ ମଧ୍ୟ ଶୋଷିତ ଶ୍ରେଣୀର ମୁକ୍ତି ଆନ୍ଦୋଳନ କରୁଥିଲା, ତା ପ୍ରତି ମଧ୍ୟ ତାଙ୍କର ସମର୍ଥନ ରହୁଥିଲା । ସେଥିପାଇଁ ଗାନ୍ଧୀଜୀଙ୍କ ଦର୍ଶନ ତାଙ୍କୁ ଅନୁପ୍ରାଣିତ କରୁଥିଲେ ହେଁ ଭିଏତ୍‌ନାମର ମୁକ୍ତି ଆନ୍ଦୋଳନର ପୁରୋଧା ହୋ-ଚି ମିନଙ୍କର ପ୍ରତିଛବି ତାଙ୍କ ରହିବା କୋଠରୀରେ ଟଙ୍ଗା ହୋଇଥିଲା ।

ଦ୍ୱିତୀୟ ମହାଯୁଦ୍ଧ ପୂର୍ବରୁ ସେ କଂଗ୍ରେସ ଭିତରେ ସମାଜବାଦୀ ଆନ୍ଦୋଳନକୁ ପୁଷ୍ଟ କରିବା ପାଇଁ ଅନ୍ୟ ସହକର୍ମୀଙ୍କ ସହିତ ଓଡ଼ିଶାରେ କୃଷୀ ଆନ୍ଦୋଳନର ସୂତ୍ରପାତ କରିଛନ୍ତି । ଜମିଦାରୀ ପ୍ରଥାର ବିଲୋପ ଓ ପ୍ରକୃତ କୃଷୀକୁ କୃଷି ଜମିର ମାଲିକ କରିବା ପାଇଁ ତାଙ୍କର ନେତୃତ୍ୱରେ ଅବାରିତ ସଂଗ୍ରାମ ଜାରିରହେ । ସେଥିପାଇଁ ତାଙ୍କର ରାଜସ୍ୱ ମନ୍ତ୍ରୀ କାଳରେ ଓଡ଼ିଶାର ଜମିଦାରୀ ଉଚ୍ଛେଦ, ଭାଗଚାଷୀଙ୍କୁ ସଂରକ୍ଷିତ କରିବା ଆଇନ୍‌ର ଶୁଭାରମ୍ଭ ହୁଏ । ସେ ଦିଗରେ ତାଙ୍କ ପ୍ରାରମ୍ଭିକ ପଦକ୍ଷେପ ବିନା ଓଡ଼ିଶାରେ ଭୂମି ସଂସ୍କାର ଯାହା କିଛି ହୋଇଛି, ତାହା ସମ୍ଭବପର ହୋଇ ନ ଥାଆନ୍ତା । ତାଙ୍କର ସଭାପତିତ୍ୱରେ ଗଠିତ ହୋଇଥିବା Land revenue and land tenure committee Report ଭାରତବର୍ଷରେ ଜମିଜମା କ୍ଷେତ୍ରରେ ଏକ ନୂତନ ଅଧ୍ୟାୟ ସୃଷ୍ଟି କରିଥିଲା । ଜମିଦାରୀ ଉଚ୍ଛେଦ, କୃଷୀଙ୍କୁ ସ୍ୱତ୍ୱାଧିକାରୀ କରିବା ଓ ପଞ୍ଚାୟତ ସମିତିର କଳ୍ପନା କରି ତାହା ଜରିଆରେ ଭୂରାଜସ୍ୱ ପରିଚାଳନା କରିବା ପ୍ରଭୃତି ସୁପାରିସ ଏକ ଐତିହାସିକ ପଦକ୍ଷେପ । ଭୂ-ସଂସ୍କାର ଏବଂ ରାଜନୈତିକ ଓ ଆର୍ଥିକ କ୍ଷମତାର ବିକେନ୍ଦ୍ରୀକରଣ, ଏହି ଉଭୟ ଦିଗ ପ୍ରତି ନଜର ରଖି ପ୍ରଶାସନିକ ସଂସ୍କାରର ଅଭିନବ ଚିନ୍ତା ତାଙ୍କର କଳ୍ପନାପ୍ରସୂତ । ଗାନ୍ଧୀଜୀଙ୍କ ବିକେନ୍ଦ୍ରୀକରଣ ଚିନ୍ତାଧାରା ଯେ ଗଣତନ୍ତ୍ର ଏବଂ ଲୋକଶାସନର ଏକମାତ୍ର ଆଧାର ହୋଇପାରେ, ସେଥିରେ ଥିଲା ସ୍ୱର୍ଗତ ଚୌଧୁରୀଙ୍କର ଆନ୍ତରିକ ବିଶ୍ୱାସ । ସେଥିପାଇଁ ତାଙ୍କର ନେତୃତ୍ୱରେ ହିଁ ଜିଲ୍ଲାପରିଷଦ ଏବଂ ଅଞ୍ଚଳ ଶାସନ ଆଇନ ଷଷ୍ଠ-ଦଶନ୍ଧିର ମଧ୍ୟଭାଗରେ ବିଧାନ ସଭାରେ ଗୃହୀତ ହୋଇଥିଲା ଏବଂ କାର୍ଯ୍ୟକାରୀ ହୋଇଥିଲା । ଅତୀବ ଦୁଃଖର ବିଷୟ ଯେ ପରବର୍ତ୍ତୀ ସରକାରମାନେ ଏହି ବ୍ୟବସ୍ଥା ଲୋପ ସାଧନ କରିଛନ୍ତି । ବିକେନ୍ଦ୍ରୀକରଣ ଚିନ୍ତାଧାରାକୁ ବର୍ଜନ କରି ନାମକୁ ମାତ୍ର ପଞ୍ଚାୟତ ସମିତି ଓ ଗ୍ରାମପଞ୍ଚାୟତ ଗଠନ କରିଛନ୍ତି । ଶାସନ ଏବଂ ଉନ୍ନୟନମୂଳକ କାର୍ଯ୍ୟକ୍ରମଗୁଡ଼ିକ ସହିତ ଲୋକଙ୍କୁ ସଂଶ୍ଳିଷ୍ଟ ନ କଲେ ଅମଲାତନ୍ତ୍ରର ପ୍ରାଧାନ୍ୟ ରହିବ, ଲୋକଙ୍କ ହାତକୁ କ୍ଷମତା ପ୍ରସାରିତ ହେବ ନାହିଁ ଏବଂ ଯୋଜନା ଉଚିତ ମାର୍ଗରେ ପରିଚାଳିତ ହୋଇପାରିବ ନାହିଁ । ଏହା ଥିଲା ସ୍ୱର୍ଗତ ନବ ବାବୁଙ୍କର ଦୃଢ଼ ବିଶ୍ୱାସ । ପ୍ରଚଳିତ ସମାଜକୁ ସାମନ୍ତବାଦୀ ଓ ନ୍ୟସ୍ତସ୍ୱାର୍ଥଗୋଷ୍ଠୀ ହାତରୁ ମୁକ୍ତ ନ କଲେ, ଗରିବ ଲୋକ ଏ ସମାଜର ଅଧିକାରୀ ହୋଇପାରିବେ ନାହିଁ, ଏହା ଥିଲା ତାଙ୍କର ବଳିଷ୍ଠ ଚିନ୍ତାଧାରା । ସେଇଥିପାଇଁ ତାଙ୍କର ସକ୍ରିୟ ରାଜନୀତି କାଳରେ ସେ ଯେଉଁକି ଅବଦାନ ଦେଇ-

ଯାଇଥିଲେ, ତାହା ପରବର୍ତ୍ତୀ ସମୟରେ ବିକାଶପ୍ରାପ୍ତ ହୋଇପାରିବାକୁ ସେ ଅଧୀର ହୋଇଥିଲେ ଏବଂ ବେଳକୁ ବେଳ ବିଦ୍ରୋହୀ ଭଳି ମତବ୍ୟକ୍ତ କରୁଥିଲେ ।

ଓଡ଼ିଶାର ଶିକ୍ଷିତ ସମାଜ ଏ ପ୍ରଚଳିତ ବ୍ୟବସ୍ଥାକୁ ଭାଙ୍ଗି ଏକ ନୂତନ ବ୍ୟବସ୍ଥାର ଆବାହନ କରିବାରେ ଯେପରି ଉଦାସୀନ ଥିଲେ, ତାହା ତାଙ୍କୁ ଅତି ଦୁଃଖ ଦେଉଥିଲା । ସମାଜର କୁସଂସ୍କାର ଭାଙ୍ଗିବାକୁ ସେମାନଙ୍କ ଭିତରେ ବିଦ୍ରୋହାଗ୍ନି ପ୍ରଜ୍ୱଳିତ କାହିଁକି ହେଉ ନ ଥିଲା, ତାହା ମଧ୍ୟ ତାଙ୍କୁ ଅଧୀର କରୁଥିଲା । ସେଥିପାଇଁ ଶିକ୍ଷିତ ତଥା ଭଦ୍ର ସମାଜ ଉପରେ ଅସନ୍ତୋଷ ସେ ବରାବର ପ୍ରକାଶ କରୁଥିଲେ । ମଧ୍ୟବିତ୍ତ ବର୍ଗଙ୍କ ସହିତ ଏହି ଶ୍ରେଣୀ ଯେ ଭାରତବର୍ଷରେ ଦରିଦ୍ର ଲୋକଙ୍କୁ ଲୁଣ୍ଠନ କରିବାରେ ବ୍ରତିଦାର ହୋଇଛନ୍ତି, ଏଥିରେ ସେ ବିବ୍ରତ ହେବା ସ୍ୱାଭାବିକ । ଏହା ହିଁ ଥିଲା ତାଙ୍କର ପ୍ରଚଳିତ ଶିକ୍ଷା ବ୍ୟବସ୍ଥା ବିରୁଦ୍ଧରେ ଗୁରୁତର ଅଭିଯୋଗ । ରାଜସ୍ୱ ମନ୍ତ୍ରୀ ପଦରୁ ଇସ୍ତଫା ଦେଇ ଯେତେବେଳେ ଅନୁଗୁଳ ଆଶ୍ରମକୁ ପ୍ରତ୍ୟାବର୍ତ୍ତନ କଲେ, ସେତେବେଳେ ସେ ମୌଳିକ ଶିକ୍ଷାର ସଙ୍ଗଠକ ପଦ ଗ୍ରହଣ କରିବାକୁ ପସନ୍ଦ କଲେ । ଏହା ପଛରେ ପ୍ରଚଳିତ ଶିକ୍ଷା ବ୍ୟବସ୍ଥାର ପରିବର୍ତ୍ତନ କରିବା ଏକମାତ୍ର ଉଦ୍ଦେଶ୍ୟ ଥିଲା । ସେଇଥିପାଇଁ ଶେଷ ଜୀବନ ପର୍ଯ୍ୟନ୍ତ ବାଜି ରାଉତ ଛାତ୍ରାବାସରେ ଏବଂ ବମ୍ପତମୁ ଶ୍ରୀ ହରି ବିଦ୍ୟାଳୟରେ ସ୍ୱେଚ୍ଛାକୃତ ଭାବରେ ପିଲାମାନଙ୍କୁ ପାଠ ପଢ଼ାଇବା ତାଙ୍କୁ ଅତ୍ୟଧିକ ଆନନ୍ଦ ଦେଉଥିଲା । ସେ କାମରେ ତାଙ୍କର ଉଦ୍ୟମ କ୍ଷୀଣ ହୋଇପାରେ, ଅବଦାନ ଗୌଣ ହୋଇପାରେ; କିନ୍ତୁ ଏହା ତାଙ୍କର ସେହି ବିଦ୍ରୋହୀ ମନୋଭାବର ସୂଚକ ।

ଓଡ଼ିଶାର ୫୦ ବର୍ଷର ଇତିହାସରେ ସ୍ୱର୍ଗତ ନବ ବାବୁଙ୍କର ପଦଚିହ୍ନ ମଣ୍ଡିତ ହୋଇ ରହିଛି । ଆଜି ସେ ନାହାନ୍ତି; କିନ୍ତୁ ଜନ-ଆନ୍ଦୋଳନ କ୍ଷେତ୍ରରେ ଏବଂ ଓଡ଼ିଶାର ଶାସନକ୍ଷେତ୍ରରେ ସେ ଯେଉଁକି ଉଲ୍ଲେଖନୀୟ କାର୍ଯ୍ୟ କରିଯାଇଛନ୍ତି, ତାହା ହିଁ ତାଙ୍କର ସ୍ମୃତି ବହନ କରି ଭବିଷ୍ୟତକୁ ନେବ । ସେହି ମହାନ୍ ପୁଣ୍ୟାତ୍ମା ପୁରୁଷଙ୍କର ଚରଣ ତଳେ ମୁଁ ମୋର ଭକ୍ତିପୂତ ପ୍ରଣତି ଜଣାଉଛି ।

---

# ନବ ବାବୁଙ୍କୁ ମୁଁ ଯେପରି ଜାଣିଛି

**ଡକ୍ଟର ବୈଦ୍ୟନାଥ ମିଶ୍ର**

ନବ ବାବୁଙ୍କ କଥା ମନେପଡ଼ିଲେ ମନ ଭିତରେ ଏକ ଆଲୋଡ଼ନ ସୃଷ୍ଟି ହୁଏ । ତାଙ୍କ ସହିତ ମୋର ଯେ ବେଶି ସମ୍ପର୍କ ଥିଲା, ତାହା ନୁହେଁ; କିନ୍ତୁ ଯେତିକି ସମ୍ପର୍କ ଥିଲା ସେଥିରେ ମୁଁ ତାଙ୍କ ପ୍ରତି ଖୁବ୍ ବେଶି ଆକୃଷ୍ଟ ହୋଇଯାଇଥିଲି । ଏ କଥା କହିଲେ ଅତ୍ୟୁକ୍ତି ହେବ ନାହିଁ ଯେ, ମୁଁ ତାଙ୍କୁ ଖୁବ ଭଲ ପାଉଥିଲି, ସମ୍ମାନ କରୁଥିଲି, ଭକ୍ତି ମଧ୍ୟ କରୁଥିଲି । ଏକଥା ମଧ୍ୟ ମୁଁ ଜାଣିଛି ଯେ, ସେ ମୋତେ ସ୍ନେହ କରୁଥିଲେ, ଶ୍ରଦ୍ଧା କରୁଥିଲେ । ରାଜନୀତିରେ ତାଙ୍କର ଆଦର୍ଶ ଥିଲା ସମାଜବାଦ । ଏହି ସମାଜବାଦକୁ ଭିତ୍ତି କରି ସେ ତାଙ୍କର ରାଜନୈତିକ ଜୀବନ ଆରମ୍ଭ କରିଥିଲେ । ପରେ ସେ ଅନେକ ବଦଳିଲେ । ତାଙ୍କ ଚିନ୍ତାଧାରା ସ୍ଥାଣୁ ନ ଥିଲା । ସେ ଜଣେ ସନ୍ଧାନୀ ଥିଲେ । ସମାଜର ପରିବର୍ତ୍ତନ ପାଇଁ ସେ ନୂତନ ପନ୍ଥା ଖୋଜି ବୁଲୁଥିଲେ । ମୁଁ କିନ୍ତୁ ଏହି ସମାଜବାଦ ଆଦର୍ଶରେ ତାଙ୍କ ଦ୍ୱାରା ଅନୁପ୍ରାଣିତ ହୋଇଥିଲି । ଏବେ ସମାଜବାଦରେ ଅନେକ ଦୋଷ ତ୍ରୁଟି ପରିଲକ୍ଷିତ ହୋଇଛି । ସମାଜବାଦ ଅନେକ କ୍ଷେତ୍ରରେ ରାଷ୍ଟ୍ରୀୟ ପୁଞ୍ଜିବାଦରେ ପର୍ଯ୍ୟବସିତ ହୋଇଛି । ସମାଜବାଦର ଅର୍ଥନୈତିକ ନିୟନ୍ତ୍ରଣ (Economic Control) ରାଜନୀତି ଓ ଅର୍ଥନୀତି କ୍ଷେତ୍ରରେ ଲାଞ୍ଚମିଛ ଭର୍ତ୍ତି କରିଛି । ସମାଜବାଦର ନୈତିକ ମୂଲ୍ୟବୋଧ ଅର୍ଥନୈତିକ ନିୟନ୍ତ୍ରଣ ଯୋଗୁଁ ନଷ୍ଟବିନଷ୍ଟ ହୋଇଛି । ତଥାପି କାହିଁକି କେଜାଣି ସମାଜବାଦକୁ ଏ ପର୍ଯ୍ୟନ୍ତ ମୁଁ ଛାଡ଼ିପାରିନାହିଁ । ବୋଧହୁଏ ନବ ବାବୁ ଏଥିପାଇଁ ଦାୟୀ । ଛାତ୍ରାବସ୍ଥାରେ ଯେଉଁ ଆଦର୍ଶ ସେ ମୁଣ୍ଡ ଭିତରେ ଭର୍ତ୍ତି କରିଥିଲେ, ତାହା ଏ ପର୍ଯ୍ୟନ୍ତ ରହିଛି । ମନେ ହେଉଛି, ସମାଜବାଦକୁ ଆମେ ଠିକ୍ ଭାବରେ ପ୍ରୟୋଗ କଲେ, ବୋଧହୁଏ ସାମାଜିକ ଅବସ୍ଥା ବଦଳିପାରିବ । ସେ ତ ସ୍ୱତନ୍ତ୍ର କଥା, ତେବେ ନବ ବାବୁଙ୍କ ସହିତ ମୋର ସମ୍ପର୍କ ହେଉଛି ଏଇ ସମାଜବାଦରୁ । ସେ ସମାଜବାଦର ପୂଜାରୀ ଥିଲେ, ମୁଁ ଥିଲି ଜଣେ ଗ୍ରାହକ ।

ନବ ବାବୁଙ୍କ ସହିତ ମୋର ଅନ୍ୟ ଏକ ସମ୍ପର୍କ ହେଉଛି ତାଙ୍କର ପାଣ୍ଡିତ୍ୟ । ତାଙ୍କର ରାଜନୀତି ଓ ସମାଜନୀତିରେ ଅଗାଧ ଜ୍ଞାନ ଥିଲା । ରାଜନୀତିରେ ଖୁବ୍ କମ୍ ଲୋକ ଅଛନ୍ତି, ଯେଉଁମାନେ କି ନବ ବାବୁଙ୍କ ସହିତ ଏ ବିଷୟରେ ପ୍ରତିଯୋଗିତା କରିପାରିବେ । ସେ ଅନେକ ନୂତନ ପ୍ରକାଶିତ ବହି ପଢ଼ନ୍ତି ଏବଂ ଅନ୍ୟମାନେ କିପରି ପଢ଼ିବେ, ତାହା ବି ଦେଖନ୍ତି । ଗୋଟିଏ ସେମିନାରରେ ଥରେ ସେ John Strachy ଙ୍କର Contemporary Capitalism ପୁସ୍ତକ ପଢ଼ିବାକୁ ସମସ୍ତଙ୍କୁ ଅନୁରୋଧ କରିଥିଲେ ଏବଂ ବହିଦୋକାନକୁ ଯାଇ କିଏ ସେ ବହି କିଣିଛନ୍ତି ବୋଲି ତଥ୍ୟ ସଂଗ୍ରହ କରିଥିଲେ । ସେଠୁ ବୁଝି ମୋ ପାଖକୁ ଆସି ସେ ବହି ବିଷୟରେ ଆଲୋଚନା କରିଥିଲେ ଏବଂ ସେଥିରେ ଉଲ୍ଲେଖ ଥିବା ଏକ ଟେକ୍ନିକାଲ ବହି ମାଗିନେଇ ପଢ଼ିଥିଲେ ।

ଅନ୍ୟ ଏକ ଦିନ କଥା କହୁଛି । କଟକର ରାମଚନ୍ଦ୍ର ଭବନରେ ଗୋଟିଏ ସେମିନାର ହେଉଥିଲା । ନବ ବାବୁ ଚେୟାରମ୍ୟାନ ଥିଲେ । ମୁଁ ଏକ ବକ୍ତା ହିସାବରେ ଆଧୁନିକ ଅର୍ଥଶାସ୍ତ୍ରୀମାନଙ୍କ ଚିନ୍ତା ବିଷୟରେ କେତେକ ତଥ୍ୟ ପ୍ରଦାନ କରି କେତେଗୁଡ଼ିଏ ନୂତନ ପୁସ୍ତକର ଉଦାହରଣ ଦେଲି । ଏ ପୁସ୍ତକ ସବୁ ଅଧ୍ୟୟନ କରିବାରେ ମୋର କିଛି ବିଶେଷତ୍ୱ ନ ଥିଲା । ଏ ହେଉଛି ମୋ ଅଧ୍ୟାପନାର ବିଷୟବସ୍ତୁ; କିନ୍ତୁ ମୁଁ ଦେଖି ଆଶ୍ଚର୍ଯ୍ୟ ହେଲି ଯେ ନବ ବାବୁଙ୍କ ବ୍ୟାଗରେ ଏ ସମସ୍ତ ପୁସ୍ତକ ଥିଲା ଏବଂ ସେସବୁ ଅଧ୍ୟୟନ କରିଥିଲେ । ନବ ବାବୁଙ୍କ ଆଲୋଚନା ଓ ସମୀକ୍ଷା ଅତ୍ୟନ୍ତ ପାଣ୍ଡିତ୍ୟପୂର୍ଣ୍ଣ ଥିଲା । ଜଣେ ଅଧ୍ୟାପକ ହିସାବରେ ତାଙ୍କ ପାଣ୍ଡିତ୍ୟରେ ମୁଁ ଅଭିଭୂତ ହୋଇଥିଲି ।

ନବ ବାବୁ ଓଡ଼ିଶାର ରାଜନୀତିରେ ଶୀର୍ଷସ୍ଥାନ ଅଧିକାର କରିଥିଲେ । ୭।୭ ବର୍ଷ ପର୍ଯ୍ୟନ୍ତ ମୁଖ୍ୟମନ୍ତ୍ରୀ ଥିଲେ । ଭାରତର ପ୍ରଧାନମନ୍ତ୍ରୀ ଶ୍ରୀ ଜବାହରଲାଲଙ୍କର ଅତି ପ୍ରିୟ ଥିଲେ । ଶ୍ରୀ ଜବାହରଲାଲ ନେହେରୁ ତାଙ୍କ ପାଖକୁ ଅନେକ ବ୍ୟକ୍ତିଗତ ଓ ଆଦର୍ଶଗତ ଚିଠି ଲେଖିଛନ୍ତି । ଏତେ କ୍ଷମତା ଓ ସମ୍ମାନର ଅଧିକାରୀ ହୋଇ ମଧ୍ୟ ତାଙ୍କର ମୁଣ୍ଡ ବିଗିଡ଼ିଯାଇ ନ ଥିଲା । କ୍ଷମତା ତାଙ୍କୁ ଅନ୍ଧ କରି ନ ଥିଲା । କ୍ଷମତାରୁ ଗଲା ପରେ କ୍ଷମତା ପାଇଁ ସେ ଝୁରିହୋଇ ନ ଥିଲେ । କ୍ଷମତାରୁ ଗଲା ପରେ ସେ ଯେପରି ସରଳ ଜୀବନ ଯାପନ କରିଥିଲେ, ତାହା ଦେଖିଲେ ଯେକୌଣସି ଲୋକ ଆଶ୍ଚର୍ଯ୍ୟ ହେବ । ଭୂତପୂର୍ବ ମନ୍ତ୍ରୀତ୍ୱ ତାଙ୍କ ପଛରେ ଯେପରି ନ ଗୋଡ଼ାଉ, ସେଥିପାଇଁ ସେ ସବୁବେଳେ ସତର୍କ ଥିଲେ । ଥରେ ଦୁଇଥର ଷ୍ଟେସନ ପାଖରୁ ଚାଲି ଚାଲି ଆମ ଘରକୁ ଆସିଛନ୍ତି । ରାଜନୀତି ଓ ଅର୍ଥନୀତି ଆଲୋଚନା କରିବା ପାଇଁ ରାସ୍ତା ଉପରେ ୪୦।୪୫ ହାତ ଦୂରରୁ ଦେଖିଲେ କଥାବାର୍ତ୍ତା କରିବା ପାଇଁ ଠିଆହୋଇ ରହନ୍ତି । ତାଙ୍କ ବ୍ୟକ୍ତିତ୍ୱରେ ଛଳନା ନ ଥିଲା । ସ୍ନେହରେ ଆବିଳତା ନ ଥିଲା, ସେ ଏକ ଆଦର୍ଶ ନେଇ ରାଜନୀତିରେ ପ୍ରବେଶ କରିଥିଲେ; କିନ୍ତୁ ରାଜନୀତି ପାଇଁ ସେ ଯୋଗ୍ୟ ନ ଥିଲେ ।

ଦୁଃସ୍ଥ ଲୋକଙ୍କ ପାଇଁ ତାଙ୍କର କିପରି ସମବେଦନା ଥିଲା, ତା'ର ଗୋଟିଏ ଉଦାହରଣ ଦେଉଛୁ । ବୋଧହୁଏ ୧୯୪୯ ହେବ, ସେତେବେଳକୁ ସେ ସ୍ୱାଧୀନତାର ଅସ୍ଥାୟୀ ମନ୍ତ୍ରିମଣ୍ଡଳରୁ ଇସ୍ତଫା ଦେଇଛନ୍ତି । ଆମେ ଦୁଇଜଣ ଗୋଟିଏ ଇଣ୍ଟରକ୍ଲାସରେ ବସି ତାଲଚେର ଗାଡ଼ିରେ ଯାଉଥାଉ । ସେହି କମ୍ପାର୍ଟମେଣ୍ଟରେ ଗୋଟିଏ ବର୍ଥ ତଳେ ଗୋଟିଏ କୁଷ୍ଠରୋଗୀ ଶୋଇଥାଏ । ଗୋଟିଏ ଷ୍ଟେସନରେ ଗାଡ଼ି ରହିଲା । ଷ୍ଟେସନ ନାମ ମନେନାହିଁ । କୁଷ୍ଠରୋଗୀଟି ଉଠି ଷ୍ଟେସନ ନାମ ପଚାରିଲା, ତାକୁ ଦେଖି ମୁଁ ନାକ ଟେକିଲି । ସେ ସେଇ ଷ୍ଟେସନରେ ଓହ୍ଲାଇବାର କଥା, ନବ ବାବୁ ତା'ର ହାତ ଧରି ତାକୁ ପ୍ଲାଟଫର୍ମକୁ ଓହ୍ଲାଇଦେଲେ ଏବଂ ତାକୁ କିଛି ପଇସା ମଧ୍ୟ ଦେଲେ । ଏଇ ହେଉଛନ୍ତି ନବ ବାବୁ, ଯାହାଙ୍କର କ ଜନସାଧାରଣଙ୍କ ପ୍ରତି ଶ୍ରଦ୍ଧା ଥିଲା, ସ୍ନେହ ଥିଲା ଏବଂ ସେମାନଙ୍କର କିଛି ଉପକାର କରିବା ପାଇଁ ସେ ରାଜନୀତିରେ ପ୍ରବେଶ କରିଥିଲେ । ଜମିଦାରୀ ଉଚ୍ଛେଦ ପାଇଁ ସେ ଯେଉଁ ରିପୋର୍ଟ ପ୍ରସ୍ତୁତ କରିଥିଲେ ଏବଂ ଯାହାକୁ କାର୍ଯ୍ୟକାରୀ କରିବା ପାଇଁ ସେ ପ୍ରାଣପଣେ ଉଦ୍ୟମ କରିଥିଲେ, ତାହା ତାଙ୍କ ସମାଜବାଦର ନମୁନା ହୋଇ ଚିରଦିନ ରହିବ ।

---

# ସ୍ମୃତିପଥେ ନବକୃଷ୍ଣ ଚଉଧୁରୀ

**ରାଧାମୋହନ ଗଡ଼ନାୟକ**

ଏଇ ୧୯୮୪ ର ଜୁନ୍ ୨୪ ତାରିଖ...

ଭୁବନେଶ୍ୱରରୁ ମୁଁ ଅନୁଗୁଳ ଯାଇଥିଲି, ମୋ ଟାଉନ-ଘରେ ବାଡ଼ାବନ୍ଦୀ କାର୍ଯ୍ୟ ହେଉଥିଲା। ମୁଁ ସେଇଠି ବସିଥିଲି ମୋର ପୁଅ ପାପୁ ସାଙ୍ଗରେ। ହଠାତ୍ ପ୍ରଭାତ ଆସି ସଂବାଦ ଦେଲା—

"ମୁଖ୍ୟମନ୍ତ୍ରୀ ଆସିଛନ୍ତି, ସରକଟ୍ ହାଉସ୍‌ରେ ଅଛନ୍ତି।"

ମୁଁ ଆଉ ପାପୁ ସାଙ୍ଗେ ସାଙ୍ଗେ ବାହାରିଲୁ। ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ସହିତ ଦେଖା ହେଲା। ଦେଖି ଦେଖି ସେ ମୋତେ ପଚାରିଲେ—"ଆପଣ କେବେ ଆସିଛନ୍ତି ?"

"ଆଜି", ମୁଁ କହିଲି।

"ନବକୃଷ୍ଣ ଚଉଧୁରୀଙ୍କୁ ଦେଖିଲେଣି ?"

"ନାହିଁ।"

"ସେ ପରା ରୋଗଶଯ୍ୟାରେ, ଅଚେତନ ହୋଇପଡ଼ିଛନ୍ତି।"

ମୁଁ କହିଲି—"ମୁଁ ଜାଣିନ, ଏଇନେ ଯିବି।"

ସେ କହିଲେ—"ଆପଣ ଜଲ୍‌ଦି ଯାଆନ୍ତୁ। ମୁଁ ତାଙ୍କୁ ଦେଖିବାକୁ ଆସିଥିଲି, ଦେଖି ଆସିଲିଣି, ବର୍ତ୍ତମାନ ଭୁବନେଶ୍ୱର ଫେରୁଚି।"

ସେଇଠି ରାଷ୍ଟ୍ରମନ୍ତ୍ରୀ ଭଜମନ ବେହେରା ଥିଲେ। ମୁଁ ତାଙ୍କୁ ପଚାରିଲି—"ତୁମ ଗାଡ଼ି କାହିଁ ? ଟିକଏ ଆଶ୍ରମକୁ ଯିବା, ନବ ବାବୁଙ୍କୁ ଦେଖିଆସିବା।"

ସେ, ମୁଁ ଆଉ ପାପୁ ଗଲୁଁ। ଦେଖିଲି ନବ ବାବୁ ଶଯ୍ୟାଗତ, ନିଶ୍ଚେଷ୍ଟ ହୋଇ ପଡ଼ିଛନ୍ତି, ଚେତା ନାହିଁ।

ଡାକ୍ତରମାନେ ଅପେକ୍ଷା କରି ବସିଛନ୍ତି—ଅକ୍ସିଜେନ୍ ଚାଲିଚି।

ସମ୍ମାନର ସହିତ ଶ୍ରୀ ଚଉଧୁରୀଙ୍କୁ ଲକ୍ଷ୍ୟ କଲି, ତାଙ୍କର ଚିର ପରିଚିତ ମୁଖ ବିରୂପ ଦିଶୁଚି, ଚକ୍ଷୁ ନିମୀଳିତ।

ମାଳତୀ ଦେବୀଙ୍କୁ ଦେଖିବାକୁ ମୁଁ ଚଞ୍ଚଳ ହୋଇଉଠିଲି। ଦେଖିଲି, ବାରନ୍ଦାରେ ଗୋଟାଏ ତକ୍ତପୋଷ ଉପରେ କାନ୍ଥକୁ ଆଉଜି ବସିଛନ୍ତି—ମନରେ ଯେଉଁ ଝଡ଼ ତାକୁ କୃପି ପାରୁନାହାନ୍ତି। ମୁଁ ତାଙ୍କ ପାଖରେ ଗୋଟାଏ ଚଉକିରେ ବସିପଡ଼ିଲି, ମୋର ମୁଖ ଛୁଡ଼ା ହୋଇଥାଏ। ମାଳତୀ ଦେବୀଙ୍କୁ ମୁଁ କହିଲି—"ଇମିତି ଅଧୈର୍ଯ୍ୟ ହେଲେ ଚଳିବ ?"

ସେ କହିଲେ—"ସେ ଆଉ କଅଣ ହେବ ?"

ଆଶ୍ୱାସନା ଦେଇ କହିଲି—"ସବୁ ଭଲ ହୋଇଯିବ ।"

ସେ ବସିଥାନ୍ତି, ତାଙ୍କ ଝିଅ ଉତ୍ତରା, କୃଷ୍ଣା, ଝିଆରୀ ଅନ୍ନପୂର୍ଣ୍ଣା ମହାରଣା—ଅଦୂରରେ ନାରାୟଣ ଦେଖାଇ ।

ସେଠୁ ଉଠିଗଲି ଆର ପାଖକୁ, ଦେଖିଲି 'ସମାଜ' ସମ୍ପାଦକ ଶ୍ରୀଯୁକ୍ତ ରାଧାନାଥ ରଥ, ସେ ମୋତେ ତାଙ୍କ ପାଖରେ ବସିବାକୁ କହିଲେ । ବସିଲି, କଥାବାର୍ତ୍ତା ହେଲ ।

କଥାବାର୍ତ୍ତାରୁ ଜାଣି ପାରିଲି ଭଲ ହେବାର ଆଶା ଅତି କ୍ଷୀଣ । ୧୨ଟା ବେଳକୁ ଭଲ ହେବାର କିଛିଏ ସୂଚନା ମିଳିଲା, ମାତ୍ର ରାତି ଘ ୨ । ୪୫ ମିନିଟ୍‌ରେ ସବୁ ସରିଗଲା । ଶ୍ରୀ ଚଉଧୁରୀ ଚିରଦିନ ପାଇଁ ଆଖିବୁଜିଦେଇ ନିଦ୍ରା ଗଲେ । ତାହା ମହାନିଦ୍ରା ହୋଇଗଲା ।

ଖବରରୁ ଦୁଃସମ୍ବାଦ ପ୍ରଚାରିତ ହୋଇଗଲା । ଅନୁଗୁଳର ଭିନ୍ନ ଭିନ୍ନ ଜାଗାରୁ ଦଳ ଦଳ ହୋଇ ଲୋକ ଆଶ୍ରମରେ ଆସି ପହଞ୍ଚିଗଲେ । ଶୋକର ସମୁଦ୍ର ଉଚ୍ଛୁଳି ଉଠିଲା ।

ଶୋକ-ସନ୍ତପ୍ତ ହୃଦୟରେ ମୁଁ ଓ ମୋର ସ୍ତ୍ରୀ ମାଳତୀ ଦେବୀଙ୍କୁ ସଂଖୋଳିବାକୁ ଗଲୁଁ । ସେ ଯୋଉ ଆଶଙ୍କା କରୁଥିଲେ, ପରିଣାମରେ ତା'ଇ ହେଲା । ମାଳତୀ ଦେବୀଙ୍କର ଅବସ୍ଥା ବଡ଼ ସାଂଘାତିକ । ଆଖିରେ ଅଶ୍ରୁ ନାହିଁ । ସତେ ଯେମିତି ତା'ର ଉତ୍ସ ଏକାବେଳକେ ଶୁଷ୍କ ହୋଇଯାଇଚି । ମୁଁ ପାଖରେ ବସିଗଲି । କି ଆଶ୍ୱାସନା ଦେବି ? ମୋର ସ୍ତ୍ରୀ ତାଙ୍କୁ ଆଉଁସୁଥାନ୍ତି, କଅଣ କହୁଥାନ୍ତି ।

'ମୁଁ କହିଲି—ଆପଣ ଧୈର୍ଯ୍ୟ ଧରନ୍ତୁ ଟିକିଏ !"

ସେ କହୁଥାନ୍ତି—"ଆଉ କଅଣ, ଆଉ……"

ବିଦାୟ ନେଇ ଘରକୁ ଫେରିଲୁଁ ।

ଅପରାହ୍ଣ…

ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ପଟ୍ଟନାୟକ ସ୍ୱର୍ଗତ ଚଉଧୁରୀଙ୍କ ପାଇଁ ରାଷ୍ଟ୍ରୀୟ ମର୍ଯ୍ୟାଦା ବ୍ୟବସ୍ଥା କରିଛନ୍ତି । ନିଜେ ପୁଣି ତାଙ୍କ ଆଶ୍ରମରେ ଉପସ୍ଥିତ ହୋଇଛନ୍ତି । ଶବାଧାରରେ ସମସ୍ତେ ପୁଷ୍ପାଞ୍ଜଳି ଦେଲେ, ମୁଁ ମଧ୍ୟ ଦେଲି ।

ଶବ ସହ ପଟୁଆର ଚାଲିଲା ସୋମନାଥପୁର ଶ୍ମଶାନକୁ । ତାଙ୍କ ପାଖରେ ବସିଲେ ତାଙ୍କର ଆତ୍ମୀୟବର୍ଗ ।

ଚିତା ପ୍ରଜ୍ୱଳିତ ହେଲା—ନଶ୍ୱର ଶରୀର ଭସ୍ମୀଭୂତ ହୋଇଗଲା । ମାତ୍ର ଅବିନଶ୍ୱର ଆତ୍ମା ଉଜ୍ଜ୍ୱଳତର ହେଲା, ସମସ୍ତେ ଯେଝା ଘରକୁ ଫେରିଲେ । ମୁଁ ବି ଫେରିଲି । ହୃଦୟରେ ଗଭୀର ଶୋକର ଉଚ୍ଛ୍ୱାସ ।

୨୭ ତାରିଖ ସକାଳେ ।

ମୁଁ ଆଉ ମୋର ସ୍ତ୍ରୀ ଚକୋରୀ ଦେବୀ ପୁଣି ଗଲୁଁ ଆଶ୍ରମକୁ । ମାଳତୀ ଦେବୀଙ୍କୁ ସଂଖୋଳିଲୁ । ଶୁଦ୍ଧି ହେବ ନାହିଁ, ପ୍ରାର୍ଥନା ସଭା ହେବ ଜାଣି ମୋର ସ୍ତ୍ରୀ ମାଳତୀ ଦେବୀଙ୍କ ହାତରେ ତିନିଶହ ଟଙ୍କା ଦେଲେ, ପ୍ରାର୍ଥନା ସଭାରେ ମିଠା ଖୁଆଇବାକୁ । ପ୍ରଥମେ ସେ ନେବାକୁ ରାଜି ହେଉ ନ ଥିଲେ । ଶ୍ରୀଯୁକ୍ତ ସୁରେନ୍ଦ୍ରନାଥ ଦ୍ୱିବେଦୀ ସେତେବେଳେ ସେଇଠି ଥିଲେ, କହିଲେ—"ସେ ଯୋଉଥିପାଇଁ ଦେଉଛନ୍ତି, ତହିଁରେ ଆପଣଙ୍କର ମନା କରିବାର ନାହିଁ ।"

ତେଣୁ ମାଳତୀ ଦେବୀ ତାହା ଗ୍ରହଣ କଲେ ।

ବିଦାୟ ମାଗି ଆମେ ବାହାରିଲୁ ଭୁବନେଶ୍ୱର ·····

ମନସ୍ୱିନୀ ରମା ଦେବୀ ଓ ଶ୍ରୀଯୁକ୍ତ ସୁରେନ୍ଦ୍ରନାଥ ଦ୍ୱିବେଦୀ ଆମ ଗାଡ଼ିରେ ଯିବେ ବୋଲି କାଲିଠାରୁ ସ୍ଥିର ହୋଇଥିଲା, ମାତ୍ର ରମା ଦେବୀ ଅନ୍ୟ କାହା ଗାଡ଼ିରେ ଚାଲିଗଲେ । ତେଣୁ ଶ୍ରୀଯୁକ୍ତ ଦ୍ୱିବେଦୀଙ୍କ ସହିତ ଆମେ ବାହାରି ପଡ଼ିଲୁ ।

ବାଟରେ ସେ ନବ ବାବୁଙ୍କ ଉପରେ ନାନା କଥା କହୁଥିଲେ । ତାହା ମୋର ହୃଦୟରେ ଆଶ୍ୱାସନାର ପ୍ରଲେପ ବୋଲି ମୁଁ ମନେକରୁଥିଲି ।

ଯାହାଙ୍କର ବଦାନ୍ୟ ପକ୍ଷ ଏତିକି ମର୍ଯ୍ୟାଦାବନ୍ତ, ଗାଣମାପ୍ୟର୍ଥି ଅନ୍ୟ ପକ୍ଷରେ ଅଶ୍ରୁସଜଳ ହେଲା, ସେ ଆମର ପ୍ରିୟ ନେତା ନବକୃଷ୍ଣ ଚଉଧୁରୀ । ନେତା ତ ବ୍ୟକ୍ତି । ସେ ବ୍ୟକ୍ତି ନ ଥିଲେ, ଥିଲେ ଆମ ଦେଶର ଏକ ଅନୁଷ୍ଠାନ ।

ନବକୃଷ୍ଣ ଚଉଧୁରୀ ଥିଲେ ଆମ ଓଡ଼ିଶାର ରାଜସ୍ୱ ମନ୍ତ୍ରୀ । ପୁନଃଶୋଚନରେ ତାହା ସେ ତ୍ୟାଗ କରିଥିଲେ । ପୁଣି ମୁଖ୍ୟମନ୍ତ୍ରୀ ହେଲେ ୧୯୫୦ ରୁ ୧୯୫୭ । ସେ ପଦରୁ ମଧ୍ୟ ସେ ଇସ୍ତଫା ଦେଇଥିଲେ ।

ପରେ ସେ ଭୂଦାନ ଓ ସର୍ବୋଦୟ ଅନୁଷ୍ଠାନରେ ଯୋଗ ଦେଇଥିଲେ । ନୀରବ ସେବାକୁ ସେ ଜୀବନରେ ବାଛି ନେଇଥିଲେ । ୧୯୫୯ ରୁ ୧୯୬୩ ରେ ସର୍ବସେବା ସଂଘର ସଭାପତି ହୋଇଥିଲେ । ଜନନାୟକ ଜୟପ୍ରକାଶଙ୍କର ଘନିଷ୍ଠ ସହଯୋଗୀ ଥିଲେ ଓ ଆଚାର୍ଯ୍ୟ ବିନୋବାଙ୍କ ନିକଟରେ ନିଜକୁ ଉତ୍ସର୍ଗ କରିଥିଲେ ।

କଂଗ୍ରେସ ତ୍ୟାଗ କରିବାରେ ପ୍ରଧାନମନ୍ତ୍ରୀ ଜବାହରଲାଲ୍ ନେହେରୁ ତାଙ୍କୁ ଅନେକ ପତ୍ର ଲେଖିଥିଲେ, କଂଗ୍ରେସକୁ ପୁଣି ଫେରିବାକୁ; ମାତ୍ର ଚଉଧୁରୀ କ୍ଷମତା ପଛରେ ଯିବାକୁ ରାଜି ହେଲେ ନାହିଁ ।

ଦଳିତ ଆଦିବାସୀ ଓ ହରିଜନ ଗୃହମାନଙ୍କ ନିମନ୍ତେ ଶ୍ରୀ ଚଉଧୁରୀ ଅନୁଗୁଳରେ 'ବାଜିରାଉତ' ଛାତ୍ରାବାସ ପ୍ରତିଷ୍ଠା କରିଥିଲେ । ସେଇ ଆଶ୍ରମରେ ଶେଷ ପର୍ଯ୍ୟନ୍ତ ଅତିବାହିତ କରିଥିଲେ । ବାଜିରାଉତ ଛାତ୍ରାବାସରେ ଶ୍ରୀ ନବକୃଷ୍ଣ ଚଉଧୁରୀ 'ବାପି' ଓ ଶ୍ରୀମତୀ ମାଳତୀ ଚଉଧୁରୀ 'ନୁମା' ।

ଦେଶର ସ୍ୱାଧୀନତା ସଂଗ୍ରାମରେ ଶ୍ରୀ ଚଉଧୁରୀଙ୍କ ସାହଚର୍ଯ୍ୟ ଲାଭ କରିବାର ସୁଯୋଗ ମୋତେ ମିଳିଥିଲା । ତାଙ୍କ ସହିତ ସାଇକେଲରେ ଆମେ ଅନୁଗୁଳର ବହୁ ସ୍ଥାନକୁ ଯାଇ କଂଗ୍ରେସ କାର୍ଯ୍ୟ କରୁଥିଲୁଁ ।

୧୯୪୬ ର ଦିନକର କଥା ।

ବାଗଡ଼ିଆରେ ସଭା—ନବକୃଷ୍ଣ ଚଉଧୁରୀ, ତ୍ରିଲୋଚନ ମିଶ୍ର, ହୃଷୀକେଶ ତ୍ରିପାଠୀ, ଆନନ୍ଦ ପ୍ରଧାନ ଓ ମୁଁ । ସଭାରେ ସମସ୍ତେ ଭାଷଣ ଦେଲେ । ଆମର ଭାଷଣରେ ଲୋକମାନେ ବେଶ୍ ଉତ୍ସୁକ ଓ ଉଦ୍‌ବୁଦ୍ଧ ହୋଇଥିଲେ ।

ଆନନ୍ଦ ପ୍ରଧାନଙ୍କ ଘରେ ଖାଇ କିଛି କେତେଠି ବିଶ୍ରାମ ନେଲେ । ନବକୃଷ୍ଣ ଚଉଧୁରୀ, ତ୍ରିଲୋଚନ ମିଶ୍ର ଓ ମୁଁ ଶୋଇଲୁଁ ଆନନ୍ଦ ପ୍ରଧାନଙ୍କ ଢିଙ୍କିଶାଳରେ । ଆଲାପ ଆଲୋଚନାରେ ନିଦ ହୋଇଗଲା ।

ରାତରୁ ଉଠି ତିଆର ହୋଇଗଲୁ, ଗୋଟାଏ ଟ୍ରକରେ ଯାଇ ପହଞ୍ଚିଲୁ ଓଗି ଓ ପଦ୍ମ ଗ୍ରାମରେ । ସେଠି ସଭା ହେଲା । ତହିଁରେ ଆସି ଯୋଗ ଦେଲେ ଶାରଙ୍ଗଧର ଦାସ, ମାଳତୀ ଦେବୀ, ବାଙ୍କବିହାରୀ ଦାସ ଓ କଣ୍ଠୁରି ମଲିକ । ସଭା ବେଶ୍ ସମାରୋହରେ ହେଲା ।

ରାତିରେ ଧର୍ମଶାଳାର ହରିଜନମାନେ ଆମକୁ ନିମନ୍ତ୍ରଣ କଲେ ଖାଇବା ପାଇଁ । ନବକୃଷ୍ଣ ଚଉଧୁରୀ, ବାଙ୍କବିହାରୀ ଦାସ ଓ କଣ୍ଠୁରି ମଲିକ ଗଲେ । ଫେରି ଆସି ନବ ବାବୁ ମୋତେ କହିଲେ, ଆପଣମାନେ ଗଲେ ନାହିଁ, ଭୁଆଡ଼େ ଖସିଗଲେ, ଖାଇବା ବେଶ୍ ଭଲ ହୋଇଥିଲା, ମୁଗଡ଼ାଲିରେ ବାଇଗଣ ପଡ଼ି ରନ୍ଧା ହୋଇଥିଲା, ଘର ଦୁଆର ବେଶ୍ ସଫା ସୁତରା । ଆପଣମାନେ ଛାଡ଼ିଲେ ।

ମୁଁ କହିଲି, "ଶାରଙ୍ଗ ବାବୁ ଗଲେ ନାହିଁ, ମାଳତୀ ଦେବୀ ଗଲେ ନାହିଁ, ଆମେ ତାଙ୍କ ସାଙ୍ଗରେ ରହିଗଲୁ ।"

"କବର ମନ ଭୁଲାଇଲ ଆପଣ ? ରବୀନ୍ଦ୍ରନାଥ ପରା କହନ୍ତି—

"କତ ଅଜାନାରେ ଜାନାଇଲେ ତୁମି
କତ ଦେଶେ ଦିଲେ ଠାଇଁ,
ଦୂରକେ କରିଲେ ନିକଟ, ବନ୍ଧୁ,
ପରକେ କରିଲେ ଭାଇ ।"

ମୁଁ କହିଲି—"କା'ର ସାଙ୍ଗେ କାର ତୁଳନା ।"

ରାତାରାତି ଫେରିଲୁ ଅନୁଗୁଳ ।

ସେଦିନ ଗଡ଼ସନ୍ତ୍ରୀରେ କାର୍ତ୍ତିକ ପୂର୍ଣ୍ଣିମା ଯାତ । ସେଠି ଚାରିଶ ପଚାଶ ହଜାର ଲୋକ ସମବେତ ହୁଅନ୍ତି, ତେଣୁ ସେଇଠି ସଭା କରିବା ଉଚିତ । ନବ ବାବୁଙ୍କୁ ମୁଁ କହିଲି, ଆପଣ ଯିବେ, ମାଳତୀ ଦେବୀ ଯିବେ । ଉଭୟେ ଯିବା ଉଚିତ ।

ସାଙ୍ଗେ ସାଙ୍ଗେ ନବବାବୁ କହିଲେ—"ଟିକାରେ ଅଟକି ନାହିଁ । ମାତ୍ର ମାଳତୀ ଦେବୀଙ୍କ ସାଇକେଲଟି (Lady Cycle) ମୁଁ ନେବି । ସେ ଯିବେ କିମିତି ?"

ମୁଁ କହିଲି—"ବଳଦ ଗାଡ଼ିରେ ଯିବେ ।"

"ବଳଦ ଗାଡ଼ିରେ ଗଲେ ଟଙ୍କା ଦେବ କିଏ ?"

"ମୁଁ ଦେବି ।"

ସାଙ୍ଗେ ସାଙ୍ଗେ ଦେଇଦେଲି ।

ଯାତ ଜାଗାରେ ନବ ବାବୁ, ହୃଷୀକେଶ ଓ ମୁଁ ଅପେକ୍ଷା କରିଛୁ ମାଳତୀ ଦେବୀଙ୍କୁ, ବଳଦ ଗାଡ଼ି ପହଞ୍ଚିଗଲା— ଓହ୍ଲାଇଲେ ଶାରଙ୍ଗ ବାବୁ ଓ କିରଣ ।

ମୁଁ ପଚାରିଲି— "ମାଳତୀ ଦେବୀ ଗଲେ କୁଆଡ଼େ ?" ଶାରଙ୍ଗ ବାବୁ କହିଲେ—"ସେ ବସ୍‌ରେ ଆସୁଛନ୍ତି । ମୁଁ କିରଣକୁ ନେଇ ବଳଦ ଗାଡ଼ିରେ ଚାଲିଆସିଲି । ମାଳତୀ ଦେବୀ ଆସୁଛନ୍ତି ବସ୍‌ରେ । ନୂଆହାତାଠାରୁ ଚାଲି ଆସିବେ ।"

ଯାହା କହିବାକୁ ଚାହୁଁଥିଲି, କହିପାରିଲି ନାହିଁ ।

ମାଳତୀ ଦେବୀ ପହଞ୍ଚିଗଲେ ଅଧଘଣ୍ଟା ଭିତରେ । ସଭା ହେଲା । ଅନୁଗୁଳର ଏସ୍.ଡ଼ି.ଓ. ସେଠି ଉପସ୍ଥିତ ଥିଲେ । ସଭାର ଲକ୍ଷ୍ୟ ଆମର ସଫଳ ହୋଇଥିଲା । ସମସ୍ତେ ଅନୁଗୁଳ ଫେରିଗଲେ ।

ନବବାବୁ ଏବଂ ହୃଷୀକେଶ ଓ ମୁଁ ।

ନବ ବାବୁ କହିଲେ— "ଚାଲନ୍ତୁ ଅପର୍ଣ୍ଣଙ୍କ ଗାଁକୁ ଯିବା । କାଲି ସେଇଠି ଚୁଡ଼ାଖାଇ କରି ଅନୁଗୁଳ ଫେରିବା ।" ମୁଁ କହିଲି—"ସ୍ୱାଗତମ୍" ।

ତିନିହେଁଯାକ ସାଇକେଲ ଚଳେଇଲୁ । ଆମ ଗାଁର ଦୁଇ ପାଖରେ ନଦୀ, ଏ ପାଖ ନଦୀଠାରେ ପହଞ୍ଚି ସାଇକେଲ ଖାଲରେ ଠେଲିବାକୁ ହେବ । ଆର ପାଖରେ ଅମର ଘର । ମୁଁ ସେଇଠି ସାଇକେଲ ପକାଇଦେଲି । ନବ ବାବୁ କହିଲେ—"ଇଏ କଅଣ ।"

"ଆମର ହଳିଆ ଆସି ନେଇଯିବ ।"

"ତାହା ହେଲେ ଆପଣ ବେଶ୍ ଦେଶ ସେବା କରିବେ, ଏତିକ ପାରିବେ ନାହିଁ ? ମୋ ସାଇକେଲରେ ମୋର ବେଡ଼ିଂ ।"

ଅପରାହ୍ଣ ସାଇକେଲ ଠେଲି ଘରଠି ପହଞ୍ଚିଲୁ । ଆମ ଧାନଘର ଖଣ୍ଡାରେ ଆମେ ରହିଲୁ । ସ୍ନାହା ଝିଅ ସାରି ନବ ବାବୁ ମୋ ବାପାଙ୍କ ସଙ୍ଗରେ କଥାଭାଷା ହେଲେ ।

ତହିଁଆରଦିନ ଗୁଡ଼ଖାଇ—ମାଂସର ପ୍ରଚୁର ବ୍ୟବସ୍ଥା ହୋଇଛି । ହୃଷୀକେଶ ନବମିଷାଶୀ, ନବ ବାବୁ ଓ ମୁଁ ଆକଣ୍ଠ ଖାଇଲୁ । ଟିକିଏ ବିଶ୍ରାମ ନେଇ, ସ୍ନାହା ଖାଇ ଅନୁଗୁଳ ଗଲୁ ।

ଶ୍ରୀଯୁକ୍ତ ଚଉଧୁରୀ ମୁଖ୍ୟମନ୍ତ୍ରୀ ଥାନ୍ତି । ଭୁବନେଶ୍ୱରରେ ମୁଖ୍ୟମନ୍ତ୍ରୀଙ୍କ ବାସଭବନ । ଦିନେ ମୁଁ କଟକରୁ ଯାଇ ପହଞ୍ଚିଲି ସେଇଠି । ସ୍ଲିପ୍ ପଠାଇଲି । ସେ ହାତରେ ସିଗାରେଟ୍ ଟିଏ ଧରି ପହଞ୍ଚିଗଲେ । ମୁଁ ନମସ୍କାର କରିବା ପୂର୍ବରୁ ନମସ୍କାର ଜଣାଇଲେ । ମୋତେ ସିଗାରେଟ୍ ଯାଚିଲେ । ମୁଁ ମନାକଲି । ସେ କହିଲେ—"ସ୍ୱାଭାବରେ ଆପଣ ସିଗାରେଟ୍ ଛାଡ଼ି ଦେଲେଣି କି ?"

ମୁଁ କହିଲି—"ଗୋଟାଏ ଅନୁରୋଧ କରିବାକୁ ଆସିଛି, ସିଗାରେଟ୍ ଖାଇବି କଅଣ ?"

ସେ କହିଲେ—"ସିଗାରେଟ୍ ଖାଇ କଥାବାର୍ତ୍ତା ହେବା ।"

ସେ ଖାଇଲେ ।

ମୁଁ ଖାଇଲି ।

ଆରମ୍ଭ କଲି—"ଦିଲ୍ଲୀରେ A.I.R. ରେ ଗୋଟାଏ ଓଡ଼ିଆ ପୋଷ୍ଟ ଖାଲି ଅଛି । ଆପଣ ଟିକିଏ ସାହାଯ୍ୟ କଲେ ଦିଲ୍ଲୀରେ କେତେ ଦିନ ରହିଯିବି ।"

"ଆପଣ କ'ଣ ଗୃକର କରିପାରିବେ ?"

"କହୁଚି ଯେତେବେଳେ କରିପାରିବି । ଦିଲ୍ଲୀ ସମ୍ପର୍କରେ ଯେଉଁ ଅନୁଭୂତି ହେବ, ତାହା ତ ଲେଖାରେ ଦେଖାଦେଇ ପାରିବ ।"

"ହେଉ, ଦୁଇ ଘଣ୍ଟା ପରେ ଯିବା, ମୋର ମଧ୍ୟ A.I.R. କଟକରେ ଗୋଟାଏ ରେକର୍ଡିଂ ଅଛି । ସାଥୀ ହୋଇ ଯିବା, ଏଠି ଜଳଖିଆ ଖାଇନେବା । ଡାଇରେକ୍ଟର ଘରେ ମୋର ଖାଇବାର ନିମନ୍ତ୍ରଣ ଅଛି । ସେ ତ ସୁସାହିତ୍ୟିକ, ମୁସ୍ତଫା ଆଲି । ଶାନ୍ତିନିକେତନରେ ମୋର ବନ୍ଧୁ ଥିଲେ ।" ଜଳଯୋଗ କରି କଟକ ଗଲୁ । ମୋତେ ସାଙ୍ଗରେ ନେଇ ଡାଇରେକ୍ଟରଙ୍କୁ କହିଲେ—"ଏ ହେଉଛନ୍ତି ରାଧାମୋହନ ଗଡ଼ନାୟକ, ମୋର ବନ୍ଧୁ । ଓଡ଼ିଶାର ବିଶିଷ୍ଟ କବି । ଦିଲ୍ଲୀ A.I.R ରେ ଓଡ଼ିଆ Announcer Post ଖୋଲା ଅଛି । ଏହାଙ୍କ ପାଇଁ ବ୍ୟବସ୍ଥା କର ।"

ଡାଇରେକ୍ଟର କହିଲେ, "ସେଇ ପୋଷ୍ଟ ପାଇଁ ମୁଁ ବିଜୟ ମଙ୍ଗରାଜଙ୍କ ନାମ ପଠାଇ ଦେଇଛି ଆଜି ଡାକରେ । ପରେ କଅଣ ହେବ ଦେଖିବା ।"

ମୁଁ ମୋର ମଙ୍ଗଳାବାଗ ବସାକୁ ଗଲି । ଆସିଲା ବେଳେ ଶ୍ରୀ ଚଉଧୁରୀ ମତେ ପଚାରିଲେ—"ଆପଣ ଅନୁଗୁଳ ଯିବେ କି ? ମୁଁ ଯାଉଛି ।"

ମୁଁ କହିଲି—"ଯିବି, ସ୍ୱୀକର ତ ହେଲା ନାହିଁ । ଏ ସୁଯୋଗ ଛାଡ଼ିବି କିଆଁ ।"

"ଠିକଟା ବେଳେ ଆସନ୍ତୁ, ରେଡ଼ିଓ ଷ୍ଟେସନକୁ ।"

ଯଥାସମୟରେ ମୁଁ ଗଲି । ଆମେ ଅନୁଗୁଳ ବାହାରିଲୁ । ଅନୁଗୁଳ ଆଉ ଦଶ କିଲୋମିଟର ଅଛି, ବିଅଁରପାଳ-ଠାରେ ମୁଁ ଓହ୍ଲାଇବାକୁ କହିଲି ।

ଶ୍ରୀ ଚଉଧୁରୀ ମୋତେ କହିଲେ—"ଏଠୁ କାହିଁକି ଯିବେ ? ଅନୁଗୁଳ ଗଲୁ ନାହାନ୍ତି ?"

ମୁଁ କହିଲି—"ଆପଣ ଆପଣଙ୍କ ଆଶ୍ରମକୁ ଯାଉଛନ୍ତି, ମୁଁ ମୋ ଆଶ୍ରମକୁ ଯାଏ । ଏଠି ମାଇକେଲ ମିଳିବ ?"

ସେ ସସ୍ମିତ ମୁଖରେ କହିଲେ—"କବିଙ୍କ କଥା ହେଉ" । ସେ ଗଲେ ଅନୁଗୁଳ ।

ମୁଁ ଗଲି ଗାଁକୁ ।

ତାଳଚେର ସନ୍ଧ୍ୟାଗାଡ଼ିରେ ଯିବା ପାଇଁ ମୁଁ କଟକ ଷ୍ଟେସନକୁ ଗଲି । ସେଠି ଦେଖିଲି—ପ୍ଲାଟଫର୍ମରେ ନବକୃଷ୍ଣ ଚହଳପୂର୍ଣ୍ଣ ପଦଚାରଣ କରୁଛନ୍ତି—ଅପ୍ରତ୍ୟାଶିତ ଦେଖା ।

"ଆପଣ ଅନୁଗୁଳ ଯାଉଛନ୍ତି ?"

"ହିଁ ।"

ଗାଡ଼ି ଆସିଲା, ଆମେ ଏକାଠି ବସିଲୁଁ । 'ଟ୍ରେନ୍'ର ଘର୍ଘର ସଙ୍ଗୀତେ ଅଖି ବୁଜିହଉଚୁ । ନବ ବାବୁ ହଠାତ୍ କହିଉଠିଲେ—ସୁନନ୍ଦ କବିଙ୍କର ଯେଉଁ କବିତା ଆଜି ଏଥିରେ ପ୍ରକାଶିତ ହୋଇଚ, ସେଥିରେ ଛନ୍ଦ ପ୍ରମାଦ ଏଥିରେ । ଓଡ଼ିଶାରେ ମୁଁ ଜଣେ ଛନ୍ଦ ପ୍ରବୀଣ ବୋଲି ଅଭିମାନ । ତା ଶୁଣି ମୁଁ ଟିକିଏ ବିସ୍ମିତ ହେଲି ।

କଅଣ ଛନ୍ଦ ପ୍ରମାଦ ବୋଲି କହିଲି ।

କବିତା ପଢ଼ି ସେ ଗୋଟି ଗୋଟି କରି ଛନ୍ଦ ପ୍ରମାଦ ଦେଖାଇ ଦେଲେ । ମୁଁ ଭଲ କରି ଜାଣିଥିଲି ନବ ବାବୁ ଜଣେ ପ୍ରଧୁକଣ୍ଟ । ବହୁତ ବହି ପଢ଼ାପଢ଼ି କରନ୍ତି । ମାତ୍ର ତାଙ୍କର ଛନ୍ଦଜ୍ଞାନର ପରିଚୟ ପାଇ ନ ଥିଲି ।

ଟି. ଟି. ଆଇ. ଆସି ଟିକେଟ ଯାଞ୍ଚ କଲେ, ମୁଁ ମୋ' ଟିକଟ୍ ଦେଖାଇଲି । ନବ ବାବୁ ତାଙ୍କ ଟିକଟ ଦେଲେ । ଟି. ଟି. ଆଇ. ଦେଖିସାରି ତାଙ୍କୁ କହିଲେ—

"ଆପଣ ଫାଷ୍ଟ କ୍ଲାସ ଟିକଟ କରିଛନ୍ତି, ଏଠି ବସିଛନ୍ତି କାହିଁକି ?"

ନବ ବାବୁ କହିଲେ—"ଏଠି ବନ୍ଧୁମେଳରେ ଯାଉଚି, କଥାବାର୍ତ୍ତା ହୋଇ ଯାଉଚୁ । ସେଠି ଚୁପଚାପ ହୋଇ ବସନ୍ତି କାହିଁକି ?

ମୁଁ ବି ଜାଣି ନ ଥିଲି, ସେ ଫାଷ୍ଟ କ୍ଲାସ ଟିକେଟ କରିଛନ୍ତି ବୋଲି । ଟି. ଟି. ଆଇ. ମୋତେ ଡାକି ନବ ବାବୁଙ୍କ ପରିଚୟ ପଚାରିଲେ । ମୁଁ କହିଦେଲି । ବିଗୁରି ଟି. ଟି. ଆଇ. ଅପ୍ରସ୍ତୁତ ହେଲା ଭଳି ନବ ବାବୁଙ୍କୁ ନମସ୍କାର ଜଣାଇ ପ୍ରସ୍ଥାନ କଲେ ।

ନବ ବାବୁ ବହୁତ ବହି ପଢ଼ୁଥିଲେ । ମୋତେ କେତେ କେତେ ବହି କଥା କହିଛନ୍ତି, ମୁଁ ତାହା ପଢ଼ିନାହିଁ ।

ସେ କହନ୍ତି—"ଅପଣ ତ ଲେଖିବେ, ଏତେ ପଢ଼ିଲେ ଲେଖିବେ କେତେବେଳେ ? ମୁଁ ଲେଖିପାରେ ନାହିଁ, ତେଣୁ ପଢ଼େ ।"

ଲେଖିଲେ ପୋଥି ହେବ । ଯନ୍ତ୍ରକାଷ୍ଠିତ ସ୍ମୃତିଚାରଣ କରି ତାଙ୍କୁ ଶ୍ରଦ୍ଧାର ପ୍ରଣତିଟିଏ ବାଢ଼ୁଚି ।

# ଅସାଧାରଣ ଭାବେ ସାଧାରଣ "ବାପି"

**ଗଣନାଥ ଦାସ**

ସନ ୧୯୬୧ ଜାନୁୟାରୀରେ ମୁଁ ବଣାଇର ଆଡ଼ମିନିଷ୍ଟ୍ରେଟର ପଦବୀରୁ ତତ୍କାଳୀନ ଆଦିବାସୀ ଓ ଗ୍ରାମମଙ୍ଗଳ ବିଭାଗର ଅନୁଶାସନ ସଚିବ ରୂପେ ଭୁବନେଶ୍ୱରରେ ଅବସ୍ଥାପିତ ହେଲାବେଳକୁ ନବ ବାବୁ ଓଡ଼ିଶାର ମୁଖ୍ୟମନ୍ତ୍ରୀ । ସେତେବେଳେ ରହୁଥାନ୍ତି କଟକର କଲ୍ଲାପଡ଼ାଅବସ୍ଥିତ ଜଲ କୋଠିରେ, ଯାହା ଏବେ ମୁଖ୍ୟ ବିଚାରପତିଙ୍କର ବାସଗୃହ ।

ପୂଜ୍ୟା ମାଳତୀ ଦେବୀଙ୍କ ଦ୍ୱାରା ପରିଚାଳିତ ନବଜୀବନ ମଣ୍ଡଳ ସେତେବେଳେ ଅନୁନ୍ନତ ଆଦିବାସୀ ସମ୍ପ୍ରଦାୟ ସେବାକ୍ଷେତ୍ରରେ ଓଡ଼ିଶାର ଏକମାତ୍ର ସୁନାମଧନ୍ୟ ସ୍ୱେଚ୍ଛାସେବୀ ଅନୁଷ୍ଠାନ କହିଲେ ଅତ୍ୟୁକ୍ତି ହେବ ନାହିଁ । ବଣାଇରେ ମୁଁ ଥିଲାବେଳେ ଅଚାନକ ଦିନେ ପୂଜ୍ୟା ରମା ଦେବୀ ଓ ସ୍ୱ. ଶ୍ରୀଯୁକ୍ତ ଗୋପବନ୍ଧୁ ଚୌଧୁରୀ ଓ ଗୁଣନିଧି ମହାନ୍ତିଙ୍କ ସହ ପହଞ୍ଚିଲେ । ବଣାଇର ଅନୁନ୍ନତ ଆଦିବାସୀଙ୍କୁ ଭେଟି ସେମାନଙ୍କ ଅବସ୍ଥା ଲକ୍ଷ୍ୟ କରିବା ମୁଖ୍ୟ ଉଦ୍ଦେଶ୍ୟ । ମୋ ସଙ୍ଗରେ ଦୁଇ ତିନି ଦିନ ସମସ୍ତେ ରହି କେତେକ ଆଦିବାସୀ ଅଞ୍ଚଳ ବୁଲିଥିଲେ । ସେହିଦିନଠାରୁ ଉଭୟ ରମା ଦେବୀ ଓ ମାଳତୀ ଦେବୀଙ୍କର ସଂସ୍ପର୍ଶରେ ଆସିଥିଲି ।

ଭୁବନେଶ୍ୱରରେ ପୁଣି ଆଦିବାସୀ ବିଭାଗରେ ରହିଲାଠାରୁ ମାଳତୀ ଦେବୀଙ୍କର ଅଧିକ ସଂସ୍ପର୍ଶରେ ଆସି ତାଙ୍କର ଆଦିବାସୀ କଲ୍ୟାଣ ପ୍ରତି ନିବିଡ଼ ଅନୁରାଗ ଓ ଓଡ଼ିଶାର ଆଦିବାସୀ ସମ୍ପ୍ରଦାୟମାନଙ୍କ ସମ୍ପର୍କରେ ପର୍ଯ୍ୟାପ୍ତ ଅଭିଜ୍ଞତା ଥିବାର ଲକ୍ଷ୍ୟ କରି ତାଙ୍କଠାରୁ ପ୍ରେରଣା ଓ ବିଭିନ୍ନ ସୂଚନା ଆହରଣ କରିବାକୁ ଏବଂ ସରକାରୀ ସହାୟତାରେ ତାଙ୍କ ପରିଚାଳିତ କେନ୍ଦ୍ରମାନ ଓ ବାଜିରାଉତ ଛାତ୍ରାବାସ ଆଦି ବିଷୟରେ ଆଲୋଚନା କରିବାକୁ ଅନେକବାର ମୁଖ୍ୟମନ୍ତ୍ରୀଙ୍କ କଟକ ଆବାସକୁ ଯାଇଛି ।

ମୁଖ୍ୟମନ୍ତ୍ରୀ ନବ ବାବୁଙ୍କୁ ସେଠାରେ କେତେ ଥର ଭେଟିବାର ସୁଯୋଗ ପାଇଛି । ମୁଖ୍ୟମନ୍ତ୍ରୀତ୍ୱର ଯେଉଁ ସାଧାରଣ ଘଟାଟୋପ, ତା'ର ଲବ ଲେଶ ନ ଥାଏ ତାଙ୍କଠାରେ । ମୁଖ୍ୟମନ୍ତ୍ରୀଙ୍କ ସହିତ ମୋର କୌଣସି କାର୍ଯ୍ୟ ନ ଥିବାରୁ ମୁଁ ସେପରି ଉତ୍ସୁକ ନ ଥାଏ ତାଙ୍କୁ ଭେଟିବାକୁ । ମାତ୍ର ତାଙ୍କର ଅସାଧାରଣ ନିରାଡ଼ମ୍ବର, ଅକପଟ, ଅମାୟିକ ଭାବ ମତେ ବାରମ୍ବାର ଆକୃଷ୍ଟ କରିଥାଏ । କେବେ କେବେ ସେ ନିଜେ ମାଳତୀ ଦେବୀଙ୍କ ସହିତ ମୋର ଆଲୋଚନାରେ ଭାଗ ନେଇ କିଛି ଗୋଟାଏ ମତାମତ ଦେଇଦିଅନ୍ତି ବା ମୋଠାରୁ କିଛି ଜାଣିବାକୁ ଚାହିଁଥାନ୍ତି । ସବୁଥିରେ ଏକାନ୍ତ ସରଳ ଓ ଅକୃତ୍ରିମ ଭାବ; ସର୍ବୋଚ୍ଚ ଅଧିକାରୀର ଦାମ୍ଭିକତାର ଚିହ୍ନ ଆଦୌ ନ ଥାଏ ।

ତେଣୁ କିଛିଦିନ ପରେ ସେ ଯେତେବେଳେ ଭୁବନେଶ୍ୱରର ଆମେ ରହୁଥିବା ପ୍ରକାରର ଏକ ଛୋଟ ଟାଇପ୍ ଷ୍ଟ୍ରିଟ ଘରେ ଆମ ଘରଠାରୁ ମାତ୍ର ଦୁଇଟି ଘର ଛାଡ଼ି ରହିଲେ, ଆମର ଆଦୌ ଅସ୍ୱସ୍ତି ଭାବ ଜାତ ହୋଇ ନ ଥିଲା । ସେପରି ହୋଇଥିଲା ତାଙ୍କୁ ଭଲ ଭାବରେ ନ ଜାଣିଥିବା କେତେକଙ୍କ ମନରେ, ସ୍ୱୟଂ ମୁଖ୍ୟମନ୍ତ୍ରୀଙ୍କର ଏତେ ନିକଟରେ ରହିବାକୁ । ମନେ ଅଛି ଦିନେ ଦିନେ ସକାଳୁ ଦାନ୍ତକାଠି ଝଣ୍ଡେ ଘଷି ଘଷି ଚପଲ ପିନ୍ଧି ଖାଲି ଦେହରେ ରାସ୍ତାରେ ବୁଲି ବୁଲି ହାଜର ହୋଇଯାଆନ୍ତି ଆମ ଗେଟ୍ ପାଖରେ । ତାଙ୍କୁ ଦେଖି ଆଗ୍ରହାତିଶଯ୍ୟରେ ପାଖକୁ ଦୌଡ଼ିଗଲେ, କଅଣ ଗୋଟାଏ କଥା ପଚାରିଦେଇ ବା କହିଦେଇ ଚାଲିଯାଆନ୍ତି । ସବୁ ସେହି ଦରିଦ୍ର ଆଦିବାସୀଙ୍କ କଲ୍ୟାଣ ବିଷୟକ ।

ଆଜି କେବେ କେବେ ତାଙ୍କୁ ଓ ମାଳତୀ ଦେବୀଙ୍କୁ ନିଜ ନିଜର ଗଣ୍ଡିଲି ଧରି କୋରାପୁଟର କେଉଁ ଅଗମ୍ୟ ସ୍ଥାନରେ ଥିବା "ଅମା" ସେଣ୍ଟରକୁ ଚାଲି ଚାଲି ଯିବାର ଦେଖି ବିସ୍ମୟପୂର୍ଣ୍ଣ ଆନନ୍ଦରେ ବିହ୍ୱଳ ହୋଇଛି ।

ମୁଖ୍ୟମନ୍ତ୍ରୀ ହିସାବରେ ତାଙ୍କୁ କେବେ ଦେଖିନାହିଁ । ନିଜର ମତାମତ ଅନ୍ୟ ଉପରେ, ଏପରି କି ବିଭାଗୀୟ ଶାସନ ସଚିବମାନଙ୍କ ଉପରେ ଜାହିର କରିବାକୁ । ବରଂ ପରିଷ୍କାର ଶୁଣିଛି ତାଙ୍କ ମୁହଁରୁ ଯେ ଗଣତନ୍ତ୍ରରେ ସମସ୍ତେ ନିଜ ନିଜର ଦାୟିତ୍ୱ ଉପଲବ୍ଧି କରିବା ଦରକାର ଓ ତଦନୁସାରେ କାର୍ଯ୍ୟ କରିବା ଆବଶ୍ୟକ । ହାକିମି ଚଳାଇବାର ଆବଶ୍ୟକତା କଅଣ ? ଶାସନକଳର ଶୀର୍ଷ ସ୍ଥାନରେ ଥାଇ ସୁଦ୍ଧା ସେ କେବେ ପ୍ରଭୁତ୍ୱ ପ୍ରୟୋଗ କରିବାର ପକ୍ଷପାତୀ ନ ଥିଲେ । ବରଂ ପ୍ରଗତିଶୀଳ ବୈପ୍ଳବିକ ଚିନ୍ତାଧାରାରେ ମଗ୍ନ ରହି ସେ, ମହତାବଜୀଙ୍କ ଭାଷାରେ, "ଶାସନ ପ୍ରତି ମନ ଦେଲେ ନାହିଁ ।"

ତାଙ୍କର ଏହି ଅସାଧାରଣ ବ୍ୟକ୍ତିତ୍ୱ ହେତୁ ନିକଟତର ହେଲା ପରେ ତାଙ୍କୁ ସାର୍ ବୋଲି ସମ୍ବୋଧନ କରିହେଲା ନାହିଁ । ଯେପରି ବାପା, କକେଇ, ବା ବଡ଼ ଭାଇଙ୍କୁ 'ସାର୍' ବୋଲି କହିହୁଏ ନାହିଁ । "ବାପି" ବୋଲି ମନ ମଧ୍ୟରେ ରଖିଥିଲେ ମଧ୍ୟ ପ୍ରକାଶ୍ୟରେ ସମ୍ବୋଧନ କରିହେଲା ନାହିଁ । ଯେହେତୁ ମୁଖ୍ୟମନ୍ତ୍ରୀଙ୍କୁ ଅତ୍ୟଧିକ ଘନିଷ୍ଠତା ପ୍ରଦର୍ଶନ ଗର୍ହିତ ହେବ ।

ନବ ବାବୁଙ୍କ ସ୍ୱର୍ଗତ ଆତ୍ମା ଶାନ୍ତିଲାଭ କରୁ କହିବା ମୋ ମତରେ ବାହୁଲ୍ୟ ମାତ୍ର, କାରଣ ସେ ଥିଲେ ନିର୍ବାକ୍, ନିର୍ବଳ ଜନତାର ବଳ । ଏହି ପ୍ରକାର ବ୍ୟକ୍ତି ଭଗବାନଙ୍କର ନିକଟତର ଓ ପ୍ରିୟ । ତାଙ୍କର ଆତ୍ମାର ସଦ୍‌ଗତି ଛଡ଼ା ଅନ୍ୟ ଗତି ନାହିଁ ।

---

# ବାପି, ଏକ ନିଜସ୍ୱ ଅନୁଭବ

**କରୁଣାକର ପରିଡ଼ା**

୧୯୮୪ ଜୁନ୍ ୨୩ ତାରିଖ......

ସେ କାଳରାତ୍ରି ପାହିବା ମାତ୍ରେ ସକାଳ ୬ଟା ବେଳେ ବାର୍ତ୍ତା ଦେଲା : "ନବ ବାବୁ ଆଉ ନାହାନ୍ତି !" ତୁଣ୍ଡବାଇଦ ମୁହୂର୍ତ୍ତିକେ ସହସ୍ର କୋଣ ନେଇ ବ୍ୟାପିଗଲା ।

ସ୍ରୁହ୍ମ ସ୍ରୁହ୍ମ ବାହେବିହିତ ଖୁଦାବାଦ ନେକାରମ୍ଭ । ଓଡ଼ିଶାର ରାଜ୍ୟପାଳଙ୍କ ସମେତ ରାଜ୍ୟର ସବୁ ବଡ଼ବଡ଼ିଆଙ୍କ ସମାବେଶ ।

ରାଷ୍ଟ୍ରୀୟ ମର୍ଯ୍ୟାଦାରେ ଅନ୍ତ୍ୟେଷ୍ଟି କ୍ରିୟା କାର୍ଯ୍ୟକ୍ରମ ।

ଚିତା ଜଳିଲା...... ।

ସୌମ୍ୟମୂର୍ତ୍ତି ଚିରଦିନ ପାଇଁ ଅଦର୍ଶନ " ହବୁ ଶେଷ !!!! ଯାହା ରହିଲା, ସେ କେବଳ ଲୁହ-ପଖଳା ସ୍ମୃତି । ଅତି ନିଜ ଲୋକଙ୍କର ଦିନରାତି ଗୁଣୁ ଚୁଣୁ ସ୍ୱରରେ ଝୁରିହେବା ସାର ହେଲା ।

ଦେଶସାରା ସ୍ମୃତିଆଡ଼େ ଏକ ଶ୍ରଦ୍ଧା-ସ୍ରୋତର କଳଭଙ୍ଗା ଲହରୀ । କେତେ କେତେ ଲୋକଙ୍କର କେତେ ଶ୍ରଦ୍ଧାଞ୍ଜଳି ଶ୍ରଦ୍ଧାଞ୍ଜଳି । ଟିକିଏ ହେଲେ ଚଳନାର ସ୍ଥାନ ନାହିଁ । ସବୁ ଯେମିତି ଏକ ଅତି ପ୍ରାଞ୍ଜଳ ବାଣୀ, ହୃଦସ୍ପନ୍ଦନର ଅନ୍ତରରେ ଅଭିବ୍ୟକ୍ତ :

"ନବ ବାବୁ ଓଡ଼ିଶାରେ ଗାନ୍ଧୀଯୁଗର ପ୍ରବର୍ତ୍ତକ ଓ ପ୍ରତୀକ । ଓଡ଼ିଶାରେ କଂଗ୍ରେସ ଆନ୍ଦୋଳନର ସେ ଏକ ଅଧ୍ୟାୟ । ଏ ଭୂଇଁରେ ରାଜନୀତିରେ ସମାଜବାଦୀ ବିଗ୍ରହଧାରାର ସେ ପ୍ରଥମ ପ୍ରବର୍ତ୍ତକ । ନବ ବାବୁ ଓଡ଼ିଶାର ବରିଷ୍ଠ ସ୍ୱାଧୀନତା-ସଂଗ୍ରାମୀ, ସମାଜସେବୀ, ତଥା ସର୍ବୋଦୟ ନେତା । ସେ ଆଜୀବନ ମହାନ୍ ଗାନ୍ଧୀବାଦୀ ଆଜନ୍ମ ସାଧକ, ଏକନିଷ୍ଠ ରଚନାତ୍ମକ କର୍ମୀ, ତ୍ୟାଗୀ, ସାଧାରଣ ଜନତାର ସେବକ, ନିର୍ଯ୍ୟାତିତ ଜନତାର ସ୍ୱର୍ଗୀକୃତ ବନ୍ଧୁ, କେତେ କ'ଣ ! ତାଙ୍କର ତ୍ୟାଗ-ପୂତ ଜୀବନ, ଆଦର୍ଶ ଆଚରଣ, ବୈପ୍ଲବିକ ଓ ବୈଜ୍ଞାନିକ ଦୃଷ୍ଟିକୋଣ ଓଡ଼ିଶାର ରାଜନୈତିକ ତଥା ସାମାଜିକ କ୍ଷେତ୍ରରେ ଏକ ନୂତନ ମୂଲ୍ୟବୋଧ ସୃଷ୍ଟି କରିଥିଲା । ସେ ଜଣେ ମହାନ୍ ମାତୃଭକ୍ତ, ତ୍ୟାଗପୂତ, ଆଦର୍ଶବାଦୀ ଜନନାୟକ, ଶାସକ ତଥା ଦେଶସେବକ ଥିଲେ । ତାଙ୍କ ମହାପ୍ରୟାଣରେ ଓଡ଼ିଶାର ଜନ-ଜୀବନରେ ଏକ ଶୂନ୍ୟତା ସୃଷ୍ଟି ହେଲା । ଏକ ବହୁମୁଖୀ ପ୍ରତିଭାର ତିରୋଧାନ ଘଟିଲା ।" ଇତ୍ୟାଦି...

ଷଠୀର ଏକୁଡ଼ି ଜଣାଁ ଠୁ ଶ୍ମଶାନରେ ଯିଇବ ଏ କାହିଁଆଁ — ଦୀର୍ଘ ୮୩ ବର୍ଷର ଜୀବନ ।

ସୁଦୀର୍ଘ ବର୍ଷ ଏଭଳି ମହାନ ବ୍ୟକ୍ତିଙ୍କ ପବିତ୍ର ସ୍ନେହ ଛାଇର ସୀମାରେ ରହିଆସିଥିଲି— ଏ ମୋର ଏକ ପରମ ସୌଭାଗ୍ୟ ।

ଏ ଥିଲ --ବନ୍ଧୁ ଅଜଣା ଏକ ଶ୍ରଦ୍ଧା-ଫଲ୍‌ଗୁ । ବାପି ବୋଲି ଡାକିବାର ଅଧିକାର ସେ ଦେଇଥିଲେ । ମାଲତୀ ଦେବୀଙ୍କୁ କୁମା ଡାକେ । ଏ ମୋର ଆଶ୍ରମବାସୀଙ୍କ ଡାକ ନୁହେଁ । ସେଇ ନ୍ୟାୟରେ ବୁବୁଅପା, ଦନୁ-ବଭୂତ ଓ ଛୁଆମାନଙ୍କ ସହିତ ଶ୍ରଦ୍ଧାର ସମ୍ପର୍କ ସ୍ୱାଭାବିକ । ବଭୂତ ଅବଶ୍ୟ ଆମମାନଙ୍କର ଶ୍ରେଣୀ-ସାଥୀ ।

କେତେ ମାଟିକାନ୍ଥଅରେ, ବର୍ଷାରେ ଛତା ଧରି କେନ୍ଦ୍ରାପଡ଼ାରୁ ଚାଲି ଚାଲି ଦାର ଦଲେମିଟର ଦୂର ଆମ ଗାଁ ଘରକୁ ଯାଇଛନ୍ତି । କଥାରେ ବାଟ ସରସଏ । ରାଜନୀତି, ସମାଜନୀତି, ଗ୍ରାମ ସଂଗଠନ ପ୍ରଭୃତି ବିଭିନ୍ନ ସମସ୍ୟା ସେଇ ବାଟଚାଲରେ ଆଲୋଚନା ଚର୍ଚ୍ଚା ଚାଲୁଥାଏ । ବହୁବାର ଅନୁଗୋଳ ବାନପ୍ରସ୍ଥ ଗ୍ରାହାବାସକୁ ଯାଇଛୁ । ତାଙ୍କ ସାଧାରଣ ଜୀବନରେ, ମନ୍ତ୍ରୀ ଏବଂ ମୁଖ୍ୟମନ୍ତ୍ରୀ ଥିଲାବେଳେ ବି ବସାରେ ରହି, ସାଙ୍ଗରେ ବୁଲି, ବିଭିନ୍ନ କଥାବାର୍ତ୍ତା, ଯୁକ୍ତିତର୍କ ଆଳରେ ଅଜଣାରେ ଜୀବନର ବହୁ ତାଲିମ ମଧ୍ୟ ନେଇଛୁ । ମନ୍ତ୍ରୀପଦ ଗ୍ରତ୍ୟ, କାର୍ଯ୍ୟାନ୍ତରରେ ଅନୁଗୋଳ ଗ୍ରହ୍ଣ ଭୁବନେଶ୍ୱର ଆସିଲେ ବା ଭୁବନେଶ୍ୱର ଦେଇ ଅନ୍ୟ କୁଆଡ଼େ ଯାଉଥିଲେ, ସମସ୍ତ କରି କଷ୍ଟସ୍ଥ ମୋ ଘରେ ବୁଲିଯାନ୍ତି । ତାଙ୍କର ବେଳ ନ ଥିଲେ ଆଗରୁ କାର୍ଡ ଖଣ୍ଡିଏ ଜରୁର୍ ପଠେଲେ । ମୁଁ ଅମୁକ ଦିନ, ଅମୁକଙ୍କ ବସାରେ ରହିବ । ଅସୁବିଧା ନ ଥିଲେ, ଆସି ଦେଖାକରିବୁ । ମୁଁ ବରାବର ଯାଏ ।

ଏବେ ଏଇ ୧୯୮୩ ଜୁଲାଇ-ଅଗଷ୍ଟ କଥା । ସହୀଦନଗରଠି ଶ୍ରୀ ସୁରେନ୍ଦ୍ରନାଥ ଦ୍ୱିବେଦୀଙ୍କ ଘରେ ୨ ମାସ ପାଇଁ ନିଜ ଅସୁସ୍ଥତାର ପ୍ରାକୃତିକ ଚିକିତ୍ସା କରୁଥିଲେ । ବରାବର ଦେଖା ମିଳୁଥିଲା । ହଠାତ୍ 'ପାପା' ଓ 'କୀର'ଙ୍କ ମର୍ମନ୍ତୁଦ ବିୟୋଗ ଘଟିଗଲା । ଏ ଦୁହେଁ ଅତି ଉଚ୍ଚ ମେଧାସମ୍ପନ୍ନ ନାତି । ଭବିଷ୍ୟତ ଜୀବନରେ ଉଜ୍ଜ୍ୱଳ ରତ୍ନ ଦୁଇଟି । ଆକସ୍ମିକ ଭାବରେ ରାସ୍ତା ଦୁର୍ଘଟଣାରେ ଅମୂଲ୍ୟ ଜୀବନ ଦୁଇଟି ଅକାଳରେ ଝଡ଼ିପଡ଼ିଲା । ସବୁ ସେ ସହିଲେ । ସେଭଳି ଦୁଃଖର ପ୍ରଖର ସୁଅମୁହଁରେ ନବ ବାବୁଙ୍କୁ ମୁଁ ନିବାବନ୍ଥ ଭାବରେ ଦେଖିଛୁ । ନିର୍ବାକ, ନିଷ୍ପନ୍ଦ ହୋଇ ଅତୀତକୁ ସ୍ମରଣ କରି ବସିଥାନ୍ତି ?

ଏଇ ବର୍ଷ ମାର୍ଚ୍ଚ ଫେବ୍ରୁଆରୀରେ ଶେଷଥର ପାଇଁ ଦେଖା ମିଳିଥିଲା । ମୁଁ ଅଗ୍ରୁନକ ପହଞ୍ଚିଥିଲି । ଶୀଘ୍ର ଫେରି-ଆସିବା କଥା । ଅସିବା ବଖତରେ ଦେଖାକରି କହିଲି, "ଯାଉଛୁ ।" କି କଷ୍ଟ ହେଲା କେ' ଜାଣେ, ହଁ କି ନାଁ କିଛୁ କହିଲେ ନାହିଁ । ଶୋଇ ରହିଥିଲେ । ମୁହଁକୁ ନିରୀକ୍ଷଣ କଲି । ଦେଖିଲି ଆଖିରେ ଉଚ୍ଛୁଳା ଲୁହ ଜମିଛୁ । ଦେହକୁ ମୁଣ୍ଡକୁ ଟିକିଏ ଆଉଁସି ଦେଲି । "ପୁଣି ଶୀଘ୍ର ଆସିବି" କହିଆସିଥିଲି ।

ହତଭାଗ୍ୟ ମୁଁ । ଅନ୍ତିମ ଦର୍ଶନ ମୋତେ ମିଳିଲା ନାହିଁ । ଭୁବନେଶ୍ୱରରୁ ଏ ଯାନ୍ତ୍ରିକ ଯୁଗରେ ଗଲିନାହିଁ ନୁହେଁ, ଅବସ୍ଥାନୁସାରେ ଯାଇପାରିଲି ନାହିଁ । ଜୀବନ ଥିବାଯାଏ, ଏ ଅବଶୋଷ ଭୁଲି ହେବ ନାହିଁ ।

ଭୁବନେଶ୍ୱରରେ ଥାଇ, ଅନୁଗୁଳ ଦୃଶ୍ୟ ଆଖିରେ ଖାଲି ନାଚୁଥାଏ । ମନରେ ଅନନ୍ୟ ସ୍ମୃତିର ତୀବ୍ର ଦହନ । ସୁଦୀର୍ଘ ବର୍ଷର ଦୃଢ଼ ଏକ ଶ୍ରଦ୍ଧା-ବନ୍ଧନର ଟାଣୁଆ ଖିଅ ସବୁ ଖୋଲି ଖୋଲି ଯାଉଛୁ । ମନ-ପରଦାରେ ବାସି ଚାଲିଛି ଏ :

୧୯୪୩ ମସିହା ଫେବୃୟାରୀ ମାସ । ସକାଳ ସାଢ଼େ ଦଶଟା । ଆମେ ସବୁ ରେଭେନ୍‌ସା କଲେଜ ହଷ୍ଟେଲରେ । ଆଇ. ଏସ୍‌ସି. ପରୀକ୍ଷା ପାଇଁ ପ୍ରସ୍ତୁତ ହେଉଥାଉ । ହଠାତ୍ ବଡ଼ାଡ଼୍ ବେଗରେ ଖବର ହେଲା, "ବିନାୟକ ଚୌଧୁରୀ ଚାଲିଗଲା ।" ମନ୍ତ୍ରୀ ନବକୃଷ୍ଣ ଚୌଧୁରୀଙ୍କର ଏକମାତ୍ର ପୁଅ ।

ଏଁ.... ! କ'ଣ ହେଲା ?

କଟକ କ୍ୟାଣ୍ଟନ୍‌ମେଣ୍ଟ ରୋଡ଼ର ପାଞ୍ଚ ନମ୍ବର ବଙ୍ଗଳା । ରାଜସ୍ୱ ମନ୍ତ୍ରୀ ଚୌଧୁରୀଙ୍କ ବାସଭବନ । ବହୁ ଗାଡ଼ି ମଟର ଭିଡ଼ । ଚାରିପଟରେ ଜନସମୁଦ୍ର ।

ବିନାୟକ ଓରଫ 'କାଲୁ' କଲିଜିଏଟ୍ ସ୍କୁଲରେ ଅଷ୍ଟମ ଶ୍ରେଣୀରୁ ମୋର ଅତି ଅନ୍ତରଙ୍ଗ କିଶୋର ସାଥୀ । ଚନ୍ଦ୍ରାଇନ୍ ପଡ଼ିଆରେ ଖେଳା ସାରି, ପ୍ରାୟ ପ୍ରତିଦିନ ତା ଘରେ ନିଜ ଘର ଭଳି ଖାଇବା ପିଇବା ସବୁ । କ'ଣ ହେଲା ! ଭିତରେ ପଶିଲି

ସତେ ଯେପରି କାଲୁ ଗାଢ଼ ନିଦରେ ଶୋଇଯାଇଛି । ଦେହରେ ଏକ ଶୁଭ୍ର ଚଦରର ଆସ୍ତରଣ । ବେକଠୁଁ ଗୋଡ଼ଯାଏ କେତେ ଫୁଲ, ଫୁଲହାର, ଫୁଲତୋଡ଼ା । ମୁହଁଟି ଟୋପା ବି ଦିଶୁଥାଏ । ଧୂପକାଠିର ପବିତ୍ର ଗନ୍ଧ । ଅତି ମର୍ମସ୍ପର୍ଶୀ ସ୍ୱରରେ ପବିତ୍ର ରାମଧୂନ ଭଜନ ଶୁଭୁଛି । କାଲୁର ଜୀବନ-ଧୂପ ମାତ୍ର ୧୭ । ୧୭ ବର୍ଷର । ଜୀବନ-ସଂଗ୍ରାମରେ ବେଶ୍ ଦଗ୍ଧ ହୋଇ ସେ ଓଜ୍ଜ୍ୱଳ୍ୟର ସୁରଭିଆଡ଼ ମହକେଇ ଦେଇଥାଏ । ସେ ନବ ବାବୁଙ୍କ ଭଳି ଜଣେ ମନ୍ତ୍ରୀଙ୍କ ପୁଅ ବୋଲି ନୁହେଁ, ନିଜର ପ୍ରତିଭାବଳରେ ଏକ ବଳିଷ୍ଠ ପ୍ରତିଷ୍ଠା ସେ ଲାଭ କରିପାରିଥାଏ ଯେତେବେଳେକୁ । ଆଇ. ଏସ୍‌ସି ପାଠ ପଢ଼ିବା ବେଳକୁ ସେ ଜଣେ ଅତି ବଳିଷ୍ଠ ସମାଜବାଦୀ ସଂଗଠକ ହିସାବରେ ନାଁ କମେଇ ସାରିଥାଏ । ନିର୍ଭୀକ ସ୍ପଷ୍ଟବାଦୀ ଭାବରେ ସେ ସାରା ଓଡ଼ିଶାରେ ଚମକ ସୃଷ୍ଟି କରିପାରିଥିଲା । ସମସ୍ତଙ୍କୁ ଆଶ୍ଚର୍ଯ୍ୟ କରି ସେ କନ୍ଦାଇ ଚାଲିଗଲା । ଶେଷ ଶଯ୍ୟାର ଚାରିପାଖରେ ବହୁ ବନ୍ଧୁ ପରିଜନ ।

ନବ ବାବୁ, ହତଭାଗ୍ୟ ବାପି !

କାଲୁର ପାଦ ଦୁଇଟି ଉପରେ ଡାହାଣ ହାତ ଘେରେଇ ତଳେ ବସି ତା ଖଟକୁ ଆଉଜି, ମୁଣ୍ଡରେ କାଲୁର ଦେହକୁ ସ୍ପର୍ଶ କରି ଆଖିବୁଜି ପଡ଼ିଛନ୍ତି । ସେ ଦୃଶ୍ୟକୁ ଚାହିଁହେବ ନାହିଁ । ତଥାପି ଯାଇ ପାଖରେ ବସିଲି···

କିଛିକ୍ଷଣ ପରେ ଦୃଷ୍ଟି ପଡ଼ିଗଲା ।

ସେ ବେଳର ସେ ସୁହାସିନୀ, ଏବେ ବି ମୋର ପରିଷ୍କାର ମନେପଡ଼ୁଛି । ଜୀବନ ଥିବାଯାଏ ସେ ଅଭୁଲା ।

ସେ ଥିଲା ଏକ ଅପୂର୍ବ ସୁହାସିନୀ । ରାଜ୍ୟ ର ମନ୍ତ୍ରୀ ହେଲେ ବି, ମଣିଷ ସେ ସୁହାସିନୀ । ପୁଅର ଶବ ଉପରେ ମୁଣ୍ଡ ରଖିଥିବା, ପୁତ୍ରହରା ବାପାର ସୁହାସିନୀ .. ..ଆଖିରୁ ଅସ୍ତ୍ର ଲୁହ ଗଡ଼ିପଡ଼ୁଥିଲା । କୋହ ସମ୍ଭାଳି ନ ପାରି କହୁ ଉଠିଲେ .. "ଆଉ କାହା ପାଖକୁ ଆସିବି ?"······

ତା'ପରେ କାଲୁଶୂନ୍ୟ ଘରକୁ ବହୁବାର ଯାଇଛି । କେତେ ଆସିଛି । ଆଇ. ଏସ୍‌ସି. ପରୀକ୍ଷା ଦେଲି । ପରୀକ୍ଷାରେ ଭଲ ହେଲା ନାହିଁ । ଭଲ କରିନାହିଁ ବୋଲି କହି ଦେଖାକରି ଗାଲୁ ଗଲି । ଫେଲ୍ ଫଳ ବାହାରିଲା । ମୁଁ ଚମକିଲି । ସାଙ୍ଗମାନେ ଆଶ୍ଚର୍ଯ୍ୟ ହେଲେ । କେତେ କେତେ ସମାଲୋଚନା । କେତେ ସହାନୁଭୂତିର ସାନ୍ତ୍ୱନାମୂଳକ ଚିଠି ବି ମିଳିଲା । ନବ ବାବୁଙ୍କୁ ଚିଠିରେ ଜଣେଇଥିଲି । ଉତ୍ତର ଟିଏ ମିଳିଲା । ଏ ମୋ ପାଖକୁ ତାଙ୍କର ପ୍ରଥମ ଚିଠି :

ଅନୁଗୁଳ
୨-୭-୪୮

ସ୍ନେହର କରୁଣାକର,

ତମ ଚିଠି ଖଣ୍ଡି ବର୍ତ୍ତମାନ ପାଇଲି । ତେବେ ପରୀକ୍ଷାରେ ଖରାପ କରିଛ ବୋଲି ଆଗରୁ ଲେଖିଥିଲ । ସେଥିପାଇଁ ଫେଲ୍ ହେବା ଖବର ପାଇ ଆଶ୍ଚର୍ଯ୍ୟ ହେଲି ନାହିଁ । ତମ ମନରେ ଭୀଷଣ କଷ୍ଟ ହୋଇଥିବ, ମୁଁ ବୁଝିପାରୁଛି; କିନ୍ତୁ ଏ ଇଉନିଭର୍ସିଟି ପରୀକ୍ଷା, ଫେଲ୍ ଟା ବଡ଼ କଥା ନୁହେଁ । ତୁମେ ତ ଦେଖୁଛ, ଜୀବନର ପରୀକ୍ଷା । ଅତି ଦାରୁଣ ଭାବରେ ଫେଲ ହୋଇ ସୁଦ୍ଧା ଆମେ ଦେହ ଧରି ରହିଛୁ । ସେତେବେଳ ବସ୍ତିରୁ, ପରର କିଛି ସେବା କରିପାରୁଛୁ ।

କାଲି ତମ କଥା ଭାବୁଥିଲି ଓ ମାଳତୀ ଦେବୀଙ୍କୁ କହୁଥିଲି ଗୋଟିଏ ବିଶେଷ କାର୍ଯ୍ୟ ସମ୍ପର୍କରେ । ମାଳତୀ ଦେବୀ ଏଠି ଯେଉଁ ମୌଳିକ ବିଦ୍ୟାଳୟଟି ଚଳାଉଛନ୍ତି, ଯେଉଁ ବସ୍ତି ବିଦ୍ୟାଳୟ ପରି ଗୋଟିଏ ଆଦର୍ଶ ଅନୁଷ୍ଠାନ ରୂପେ ଗଢ଼ିବାର ଆମର ଇଚ୍ଛା, ଯାହାକୁ ଦେଖି ସାଧାରଣ ଲୋକଙ୍କର ମୌଳିକ ଶିକ୍ଷା ପ୍ରତି ଆଦର ଜନ୍ମିବ । ବର୍ତ୍ତମାନ ଏଠାରେ ଚାରୋଟି ଶ୍ରେଣୀ ଚାଲିଛି । ଦୁଇଜଣ ଶିକ୍ଷକ ଅଛନ୍ତି । ଏବର୍ଷ ଆଉ ଜଣେ ନିଯୁକ୍ତ ହେବେ । ଉପର ଶ୍ରେଣୀ ପାଇଁ ଜଣେ I. Sc. ପାଶ

କରୁଥିବା ଫ୍ରେଣ୍ଡ୍ ଶିକ୍ଷକ ଦରକାର ହେବେ । ଜମର ବିଦ୍ୟାବୁଦ୍ଧି ଦୃଷ୍ଟିରୁ ମୁଁ ତମ କଥା ଭାବୁଥିଲି । ତୁମେ ଦୈବାତ୍ ଫେଲ ହୋଇଥିଲେ ମଧ୍ୟ ପାଶ୍ କରିଥିବା ପିଲାଙ୍କଠାରୁ ତମର ଜ୍ଞାନ କଦାପି କମ୍ ନୁହେଁ । ମୌଳିକ ଶିକ୍ଷାକୁ ତମ ଜୀବନର ବ୍ରତ ଭାବରେ ଗ୍ରହଣ କରିପାରିଲେ, ଖୁବ୍ ବଡ଼ କାମ ତେମେ କରିପାରିବ—ଭାରତର ଭବିଷ୍ୟତ୍ ଏହି ଶିକ୍ଷାପଦ୍ଧତି ଉପରେ ନିର୍ଭର କରୁଛି । ଦେଶରେ ବଡ଼ ବଡ଼ ବୈଜ୍ଞାନିକ ବା ଇଞ୍ଜିନିୟର ଅଛନ୍ତି ଓ ହେବେ; କିନ୍ତୁ ମଣିଷ ଗଢ଼ିବା ବିଜ୍ଞାନ ଭାରତର ସବୁଠାରୁ ବେଶି ଲୋଡ଼ା—ଦୁନିଆର ମଧ୍ୟ ଲୋଡ଼ା । ତେମେ ସେଇଥିରେ ବଡ଼ ହୁଅ—କୀର୍ତ୍ତି ରଖ । ମୋର ଏ ଇଚ୍ଛା ।

ଏ ବିଷୟରେ ମୋ ସହିତ ଅଧିକ ଆଲୋଚନା କରିବାକୁ ଚାହୁଁଲେ, ଦୁଇଦିନ ସକାଶେ ଅନୁଗୁଳ ଆସିବ ।

ତମର
ନବକୃଷ୍ଣ ଚୌଧୁରୀ

ବନ୍ଧେବାଧିଆ ମୌଳିକ ଶିକ୍ଷା ଗ୍ରହଣକୁ ମୁଁ ମନେ ମନେ ପସନ୍ଦ କରିପାରି ନ ଥିଲି । ତଥାପି ଦୁଇଦିନ ପାଇଁ ଅନୁଗୁଳ ଗଲି । କଥାବାର୍ତ୍ତା ବହୁତ ହେଲା । କିନ୍ତୁ କମ୍‌ରେ ପ୍ରଥମ ଡିଗ୍ରୀ ପର୍ଯ୍ୟନ୍ତ ପାଠ ପଢ଼ିବା ମୋର ଏକାନ୍ତ ଇଚ୍ଛା ବୋଲି ଆମ କଥାବାର୍ତ୍ତାରୁ ବାପି ବୁଝିଲେ ।

ପୁଣି ଥରେ ଆଇ. ଏସ୍‌ସି. ପରୀକ୍ଷା ଦେଲି । ପାଶ୍ କଲି । ଡାକ୍ତରି ପଢ଼ିବା ମୋର ଏକାନ୍ତ ଇଚ୍ଛା ଥାଏ । ଘରର ଅବସ୍ଥାନୁସାରେ ଭବିଷ୍ୟତ୍ ପନ୍ଥା ନିର୍ଣ୍ଣିତ ଭାବେ ବାଛିନେବା ସହଜ ନ ଥିଲା । ବିଭିନ୍ନ ଚିନ୍ତାର ଏକ ଗୋଲକଧନ୍ଦାରେ ପଡ଼ିଥାଏ । କ'ଣ ସବୁ ମନେ ମନେ ଭାବୁଛି, ଚିଠିରେ ଜଣେଇଲି । ଉତ୍ତରଟିଏ ମିଳେ, ମିଳିଲା :

ଅନୁଗୁଳ
୧୭ । ୪ । ୪୯

ସ୍ନେହର କରୁଣା,

ତମ ଏପ୍ରିଲ୍ ଦୁଇର ବଡ଼ ଚିଠିଖଣ୍ଡ ପାଇଥିଲି । ତା'ପରେ ଆଜି ୧୬।୪ର କାର୍ଡ଼ ପାଇଲି । ଚିଠିର ଉତ୍ତର ଦେବାକୁ ଭୁଲିଯିବା ବା ବିଳମ୍ବ କରିବା ମୋର ଗୋଟିଏ ବଦଭ୍ୟାସ ହୋଇଗଲାଣି ।

ତମେ "ମୌଳିକ ଶିକ୍ଷା" ବିଷୟରେ ପଢ଼ିବାକୁ ସମ୍ମତ ଜାଣି ଭାରି ଖୁସି ହେଲି । ଆମ ଦେଶର ଭବିଷ୍ୟତ୍ ମୌଳିକ ଶିକ୍ଷାର କୃତକାର୍ଯ୍ୟତା ଉପରେ ନିର୍ଭର କରୁଛି, ପ୍ରଥମେ ପ୍ରଥମେ ଯେଉଁମାନେ ସେଥିରେ ପ୍ରବେଶ କରିବେ, ସେମାନଙ୍କ ନିଷ୍ଠା, ବିଦ୍ୟା ଓ ବୁଦ୍ଧି ଉପରେ । ବିଜ୍ଞାନ ଜାଣିଥିବା ଶିକ୍ଷକ ବିଶେଷ ଦରକାର । ତମେ B. Sc. ପଢ଼ିଲେ ମୋ ମତରେ Botany ଉପରେ ଜୋର ଦେବା ଦରକାର । କୃଷିବିଜ୍ଞାନର ତା ସହିତ ସମ୍ପର୍କ ଅଛି । ସବୁଠାରୁ ଭଲ ହେବ ଯଦି ସାଧାରଣ B. Sc. ନ ପଢ଼ି ତମେ କୌଣସି ଭଲ କୃଷି କଲେଜରେ B. Sc. in Agriculture ପଢ଼ନ୍ତ । ଆମ ଗାଁମାନଙ୍କରେ ମୌଳିକ ଶିକ୍ଷାର ମୌଳିକ ଧନ୍ଦା କୃଷି ହିଁ ହେବା ଉଚିତ । ସୂତାକଟାକୁ ପ୍ରାଥମିକ ଶିକ୍ଷା ପାଇଁ ବା ଶିଶୁ ଶିକ୍ଷାପାଇଁ ମୌଳିକ ଧନ୍ଦା କରାଯାଇ-ପାରେ । B. A. ପଢ଼ି କୌଣସି ଲାଭ ନାହିଁ । B. A.ର ସବୁ ପାଠ ତମେ ଘରେ ବସି ପଢ଼ିପାରିବ । ମୋର ପୁତୁରା ବୁଲୁ ତ ଘରେ ଘରେ Higher Mathematics Course ପଢ଼ି ଆରମ୍ଭ କରିଥିଲା । Economics ମଧ୍ୟ ସ୍ୱଚ୍ଛନ୍ଦରେ ଘରେ ଘରେ ପଢ଼ିପାରିବ । ତେଣୁ ମୁଁ କଲେଜରେ ପଇସା ଖର୍ଚ୍ଚ କରି B. A. ପଢ଼ିବା ବିରୁଦ୍ଧରେ । ଭଗବାନ୍ ତମଙ୍କୁ ଭଲ ସ୍ୱାସ୍ଥ୍ୟ ଓ କଷ୍ଟ ସହିବାର ଶକ୍ତି ଦେଇଛନ୍ତି । ସ୍କୁଲ କଲେଜର ପଢ଼ା ବାବୁଗିରି ତମକୁ ନିକମା କରି ନାହିଁ । ତମ ପରି ପିଲା ଆଦର୍ଶ କୃଷକ ହେବା ପାଇଁ ଓ ଆଦର୍ଶ ଶିକ୍ଷକ ହେବା ପାଇଁ କୃଷିବିଜ୍ଞାନ ଆରମ୍ଭ କଲେ ଓଡ଼ିଶାର ଭାଗ୍ୟ ଫେରିବ; ନ ହେଲେ ସ୍ୱରାଜ୍ୟ ହୋଇ ଯେଉଁସବୁ ସୁବିଧା ସୁଯୋଗ ଜୁଟିବ, ଓଡ଼ିଶାର ବର୍ତ୍ତମାନ ଅଧିବାସୀମାନେ ତା'ର ସୁବିଧା ନେଇପାରିବେ ନାହିଁ । ସ୍କୁଲ କଲେଜରୁ ବର୍ତ୍ତମାନ ଯେଉଁମାନେ ବାହାରୁଛନ୍ତି, ସେମାନେ ଜୀବନର ପ୍ରତିଯୋଗିତାରେ ପଛରେ ପଡ଼ିଯିବେ ।

ଡାକ୍ତର ପଢିଲେ ରୋଗୀଙ୍କର ସେବା କରିପାରନ୍ତି; କିନ୍ତୁ ବର୍ତ୍ତମାନ ବେଶି ଦରକାର ପଡ଼ୁଛି ସୁସ୍ଥ ସବଳ ଲୋକଙ୍କୁ ବାଟ ଦେଖାଇ ସେମାନଙ୍କର ସେବା କରିବା । ଭୁ ଡାକ୍ତର ପଢ଼ିବା ଇଚ୍ଛା ଶୁଣିଛୁ ଜାଣି ଖୁସି ହେଲି ।

ନିଜ ବିଷୟରେ କ'ଣ ସିଦ୍ଧାନ୍ତ କଲୁ, ଲେଖିବୁ । ଇତି ।

ନବକୃଷ୍ଣ ଚୌଧୁରୀ

ମୁଁ କିନ୍ତୁ ବି. ଏ. ଅନର୍ସ ପଢିଲି । ଆଶାନୁରୂପ ଫଳ କେବେ ଜୀବନରେ ମିଳିଲା ନାହିଁ । ଜୀବନର ଏସବୁ ଚରମ ବିଫଳତା ବିଷୟରେ ନବ ବାବୁଙ୍କୁ ଚିଠିଟିଏ ଲେଖିଲି । ସେତେବେଳେ ସେ ରାଜ୍ୟର ମୁଖ୍ୟମନ୍ତ୍ରୀ । ସେ ଦୀର୍ଘ ଚିଠିରେ ଯାହାଏ ଥିଲି, "ଦେଖିଲି ଭଲ ଜୀବନରେ କ'ଣଟାଏ କରିବି ବୋଲି ଆଶା ରଖିଥିଲି; କିନ୍ତୁ ମୋର ମନେ ହୁଏ—ଜୀବନରେ ମୋର Ambition ର ପୂର୍ଣ୍ଣଚ୍ଛେଦ ହୋଇଗଲା ।"

ଚିଠିର ଉତ୍ତର ପାଇଲି ସଙ୍ଗେ ସଙ୍ଗେ ।

ଭୁବନେଶ୍ୱର
୨୭-୩-୫୪

ସ୍ନେହର କରୁଣାକର

ତମର ୨୫-୩-୫୪ର ଚିଠି ପାଇଲି । ତୋ'ର ଭାଗ୍ୟ ଭଲ ଯେ, ମୋର ମାନସିକ ଅବସ୍ଥା ଭଲ ଥିଲାବେଳେ ଚିଠିଟି ମୋ ହାତରେ ପଡ଼ିଲା । ତମକୁ କଲେଜ ପାଠ ଓ ଡିଗ୍ରୀର ଭୂତ ଏପରି ଭାବରେ ଗ୍ରାସ କରିଛି ଯେ, ତେମେ ସହଜ ସ୍ୱାଭାବିକ ବୁଦ୍ଧି ହରାଇ ବସିଛ । ନ ହେଲେ, "ଜୀବନରେ ମୋର ତ Ambitionର ପୂର୍ଣ୍ଣଚ୍ଛେଦ ହୋଇଗଲା" ଏ କଥା ତମେ ଲେଖିବାର ଅର୍ଥ କ'ଣ ?

ତମେ ପୂରାପୂରି ପ୍ରକୃତସ୍ଥ ନ ହେବା ପର୍ଯ୍ୟନ୍ତ ତମ ସହିତ ପତ୍ରବିତର୍କ କରି ଲାଭ ନାହିଁ । ତମ କାନ୍ଧରୁ ଭୂତକୁ ତଳକୁ ଖସେଇ ପାରିଲେ ମୋ ପାଖକୁ ଆସିବ – ୩।୪ ଦିନ ମୋ ସାଙ୍ଗରେ ରହିବ ଓ ଭବିଷ୍ୟତ ସ୍ଥିର କରିବ ।

ତମର
ନବକୃଷ୍ଣ ଚୌଧୁରୀ

କିନ୍ତୁ ଦିନେ ହେଲେ ଅନୁରୂପ ଅଶ୍ରଦ୍ଧାର ଚିହ୍ନ ବର୍ଣ୍ଣ ବି ଅନୁଭବ କରିନାହିଁ ।

ହାକିମ ହେବାର ପାଇଁ ପ୍ରତିଯୋଗିତାରେ ଭାଗ ନେଲି । କେବଳ ତାଲିକାରେ ନାଁ ରହିଲା । ହେବାର ଅନ୍ୟବାଟେ ତା'ର ଗଲା । ଏଇଟା ପ୍ରଥମ ଓ ଶେଷ । ବୟସ ସୀମା ଅତିକ୍ରାନ୍ତ ହୋଇଥିଲା । ଆଉ କ'ଣ ଯୋଗ ଥିବ ଭାବି, ନାଗପୁର ବିଶ୍ୱବିଦ୍ୟାଳୟରେ ପଶେଇ ଗୁପ୍ତ ଭାବରେ ଇତିହାସରେ ଏମ୍. ଏ. ପରୀକ୍ଷା ଦେଲି । ତୃତୀୟ ଶ୍ରେଣୀ ମିଳିଲା । ତେବେ ବି ନାସିକା କୁଞ୍ଚନ ଦେଖିନାହିଁ ।

ଶିକ୍ଷକ ତାଲିମ ନେଇ ଶେଷରେ ହାଇସ୍କୁଲ ଶିକ୍ଷକ ହେଲି । ଏହି ଶିକ୍ଷକତା ଭିତରେ ପୁଣି ତିନୋଟି ଏମ୍. ଏ. ପରୀକ୍ଷା ଦେଲି । ତିନୋଟିଯାକ ଦ୍ୱିତୀୟ ଶ୍ରେଣୀ ହେଲା । କାହିଁରେ ଫାଷ୍ଟକ୍ଲାସ ହେଲା ନାହିଁ ।

ସେଥିରୁ ପ୍ରଥମ ଏମ୍. ଏ. ସାଧାରଣ ପ୍ରଶାସନରେ । ଫଳ ଜଣାପଡ଼ିବା ବେଳକୁ ନବ ବାବୁ ଜୟପ୍ରକାଶଙ୍କ ସହ ନାଗାଲାଣ୍ଡର କୋହିମା ଶାନ୍ତିକେନ୍ଦ୍ରରେ ସର୍ବୋଦୟ କାର୍ଯ୍ୟକ୍ରମରେ ଥିଲେ ।

ଖବର ଜଣେଇ ଦେଲି । ଉତ୍ତରରେ କର୍ଡ ଚିଠିଟିଏ ମିଳିଲା । ସେ ଖଣ୍ଡିକ ମୋ ପାଖରେ ଏକ ଅମୂଲ୍ୟ ସମ୍ପତ୍ତି ! ଏଥିରେ ତାଙ୍କ ଦମ୍ଭ ଜୀବନର ଏକ ପ୍ରତିଫଳନ ଦେଖିହୁଏ । ଆଜି ଗୋଟା ଦଶଟା ଧାଡ଼ିରେ ମୋ ପ୍ରତି ତାଙ୍କର ଅକୁହା-ଦୁଃଖ ଓ ଅସୀମ ସ୍ନେହର ଏକ ପ୍ରକାଶକୁ ସମ୍ପୃକ୍ତ କରିପାରନାହାନ୍ତି—

Peace Centre
Kohima
14.4.65

ସ୍ନେହର କରୁଣାକର,

ତୋର ଚିଠିଖଣ୍ଡ ଯଥାସମୟରେ ପାଇଥିଲି । ଉତ୍ତର ଦେବାରେ ଡେରି ହେଲା, କ୍ଷମା କରିବୁ । ଚିଠିପତ୍ର ଲେଖିବାର ଅଭ୍ୟାସ ମୋର ଅନେକ ଦିନୁ ଚାଲିଯାଇଛି । ଜୀବନଟା ଦିନକୁ ଦିନ ଶୂନ୍ୟ ହୋଇଯାଉଛି । ଖାଲି ବଞ୍ଚିରହିବା ଛଡ଼ା ମୋର ଆଉ କରିବାର କିଛି ନାହିଁ—ଏହି ଅନୁଭୂତି ସ୍ପଷ୍ଟରୁ ସ୍ପଷ୍ଟତର ହେଉଛି । ସାରା ଜୀବନ କେତେ କ'ଣ କଳ୍ପନା ଜଳ୍ପନାରେ ମାତି ରହିଥିଲି—ଦେଶରେ ଦିନେ ଅରେ ମସ୍ତବଡ଼ ଗୋଟାଏ ବିପ୍ଳବ ଆଣିବାରେ ସାହାଯ୍ୟ କରୁଛି ବୋଲି ଭାବୁଥିଲି । ବର୍ତ୍ତମାନ ଦେଖୁଛି ଆଉ ଯେଉଁଠାରେ ଯାହା ହେଉ ଆମ ଦେଶରେ ସେପରି ବିପ୍ଳବ ସୁଦୂରପରାହତ । ମନେ ହେଉଛି, ଯେଉଁ ଡାଳରେ ବସିଲେ ସେ ଡାଳ ଭାଙ୍ଗି ପଡ଼ିଲା । ଢୋଧରେ ମୋ ମନ ଜଳପୋଡ଼ ପାଉଁଶ ହେବାକୁ ବସିଲାଣି । ନାଗାଲାଣ୍ଡର ନାଗାମାନଙ୍କ ଭିତରେ ଶକ୍ତି ଓ ସାହସିକତା ଦେଖୁଛି । ସେଇଥିପାଇଁ ଏଠି ପଡ଼ିରହିଛି । ଏଠୁ ଗଲେ ତ ଛୁଆପିଲାଙ୍କୁ ନେଇ ଚୁପ୍‌ଚାପ୍ ପଡ଼ିରହିବା ଛଡ଼ା କିଛି ନାହିଁ ।

ତମକୁ ସବୁ ଦେଖିଲେ ସାହସକେ କଥା ଭରି ଖୁସି ଲାଗେ । ଅଗେ ଖୁସି ବି ଲାଗୁଥିଲା, ଆଶା ବି ହେଉଥିଲା ତେମେ ସବୁ ବଡ଼େବେ ବିପ୍ଳବର ଅଗ୍ରଣୀ ହେବ । ଭାରତରେ ଶିକ୍ଷିତ ଯୁବକ ପ୍ରଚଳିତ ବ୍ୟବସ୍ଥାରେ ନିଜ ପାଇଁ ଉପଯୁକ୍ତ ସ୍ଥାନ ଖୋଜିବାରେ ବ୍ୟସ୍ତ । ସେ ବ୍ୟବସ୍ଥାକୁ ଭାଙ୍ଗି ନୂଆ ବ୍ୟବସ୍ଥା ଗଢ଼ିବା କଥା ସେ କିପରି ଭାବିବ ?

ତୋର ସ୍ନେହାକାଙ୍କ୍ଷୀ
ବାପି

ଏମ୍. ଏ. ସବୁ ପାଶ୍ ପରେ, ମୁଁ ସ୍କୁଲ ଶିକ୍ଷକରୁ ୧୦ ବର୍ଷ କଲେଜ ଶିକ୍ଷକ ହେଲି । ପରେ ପରେ ସବୁକାଗ୍ରୀ ଶିକ୍ଷାନବେଶକେ ପାଶ୍ଚର୍ଯ୍ୟ ଥିଲି । ଏଇ କଲେ ମାର୍ଚ୍ଚ ମାସରେ ବର୍ତ୍ତମାନର ନୂଆ ଚାକିରୀରେ ଯୋଗ ଦେଇଛି । ସଙ୍ଗେ ସଙ୍ଗେ ଜଣେଇ ଦେଇଥିଲି । ସେଇ ଚିଠିରେ ଶୀଘ୍ର ଯାଇ ଦେଖାକରିବ, ଲେଖିଥିଲି । ୧୯୭୦ ମୋର ଏମ୍. ଏଡ୍. ପାଠ । ଏଇଟା ତୃତୀୟ ମାଷ୍ଟର ଡିଗ୍ରୀ । ଏଥର ବି ପ୍ରଥମ ଶ୍ରେଣୀ ମିଳିଲା ନାହିଁ । ଜଣେଇବା ନ୍ୟାୟରେ ଚିଠିଟିଏ ଦେଲି । ମଜାରେ ଉତ୍ତରଟିଏ ମିଳିଥିଲା :

ଅନୁଗୋଳ
୨୦-୨-୭୦

ସ୍ନେହର କରୁଣା,

ତୋର ଚିଠି ପାଇ ଖୁବ୍ ଖୁସି ହେଲି । ଏଥର ମଧ୍ୟ ତୋର ଫାଷ୍ଟକ୍ଲାସ ହେଲା ନାହିଁ ବୋଲି ମୁଁ ଦୁଃଖିତ ନୁହେଁ । ଆଉ ଅରେ ଆଉ ଗୋଟିଏ ଭଲ ବିଷୟ ପଢ଼ିବା ପାଇଁ ପ୍ରେରଣା ମିଳିବ ତତେ । Revolution ବା Social Change ଗୋଟିଏ ପାଠ୍ୟ ବିଷୟ ହେଲେ କେତେ ଭଲ ହୁଅନ୍ତା । ଅନେକ ଲକ୍ଷ୍ମୀଟଙ୍କା ପେଟୋଦାର ବିପ୍ଳବୀ ବା ଆଧୁନିକ ଅଣକମ୍ୟୁନିଷ୍ଟ ଭାଷାରେ ଦେଶୀ Change-agents ମାନେ ତମମାନଙ୍କର expert ପରାମର୍ଶ ଲୋଡ଼ନ୍ତି । ତୁ ଏଠାକୁ ଆସିଲେ ଖୁସି ହେବି—ମୁଁ ଏଠି ଚୁପ୍‌ଚାପ୍ ଅବସରରେ ଅଛି । ଘରେ ମୋ ଛଡ଼ା କେହି କାହାରି ବର୍ତ୍ତମାନ ।

। ଇତି ।
ସ୍ନେହାଧୀନ ବାପି
( ନବକୃଷ୍ଣ ଚୌଧୁରୀ )

ଆଉ ଆଜ ! ବରଂ ଏ ମଣିଷ ହୃଦୟର ଶୂନ୍ୟତା କେବଳ ଅନୁଭବର କଥା । କୌଣସି ରକମ ଭାଷା ତାକୁ ପ୍ରକାଶ କରିବାକୁ ସକ୍ଷମ ହୋଇପାରିବ ନାହିଁ । ତାଙ୍କର ପ୍ରସାଦରେ, ତାଙ୍କର ଇଚ୍ଛାରେ ତାଙ୍କୁ ହିଁ ପ୍ରକାଶ କଲି । ସେ ବ୍ୟକ୍ତିତ୍ୱ ଗହନ ଗମ୍ଭୀର । ଆମେ ସବୁ କ୍ଷୀଣ ତାରକା । ସାଧାରଣ ଭାବରେ ସେ ବ୍ୟକ୍ତିତ୍ୱର ପ୍ରକାଶ ପାଇଁ ଯତ୍ସାମାନ୍ୟ ଆଲୋକପାତ କରିବା ଶକ୍ତି ମୋର କାହିଁ ?

ନବକୃଷ୍ଣ ଚୌଧୁରୀ ।

ଏଇ ନାମ ଇତିହାସରେ ବେଶ୍ କିଛି କାଳକୁ ଜାଜ୍ୱଲ୍ୟ ରହିବ । ପ୍ରକୃତରେ ସେ ମହାନ୍ ଏକ ମଣିଷ ଚରଣ ! ସାରାଜୀବନ ଅଜାତଶତ୍ରୁ । ଏ ମାଟିରେ ଦେବତାର ବି ପରଲୋକ ଘଟେ । ନିର୍ଦ୍ଦିଷ୍ଟ ପଥରେ ସେ ଗଲେ । ସେଇଙ୍କ ତୁଣ୍ଡରେ ଭାଗବତର ନଷ୍ଟରି ବାଣୀ : କେତେ ବଡ଼ ମଣିଷଟିଏ ଚାଲିଗଲା । ମଣିଷ ଭଳି ମଣିଷଟିଏ !!

ବାପି, ମୋର ଅନ୍ତରର ଶ୍ରେଷ୍ଠ ପ୍ରଣତି ନେନ !!!

---

# ବାଜି ପରିବାରର ବାପି

**ଶତ୍ରୁଘ୍ନ ନାଥ**

ଗ୍ରନ୍ଥାବାସର ଜନ୍ମଦିନ । ମେ ମାସର ମୁଣ୍ଡଫଟା ଖରାବେଳରେ ପଡ଼େ । ସକାଳେ ସଭା ହୁଏ । କୋରାପୁଟ, କଳାହାଣ୍ଡି, କେନ୍ଦୁଝରର ଆଦି ପାହାଡ଼ିଆ ଅଞ୍ଚଳରେ ଅଭିଭାବକମାନେ ଆସିଥାନ୍ତି । ସଭା ଶେଷରେ "ବାଜି"ର ଉନ୍ମୋଚନ କରାଯାଏ । ହାତ ଲେଖା ପତ୍ରିକା 'ବାଜି' । ଗୁରୁବାରୀ, ସୁନାକର, ଚନ୍ଦ୍ରମଣି ଆଦି ଭାଇଭଉଣୀ ଲେଖିଥାନ୍ତି ନିଜ ନିଜ ହାତରେ । ଚିତ୍ର ବି କରିଥାନ୍ତି । ଚିତ୍ରକଳା ଏମାନଙ୍କର ଆପଣାର; କିନ୍ତୁ କାଗଜ ଉପରେ ତୂଳୀରେ ଚିତ୍ର କରିବା ସୁରୁସୁରୁ ପ୍ରଥମ । ପାଟି ଫିଟି ନ ଥିଲା, କଲମ ଧରି ନ ଥିଲେ, କାଗଜ ଦେଖି ନ ଥିଲେ, ଆଙ୍ଗୁଳିରେ କାଳି ଲାଗି ନ ଥିଲା, ଲେଖିବା ଦୂରର କଥା । ଏମାନେ ଆଜି ଏ ସବୁ କରିଛନ୍ତି । ପତ୍ରିକାରୁ କେତୋଟି ଲେଖା ପଢ଼ାଯାଏ, ପଢ଼ନ୍ତି ଲେଖକମାନେ । କି ଆନନ୍ଦ, ଗର୍ବ ଓ ଗୌରବ, ସଭାରେ ଉଚ୍ଛୁଳି ପଡ଼ୁଥାଏ । ପରିବେଶ ବେଶ୍ ଜମୁଥାଏ । ଖିଲ୍ ଖିଲ୍ ହସ ଓ ମେଲ୍ ମେଲ ଆଖି । ସମସ୍ତେ ବିଭୋର; କି ଥିଲା, କଅଣ ହୋଇଛି ? ଆହୁରି କଅଣ ହେବ ? ବଣ ଜଙ୍ଗଲରେ ପଶିଯିବ, ଚେତନାରେ ଚେଇଁ ଉଠିବ ସେହି ନିଷ୍ପ୍ରାଣ କୁଡ଼ିଆ ଘର । ଏଇ ଏବେ ବି ଏହାର ପ୍ରତିଧ୍ୱନି ହେଉଛି ସେହି ବଣଜଙ୍ଗଲରେ ସେଇ ମୁଲକରେ । ବାଜି ପର୍ବ ଆସୁଛି । ଶୋଷଣ, କଷଣର ଫାନ୍ଦିକୁ ପଶି ପାରୁନାହାନ୍ତି । ବାଜି ଗୁଳିମାଡ଼ରେ ମରୁଛି, ଲକ୍ଷ୍ମଣ ନାଏକ ଫାଶିଖୁଣ୍ଟରେ ଦେହ ଦେଉଛି । ମୁଲକର ମୁକ୍ତିମଶାଲ ଜଳିଉଠୁଛି । ଏମିତି ସ୍ୱପ୍ନ ସୃଷ୍ଟି ଦିନଟାରେ ସମସ୍ତଙ୍କ ଆଖି ଆଗରେ ଦେଖୁଛନ୍ତି ବାପି ଓ ନୁମା । ଦିବା-ସ୍ୱପ୍ନ ନୁହେଁ, କିଶୋର ବୟସର ଚିତ୍ତଚାଞ୍ଚଲ୍ୟ ନୁହେଁ । ସତ୍ୟର ସମ୍ଭାବନା । ନିଚ୍ଛକ ସତ୍ୟ; କିନ୍ତୁ ସେ ସ୍ୱପ୍ନ କେବେ ସତ୍ୟ ହେବ ?

ସଭା ପରେ ଭୋଜିରେ ବସିଯାଆନ୍ତି ସେହି ସଭାଘରେ । ମଣ୍ଡପରେ ବସନ୍ତି ଅତିଥିମାନେ, ସେଠି ଝୁଣ୍ଟିଚଟା ଦିଆଯାଇଥାଏ । ସେଇ ଅନ୍ତେବାସୀ ଭାଇଭଉଣୀମାନେ ଏହା କରିଥାନ୍ତି । କାନ୍ଥରେ ଜଗାଭାଇଙ୍କ ଚିତ୍ର, ସତ୍ୟ ଓ ଅହିଂସାର ବାର୍ତ୍ତା ପ୍ରଚାର କରୁଛନ୍ତି ଗାନ୍ଧୀ ଓ ବୁଦ୍ଧ । ବନ୍ଧୁକଠାରୁ କଲମ ଯିନା ଅଧିକ ଶକ୍ତିଶାଳୀ; କିନ୍ତୁ ସେଠି କଲମ ନାହିଁ, ଅଛି ତୂଳୀର ମୁନ ଓ ହାତର କରଣି । ଖଟା, ମିଠା, ପିଠା ଆଦିର ସୁଆଦିଆ ଭୋଜନର ଯୋଜନା ପ୍ରସ୍ତୁତି ଓ ପରିବେଷଣ କରନ୍ତି ସେହି ଆଦିବାସୀ, ହରିଜନ ଭାଇ ଓ ଭଉଣୀମାନେ । ବୋଲାଯିବ ମନ୍ତ୍ର, ବୋଲିବା ଆଗରୁ ସଦା ମୋ ନିତ୍ୟଭକ୍ଷ, ଯେଣିବି ସତତ ହରି ହେ ଦୟା ରଖ । ଜୀବନ ଶକତିଦାତା ଅନ୍ନହିଁ ପୂର୍ଣ୍ଣବ୍ରହ୍ମ । ଉଦରଭରଣ ନୁହେଁ ଜାଣ ହେ ଯଜ୍ଞ କର୍ମ, ତେବେ ଯାଇଁ ହାତ ଚାଲିବ । ବାପି ବସିଥିବେ ପିଲାଙ୍କ ମେଳରେ । ସେ ଆଗରୁ ବା ଅଦ୍ୟାପି ଖାଇବେ ନାହିଁ । ଝଲପତ୍ର ପାଖରେ ଶାଲପତ୍ରର ଦନା କେତୋଟି । ସବୁ ଟିକି ଟିକି ଖାଇବେ । ଆମ୍ବିଳ ଆମ୍ବ ବି ବାଦ ପଡ଼ିବ ନାହିଁ । ଆମ୍ବିଳ ଅପାର ଆମ୍ବ ପରସା ବାପିଙ୍କ ମନକୁ ପାଏ । ପତ୍ରକୁ ଗୋଟାଗୋଟି କରି ବାପି ଉଠିପଡ଼ନ୍ତି ପିଲାଙ୍କ ଗହଳି ଭିତରେ । ପତ୍ର ଗୁଡ଼ାଇବାକୁ ଅତିଥିମାନଙ୍କୁ ଅନୁରୋଧ କରାଯାଏ । ମାତ୍ର ବାପିଙ୍କ ପତ୍ର କେହି ଉଠାନ୍ତି ନାହିଁ, କିମ୍ବା ସେ କାହାକୁ ବଢ଼ାଇ ଦିଅନ୍ତି ନାହିଁ । ମନ୍ତ୍ରୀ ଥିଲା ବେଳେ ଯାହା, ବାର୍ଦ୍ଧକ୍ୟରେ ବି ସେଇଆ । ବାଜି ରାଉତ ଗ୍ରନ୍ଥାବାସ ଏକ ପରୀକ୍ଷାଗାର । ୧୯୪୭ ମସିହା ମେ ମାସ ୧୧ ତାରିଖରେ ଏହାର ଜନ୍ମ । ସେଦିନୁ ଏଯାଏଁ ଏମିତି ଚାଲିଛି । ବାପି ତ ଚାଲି ଗଲେଣି; କିନ୍ତୁ ତାଙ୍କ ଆତ୍ମା ଚାଲିଥିବ ସହଭୋଗୀ, ସମଭାଗୀ ଓ ସହଯୋଗୀ ସମାଜ ନିର୍ମାଣ କରିବାରେ । ଗାନ୍ଧୀ କଳ୍ପିତ ସମାଜ, ପ୍ରତ୍ୟେକର ସର୍ବୋତ୍ତମ ଉଦୟ ।

ବାପିଙ୍କ ଆଖିରେ ବାଜି କିଏ ? ନିଶ୍ଚିତ ଭାବରେ ଏକ ଐତିହାସିକ ସତ୍ୟ, ସମୟର ଆବଶ୍ୟକତା ଓ ସମୟାତୀତ । ସେ ସବୁଦିନ ପାଇଁ ଏକ ଦୁର୍ବାର ଅଗ୍ନି ସ୍ଫୁଲିଙ୍ଗ, ସାହସିକତା ସଂଗ୍ରାମ ଓ ସତ୍ୟର । ଆତ୍ମପ୍ରକାଶର ନିର୍ଭୀକତା । ସମଷ୍ଟିର ସଙ୍କେତ ଓ ସେଥିପାଇଁ ବ୍ୟକ୍ତିର ବଳିଷ୍ଠ । ପ୍ରେମର ପରାକାଷ୍ଠା ପରାର୍ଥ ପାଇଁ ପଦ ଓ ପଦାର୍ଥର ବଳିଦାନ । ଦେଶପ୍ରେମର

ଜ୍ୱଳନ୍ତ ବହ୍ନି ! ମିତ ଓ ନ୍ୟାୟର ପ୍ରତିଷ୍ଠା ପାଇଁ ଏକ ସାର୍ବଜନୀନ ମନୋଭାବ । ପରମେଶ୍ୱର ବିଦ୍ରୋହୀ ଏକ ଅପରାଜେୟ ପରମ୍ପରା । ବାପିଙ୍କର ତୁଣ୍ଡ, ମୁଣ୍ଡ ଓ ହାତରେ ବାଜୁଉଠିଛି ଏଇ ବାଜା । ସରକାରୀ ଶାସନକଳ, ସର୍ବୋଦୟ ନଗର, ପ୍ରଜାଆନ୍ଦୋଳନ, ଝିଙ୍କିଝିଆଙ୍କ ମେଣ୍ଟ, ଭୂଦାନ, ଗ୍ରାମଦାନ ଆଦି ସବୁ କ୍ଷେତ୍ରରେ ବାଜାର ବିଜୟବାର୍ତ୍ତା ମୁଖରିତ ହୋଇଛି । ଗୀତରେ ଗାଇଛନ୍ତି, ନିଜେ ସମସ୍ତଙ୍କ ସହିତ ତାଳ ମିଳାଇ :

"ମାଦଳ ବାଜିଲା ରେ ଘୁମୁରା ବାଜିଲା
ଆମେ ସବୁ ଅଛୁ ଭାଇ ବାଜାଗ୍ରାଉତ ଚେଲା ରେ
ଗୁଳି ଖାଇକି ପ୍ରାଣ ଯେହୁ ଦେଲା ।"

ଏହି ଅସମାପିକା ଉନ୍ମାଦନାର ପ୍ରତିଧ୍ୱନି ବହୁ ବନ୍ଦନୀୟ ଓ ସ୍ମରଣୀୟ ସ୍ୱଦେଶପ୍ରେମିକଙ୍କ ହୃଦୟରେ ଝଂକୃତ ହୋଇଛି । ଅର୍କେଷ୍ଟାର ବାଦ୍ୟଯନ୍ତ୍ର ସ୍ୱରୂପ ସେ ସବୁ ଏକକାଳରେ ଓ ସମତାନରେ ବାଜୁଉଠିଛି । ଭାରତରେ ଯେପରି ଉତ୍କଳରେ ସେହିପରି ସ୍ୱାଧୀନତାର ପ୍ରାକ୍‌କାଳରେ ଅରୁଣୋଦୟ ସଦୃଶ ବିଭିନ୍ନ ଗଠନମୂଳକ ସେବାକେନ୍ଦ୍ର ଗଠିତ ହୋଇଛି । ୧୯୪୬ ମସିହାରେ ଉତ୍କଳ ନବଜୀବନ ମଣ୍ଡଳ ଗଠନ କରାଯାଇଛି ଓ ଏହା ଦେଉଛି ନବୋଲ୍ଲାସର ଏକ ଦୃଷ୍ଟାନ୍ତ । ଶ୍ରେଷ୍ଠ ବଡ଼ ବଡ଼ ଅନୁଷ୍ଠାନ ହୋଇଛି । ଖଲର ସ୍କୁଲ ସ୍ଥାପିତ ହୁଏ ୧୯୪୭ ମସିହାରେ । ଅନୁଗୁଳର ଅନତିଦୂରରେ ୧୯୫୪ ମସିହାରେ ଗଢ଼ିଉଠିଛି ଚମ୍ପତିମୁଣ୍ଡା ଜୀବନ ବିଦ୍ୟାଳୟ । ସମାଜ ସହିତ ଅଙ୍ଗାଙ୍ଗୀ ଭାବେ ଜଡ଼ିତ ରହି ସମାଜକୁ ପ୍ରଭାବିତ କରିବା ଓ ଶିକ୍ଷାର ପ୍ରକ୍ରିୟାକୁ ଶୋଧନ ତଥା ସମୃଦ୍ଧ କରିବାର ଲକ୍ଷ୍ୟ ରଖାଯାଇଛି । ବିଦ୍ୟାଳୟ ବିଷ୍ଟାରିତ କରି ଜୀବନ ପ୍ରତି ଆଖିଠାର ମରାଯାଇନାହିଁ, ବରଂ ଏକ ମୁକ୍ତ ଲକ୍ଷ୍ୟ ପ୍ରଦାନ କରାଯାଇଛି । ଏ ସବୁର ସବିଶେଷ ବିବରଣୀ ଉତ୍କଳ ନବଜୀବନ ମଣ୍ଡଳ, ଅନୁଗୁଳର ପ୍ରକାଶନ ସ୍ମରଣିକାରେ ଲିପିବଦ୍ଧ ହୋଇଅଛି ।

ଅଧିକନ୍ତୁ ସରକାରୀ ସ୍ତରରେ ଗଢ଼ିଉଠିଛି ମୌଳିକ ଶିକ୍ଷା ପାଇଁ ଶିକ୍ଷକ ପ୍ରସ୍ତୁତର ମହାବିଦ୍ୟାଳୟ (୧୯୫୫) ଓ ଏହା ପୂର୍ବରୁ ମୌଳିକ ଶିକ୍ଷାର ପ୍ରୟୋଗ ପାଇଁ ଏକ ସଘନ ଅଞ୍ଚଳ ଏବଂ ବେସିକ୍ ଟ୍ରେନିଂ ସ୍କୁଲ । ବେସିକ୍ ଟ୍ରେନିଂ କଲେଜରେ ଗୋଟିଏ ରବିବାର, ଉତ୍ପାଦନ ଭିତ୍ତିକ ଶ୍ରମଯଜ୍ଞ ହାତକୁ ନିଆଯାଇଛି । ଡିସେମ୍ବର ମାସ, ସକାଳେ ସାଢ଼େ ନଅଟାଠାରୁ ଘଣ୍ଟାଏ ପାଇଁ କଲେଜର ଉତ୍ତର-ପୂର୍ବ କୋଣକୁ ମହୁଲ ମୂଳ ସାଏଁ ପୁଳାଏ ଚିନାବାଦାମ ରୁଆ ଯାଇଥାଏ । ଆଜି ସେ ଖଣ୍ଡକରେ ୮୦ ଫୁଟ ଲମ୍ବର ପୁସ୍ତକାଗାର ଓ ପଠନାଗାର । ଛନ ଛନ ଚିନାବାଦାମ, କୋଡ଼ କୋଡ଼ାର କାମ ହାତକୁ ନିଆଯାଇଥାଏ, କାଷ୍ଠକଳା ଭବନରେ ଓ ବଧିବିଦ୍ୟା ବିଭାଗର କାମ ଚାଲିଥାଏ । ଚିନାବାଦାମ କ୍ଷେତ୍ରରେ ଏମାନେ ହେଉଛନ୍ତି କୃଷି ବିଜ୍ଞାନୀ । ହାତରେ କାଙ୍କ, କୋର ସୋରଡେ କାମ, ମନେଅଛି, କୃଷି ଗୁରୁଜୀ ଶ୍ରୀ ନଟବର ବିଶ୍ୱାଳ କାମ ସଙ୍ଗେ ଚର୍ଚ୍ଚା ଚଳାଇଥାନ୍ତି ଓ ପ୍ରଶ୍ନର ଉତ୍ତର ଦେଉଥାନ୍ତି । ବିଭିନ୍ନ ଅନାବନା ଘାସର ନାମ, କି କ୍ଷତି କରୁଛନ୍ତି, ଚିନାବାଦାମ ଅମଳ ବଢ଼ିବା ପାଇଁ କ'ଣ କରାଯିବ, ଉନ୍ନତ ବିହନ ଇତ୍ୟାଦି, ଇତ୍ୟାଦି । ଶୀତଦିନ ସକାଳେ ହେଲେ କ'ଣ ହେବ, ଦେହ ମୁଣ୍ଡରୁ ଝାଳ ବହିପଡ଼ୁଛି । ଟଣାଟଣିରେ କାମ ଚାଲିଛି, ଏତିକି ବେଳେ ଜଣେ କିଏ ଅନାହୂତ ବ୍ୟକ୍ତି ସମସ୍ତଙ୍କ ଅଜାଣତରେ କିଆରି ମଝିରେ ପଶିଯାଇଛନ୍ତି ଓ ଖଣ୍ଡେ କାଙ୍କ କେହି ଜଣେ ଶିକ୍ଷାର୍ଥୀଙ୍କ ହାତରୁ ଛଡ଼ାଇ ନେଇ କୋଡ଼ିବାରେ ଲାଗିପଡ଼ିଛନ୍ତି । ନିର୍ଦ୍ଦିଷ୍ଟ ସମୟରେ କାମ ସରୁଛି ଓ ସମାପ୍ତି କରୁଛନ୍ତି କୃଷିମନ୍ତ୍ରୀ । ଏ ହେଉଛନ୍ତି ଓଡ଼ିଶାର ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀ । ଠିକ୍ ଆଣ୍ଠୁଲୁଚୁଥିବା ଖଦୀ ଖଣ୍ଡେ ଓ ହାତକଟା ଫତେଇଟିଏ ପିନ୍ଧିଛନ୍ତି । ଆମ ପାଖକୁ ସରକାରୀ କାର୍ଯ୍ୟକ୍ରମ ଆସିନାହିଁ; କିନ୍ତୁ ସେ ସରକାରୀ ଗସ୍ତରେ ସମ୍ବଲପୁର ଯିବା ବାଟରେ ହଠାତ୍ ଦୟାକରି ଦେଖା ଦେଇଛନ୍ତି । ତେଣୁ ଆମେ ତୋରଣ କରିନାହୁଁ କିମ୍ବା ପୂର୍ବ ଫାଟକରେ ଫୁଲମାଳ ଧରି ଅନାଇ ରହିନାହୁଁ । ଏହି ଅଯାଚିତ ଯୋଗଦାନ କଲେଜ ଜୀବନରେ ଇତିହାସ ଓ ଶିକ୍ଷାର୍ଥୀଙ୍କ ପକ୍ଷରେ ଚିର ସ୍ମରଣ; କିନ୍ତୁ ବାପିଙ୍କର ଧାରାବାହିକ ଅଭିଯାନ ମୁଁ ଦେଖିଛି ଓ ଶୁଣିଛି ମଧ୍ୟ ସେ ଏହିପରି ପଶିଆସନ୍ତି, ଜ୍ଞାନ-ପିପାସାକୁ ଉଜ୍ଜୀବିତ କରାଇ ଦିଅନ୍ତି, କର୍ମତତ୍ପରତାକୁ ଶାଣିତ କରନ୍ତି ଓ ଜଡ଼ତାଜନିତ ପରାହତକୁ ସାହସର ସହିତ ଧକ୍କା ଦିଅନ୍ତି । ଅନେକ କ୍ଷେତ୍ରରେ ଅଟକାଇ ନେବାରେ ସଫଳ ହୋଇଛନ୍ତି ।

କୃଷି ମନ୍ତ୍ରୀ ହତାଆରର ହିସାବ କରୁଥାନ୍ତି । ତାଙ୍କୁ ଚିନ୍ତା ଦେଖାଯାଉଥାନ୍ତି, କାରଣ ସେ ତାଙ୍କ ମନ୍ତ୍ରଣାଳୟରେ ବିବରଣୀ ବିଧାନସଭାରେ ଉପସ୍ଥାପନ କରିବେ । ଏତିକିବେଳେ ଖାଦ୍ୟ ମନ୍ତ୍ରୀ ସମୂହ ଭୋଜନରେ ଯୋଗ ଦେବା ପାଇଁ ଓଡ଼ିଶାର ମୁଖ୍ୟମନ୍ତ୍ରୀଙ୍କୁ ନିମନ୍ତ୍ରଣ କରିଛନ୍ତି । ସାନନ୍ଦ ସ୍ୱୀକୃତ ପରେ ପିଲାଙ୍କ ଗହଣରେ ଅମେ ଆମ୍ବତୋଟା ଭିତରେ ଛାତ୍ରାବାସ ଆଡ଼େ ଆଗଉଛୁଁ । ଆନନ୍ଦରେ ଆଲୋଚନା ଚାଲିଛି । ଆମର ହଠାତ୍ ଦୃଷ୍ଟି ପଡ଼ିଲା ଶ୍ରୀ ଯଦୁମଣି ମଙ୍ଗରାଜଙ୍କ ଉପରେ । ସେ ଛାତ୍ରାବାସ

ପାଖ ଫାଟକ ବାଟେ ପଶି କୌଣସି ବ୍ୟକ୍ତିଗତ କାର୍ଯ୍ୟରେ ଆମ ଆଡ଼େ ମୁହାଁଇଛନ୍ତି । ଦୁଇ ଜନନାୟକଙ୍କ ମଧ୍ୟରେ କଥୋପକଥନ ହୁଏ ଓ ଉଭୟେ ଆମ ଆମନ୍ତ୍ରଣ ରକ୍ଷା କରି ଭୋଜନାଳୟ ଆଡ଼କୁ ଅଗ୍ରସର ହେଉଥାନ୍ତି । ରଙ୍ଗ ରହସ୍ୟ, ଥଟ୍ଟାତାମସା ଚାଲିଥାଏ । ସେ ଦିନର ଭୋଜନ ଯାଇତାଇ ସରୁଦିନିଆ ହୋଇଥାଏ । ଏହି ଦୁଇ ଅତିଥି ଆମର ଅପ୍ରତ୍ୟାଶିତ । ସେତେବେଳେ ଭୋଜନାଳୟ ନ ଥାଏ । ସାଧାରଣ ଖୋଲାଜାଗାଟିଏ, ହଷ୍ଟେଲର ପଛ ଓ ରୋଷାଇଘରର ଆଗ ସ୍ଥାନଟିକୁ ସଫା କରିଦିଆଯାଇଥାଏ । ବର୍ଷା ପଡ଼ିଲେ ପିଲେ ଖାଇବା ଜାଗାରୁ ଉଠି ପଳାନ୍ତି ବା ଠିଆ ହୋଇ ଗୁଣ୍ଡେ ଦିଗୁଣ୍ଡା ଗିଳିପକାନ୍ତି । ଅତିଥିଦ୍ୱୟ ପିଲଙ୍କ ଗହଣରେ ବସିପଡ଼ିଲେ । ପିଲଙ୍କ ହାତରନ୍ଧା ଖାଦ୍ୟ ଓ ପିଲଙ୍କ ପରଷା, ସେମାନେ ଆନନ୍ଦରେ ବିଭୋର, ଭୋଜନ ବେଳରେ ଯଦୁମଣି ବାବୁଙ୍କ ହାସ୍ୟରସ ଓ କୌତୁକିଆ ଗପ ସମସ୍ତେ ଉପଭୋଗ କରୁଥାନ୍ତି । ବାସ୍ତବରେ ନବ ବାବୁ ପେଟଫଟା ହସରେ ଫାଟି ପଡ଼ୁଥାନ୍ତି । ସେତେବେଳେ ଉଭୟଙ୍କ ମଧ୍ୟରେ ରାଜନୈତିକ ବିରୋଧ ଥାଏ, ତଥାପି ଅମାୟିକତା, ଆନନ୍ଦାନୁଭୂତି ଓ ନିଷ୍କପଟ ବନ୍ଧୁତ୍ୱ ସମସ୍ତ ସୀମା ଲଂଘନ କରିଥାଏ ।

ବାପି ହେଉଛନ୍ତି ଏପରି ଏକ ନିର୍ଲିପ୍ତ ବ୍ୟକ୍ତି, ରାଜନୀତିର କ୍ଷମତା ମଧ୍ୟରେ ସେ ଜନଜୀବନ ସହିତ ନିଜକୁ ସଂଶ୍ଳିଷ୍ଟ କରିଛନ୍ତି । କିଏ ବିଶ୍ୱାସ କରିବ, ସେ ମନ୍ତ୍ରୀତ୍ୱକୁ ଛାଡ଼ି ପୁଣି ମନ୍ତ୍ରୀତ୍ୱକୁ ଗ୍ରହଣ କରିବାର ମଧ୍ୟବର୍ତ୍ତୀ କାଳରେ ଜଣେ ସରକାରୀ କର୍ମଚାରୀ ଯାହା କରିବାର କଥା, ସେ ତାହା ହିଁ କରିବେ ? ସେ ୧୯୪୯ ମସିହା ଜାନୁୟାରୀ ମାସରେ ମୌଳିକ ଶିକ୍ଷା ସଂଗଠକ ଓ ମୌଳିକ ଶିକ୍ଷା ପରିଷଦର ସମ୍ପାଦକ ଦାୟିତ୍ୱ ବହନ କରିଛନ୍ତି ଓ ୧୯୫୦ ମସିହା ଏପ୍ରିଲ ମାସଯାଏଁ ଏହା କରିଛନ୍ତି । ଶିକ୍ଷକ ମହଲରେ ବିଶେଷରେ ତଥା ଯୁବପ୍ରାଣରେ ଏହା ନିଶ୍ଚୟ ଚହଲ ସୃଷ୍ଟି କରିଥିବ; କିନ୍ତୁ ସେ ସେପରି, ସେହିପରି ଆଗେଇ ଚାଲିଛନ୍ତି । ପାଦ ଟଳଟଳ ହୋଇନାହିଁ କିମ୍ବା ସେ ପଛେଇ ନାହାନ୍ତି । ସରକାରୀ ଓ ବେସରକାରୀ ମୌଳିକ ଶିକ୍ଷାନୁଷ୍ଠାନର ଗଠନମୂଳକ କର୍ମୀ ଓ ପରିଚାଳକଙ୍କ ମଧ୍ୟରେ ଯେଉଁ ବ୍ୟବଧାନ, ଅସାମଞ୍ଜସ୍ୟ ଓ ଅବିଶ୍ୱାସ (ବାସ୍ତବ ହେଉ ବା କଳ୍ପିତ ହେଉ) ରହିଛି, ତାହା ଏକ ରଚନାତ୍ମକ ଦିଗରେ ନୂତନ ମୋଡ଼ ନେଇଛି । ଏକ ଦିଗରେ ସ୍ୱଚ୍ଛନ୍ଦ ଆତ୍ମପ୍ରକାଶର ବାତାବରଣ ସୃଷ୍ଟି ହୋଇଥିବ ଓ ଅପର ଦିଗରେ ଶିକ୍ଷାରେ ପରୀକ୍ଷାର ସଫଳତା ପାଇଁ ସମ୍ଭାବନା ଉଜ୍ଜ୍ୱଳ ଦିଶୁଥିବ । ବାକ୍‌ରୁଦ୍ଧତାର ରୂପ କୋହଳ ହୋଇଥିବ । ବାଲେଶ୍ୱର ଜିଲ୍ଲାର ଦୁର୍ଗାଦେବୀ, ଡଗରା, ଝାଡ଼ପିପ୍‌ପଳ, କଟକ ଜିଲ୍ଲାର ଆଦମ୍‌ପୁର, ପୁରୀ ଜିଲ୍ଲାର ଅଲପୁଆ ଇତ୍ୟାଦି ସ୍ଥାନରେ ସ୍ଥାପିତ ମୌଳିକ ସ୍କୁଲ ସରକାରୀ ନିୟନ୍ତ୍ରଣ ମାନିନେଇଥିଲେ ହେଁ ଅନେକ ବେସରକାରୀ ମୌଳିକ ବିଦ୍ୟାଳୟ ନିଜ ନିଜର ସ୍ୱାତନ୍ତ୍ର୍ୟକୁ ସୁଦୃଢ଼ ରଖିଛନ୍ତି । ମୌଳିକ ଶିକ୍ଷା ସଂଗଠକଙ୍କ କାର୍ଯ୍ୟାଳୟକୁ ରାଜ୍ୟ ଶିକ୍ଷା ନିର୍ଦ୍ଦେଶକଙ୍କ କାର୍ଯ୍ୟାଳୟଠାରୁ ପୃଥକ୍ କରି ଅନୁଗୁଳରେ ଅବସ୍ଥାପିତ କରିବା ଦ୍ୱାରା ଶିକ୍ଷା ସହାୟକ ପରମ୍ପରା ସୃଷ୍ଟି କରାଯାଇଛି । ଘରଦ୍ୱାରର ନିର୍ମାଣ, ମରାମତି, ରକ୍ଷଣାବେକ୍ଷଣ, ତଥା ଜମିବାଡ଼ି ଆଦି ବିଷୟରେ ତତ୍ତ୍ୱ ନେବା ପାଇଁ ତାଲିମପ୍ରାପ୍ତ କର୍ମୀଙ୍କୁ ନିଯୁକ୍ତ ଦିଆଯାଇଛି । ଶିକ୍ଷାନୁଷ୍ଠାନର ପରିଦର୍ଶନରେ ନୂତନ ଦୃଷ୍ଟିକୋଣ ରୂପ ନେଇଛି । ନିୟନ୍ତ୍ରଣ ବର୍ଜିତ ନିର୍ଭୀକ ଦୃଷ୍ଟିକୋଣ ସବଙ୍ଗ ଉଙ୍କି ମାରୁଛି । ପ୍ରଶ୍ନ ହେଉଛି, ସେ କାହିଁକି ଏହି ଭୂମିକା ଗ୍ରହଣ କଲେ ? ସାମାଜିକ ପୁନର୍ଗଠନର ମାଧ୍ୟମ ହେଉଛି ଶିକ୍ଷା, ଏଥିରେ ତାଙ୍କର ପୂର୍ଣ୍ଣ ବିଶ୍ୱାସ ଥିଲା । ଏହା ଜଣାପଡ଼େ । ସେ କହିଛନ୍ତି :

> "ସରକାର ବିଶ୍ୱାସ କରନ୍ତି ଯେ ମଣିଷର ବଞ୍ଚିବାର ଅଧିକାର ଅଛି; କିନ୍ତୁ ଶିକ୍ଷା ପାଇବାର ଅଧିକାରରୁ ସେ ବଞ୍ଚିତ । ଶିକ୍ଷାକୁ ଗୌଣ କରି ରଖିବା ସରକାରଙ୍କ ଉଦ୍ଦେଶ୍ୟ । ସମାଜରେ ଶିକ୍ଷାର ମହତ୍ତ୍ୱ ବଢ଼ାଇବା ପାଇଁ ସରକାରଙ୍କର ଏ ଚରିତ୍ର ବଦଳିବା ଦରକାର ।"

(ସାପ୍ତାହିକ ପତ୍ରିକା "ସର୍ବୋଦୟ", ନବକୃଷ୍ଣ ଚୌଧୁରୀ ସ୍ମୃତି ବିଶେଷାଙ୍କ, ଅଗଷ୍ଟ ୧୬, ୧୯୮୪ରୁ ଉଦ୍ଧୃତ)

"ସମାଜରେ ଶିକ୍ଷାର ମହତ୍ତ୍ୱ ବଢ଼ାଇବା" ସଙ୍କଳ୍ପ ସେ ନେଲେ । ସରକାରଙ୍କ ଚରିତ୍ର ବଦଳାଇବାର ଭୂମିକା ହେଲା ବାପିଙ୍କର । ହିନ୍ଦୁସ୍ଥାନୀ ତାଲିମ୍ ସଂଘର ସମ୍ପାଦକ ଇ. ଡବ୍ଲିଉ ଆର୍ଯ୍ୟନାୟକମ୍ ଆସନ୍ତି, ପରାମର୍ଶ ଦିଅନ୍ତି । ରାଜ୍ୟ ମୌଳିକ ଶିକ୍ଷା ପରିଷଦ ତରଫର ବୈଠକରେ ଯୋଗ ଦିଅନ୍ତି । ଆଶା ଦେବୀ ଆର୍ଯ୍ୟନାୟକମ୍ ଓ ମାର୍ଜୋରି ସାଇକସ ମଧ୍ୟ ଆସନ୍ତି, ବାପି ଓ ନୃମାଙ୍କ ଆତିଥ୍ୟ ଗ୍ରହଣ କରନ୍ତି । ଏ ସବୁ ମାମୁଲି କଥା, ଅନୁଗୁଳରେ ଅଖିଳ ଭାରତ ସର୍ବୋଦୟ ସମ୍ମିଳନୀ ଓ ତତ୍-ସହିତ ମୌଳିକ ଶିକ୍ଷା ସମ୍ମିଳନୀ ୧୯୫୦ ମସିହାରେ ଅନୁଷ୍ଠିତ ହୁଏ । ବାପି ସେଠି ନୀରବ କର୍ମୀ । ତଳେଇ ତାଟି ମୁଣ୍ଡରେ ବୁହନ୍ତି । ଅତିଥିମାନଙ୍କ ଗଣ୍ଠିଲି ସେ କାନ୍ଧରେ ଆଣନ୍ତି । ସମାଜରେ ଏହି ଆଦର୍ଶର ମାନ୍ୟତା ବଢ଼ୁ । ସେହି ଜୀବନର ଛିଟିକି-ମାନ ଅଳ୍ପ ଚିତାଇ ଚିତାଇ ଆମ ଜୀବନରେ ଗୁନ୍ଥି ଦେଉ । ଏହି ହେଉଛି, ସେହି ଚରିତ ଅଧ୍ୟୟନର ଆହ୍ୱାନ ।

# ବାଡ଼ି ବାଇଗଣ

## ଡକ୍ଟର ବେଣୁଧର ପ୍ରଧାନ

ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀଙ୍କ ସହିତ ମୋର ପ୍ରଥମେ ସାକ୍ଷାତ ହୋଇଥିଲା ଏକ ବାଇଗଣ କ୍ଷେତରେ । ସେତେବେଳେ ଶ୍ରୀଯୁକ୍ତ ଚୌଧୁରୀ ଥାଆନ୍ତି ଓଡ଼ିଶାର ମୁଖ୍ୟମନ୍ତ୍ରୀ; କିନ୍ତୁ ତାଙ୍କ ସହିତ ଯେଉଁ ବାଇଗଣ କ୍ଷେତରେ ସାକ୍ଷାତ ହେଲା, ତାହା କୌଣସି ସୁଦୂର ମଫସଲର ବାଇଗଣ କ୍ଷେତ ନୁହେଁ ବା ସରକାରୀ ପ୍ରଦର୍ଶନୀ ବାଇଗଣ କ୍ଷେତ ନୁହେଁ, ଯାହାକୁ ମୁଖ୍ୟମନ୍ତ୍ରୀ ମହୋଦୟ ଉଦ୍‌ଘାଟନ କରିବାକୁ ଯାଇଥାନ୍ତି । ସେ କ୍ଷେତଟି ଖୋଦ ନୂଆ ରାଜଧାନୀର ବକ୍ଷଦେଶରେ, ମୁଖ୍ୟମନ୍ତ୍ରୀଙ୍କ ସରକାରୀ ବାସଭବନ ସଂଲଗ୍ନ ବଗିଚାରେ ।

୧୯୫୨ ମସିହା । ମୁଁ ସେତେବେଳେ ଏଲାହାବାଦ ବିଶ୍ୱବିଦ୍ୟାଳୟର ଛାତ୍ର । ପୂଜାଛୁଟି ପରେ ବିଶ୍ୱବିଦ୍ୟାଳୟକୁ ଫେରୁଥାଏ । ସେ ବର୍ଷ ବନ୍ୟା ହୋଇ ପରିବାରର ମୁଖ୍ୟ ଆୟକାରୀ ଖୋଟ ଫସଲ ପ୍ରାୟ ସମ୍ପୂର୍ଣ୍ଣ ନଷ୍ଟ ହୋଇଯାଇଥାଏ । ବର୍ଷଟିଏ କିପରି ରାଜ୍ୟ ବାହାର ବିଶ୍ୱବିଦ୍ୟାଳୟରେ କଟାଇବି, ସେ ଚିନ୍ତା ମୁଣ୍ଡ ଉପରେ । ଯଦି ଉଚ୍ଚଶିକ୍ଷା ନିମିତ୍ତ ସରକାରୀ ଋଣ ମିଳନ୍ତା, ତାହେଲେ ବର୍ଷଟିଏ ଚଳିଯାଆନ୍ତା । ତେଣୁ ମନସ୍ଥ କରି ଏଲାହାବାଦ ଫେରିବା ବାଟରେ ଏ ବିଷୟରେ କିଛି ଉଦ୍ୟୋଗ କରିବି ।

ମୋର ବଦ ଅଭ୍ୟାସଟିଏ ସିଧା ରାସ୍ତାରେ ଚାଲିବା, ରାଜପଥରେ ଚାଲିବା । ହାଇୱେରେ ଚାଲିବା, ବାଏଲେନ୍‌ରେ ନୁହେଁ । ତେଣୁ ଏହା ବ୍ୟତୀତ ରାଜନୀତି ବିଜ୍ଞାନର ଛାତ୍ର । ସରକାର ଅର୍ଥ କ'ଣ, ବିଶେଷତଃ ସଂସଦୀୟ ଗଣତନ୍ତ୍ରରେ ? ମୁଖ୍ୟମନ୍ତ୍ରୀ ତ ସରକାର । ଯଦି ସରକାରୀ ଋଣ ଆବଶ୍ୟକ, ତାହାହେଲେ ସରକାରଙ୍କୁ ଭେଟିବି । ମୁଖ୍ୟମନ୍ତ୍ରୀଙ୍କୁ ଭେଟିବି ।

ରେଲଗାଡ଼ିରେ ଭୁବନେଶ୍ୱର ଯାଇଁ, ଜଣେ ଅଚିହ୍ନା ରେଳଯାତ୍ରୀଙ୍କ ସହିତ ବନ୍ଧୁତା ଜମେଇ ରାତି ପ୍ରାୟ ୯ ଘଣ୍ଟା ସମୟରେ ଭୁବନେଶ୍ୱରରେ ପହଞ୍ଚି ତାଙ୍କ ମାମୁଙ୍କ ଘରେ ଆଶ୍ରୟ ନେଇ ପରଦିନ ପ୍ରତ୍ୟୁଷରୁ ବାହାରିଲି ମୁଖ୍ୟମନ୍ତ୍ରୀଙ୍କ ଦର୍ଶନରେ । ମନରେ ଆଶଙ୍କା ମୁଖ୍ୟମନ୍ତ୍ରୀଙ୍କ ସାକ୍ଷାତ ପାଇବି ତ ? ମୁଖ୍ୟମନ୍ତ୍ରୀଙ୍କ ସରକାରୀ ବାସଭବନ, ଦରଓ୍ୱାନ, ଚପରାଶୀ, ପି. ଏ. ପ୍ରାଇଭେଟ ସେକ୍ରେଟେରୀ, କେତେ ଧନ୍ଦା । ଏତେ ପାର୍ଶ୍ୱ ଦେବତାଙ୍କୁ ସନ୍ତୁଷ୍ଟ କରି ପାଇଲେ ସିନା ।

ମୁଖ୍ୟମନ୍ତ୍ରୀଙ୍କ ସରକାରୀ ବାସଭବନର ମୁଖ୍ୟ ଫାଟକ ପାଖରେ ରିକ୍‌ସାରୁ ଓହ୍ଲାଇଲି ପରେ ମୋର ଦୃଷ୍ଟି ଆକର୍ଷଣ କଲେ ଜଣେ ସଫାଖଦୀ ଓ ଖଦଡ଼ର ହାତକଟା ଫତେଇ ପିନ୍ଧା ବ୍ୟକ୍ତି । ସେ ଘୂରି ବୁଲୁଛନ୍ତି ମୁଖ୍ୟମନ୍ତ୍ରୀଙ୍କ ସରକାରୀ ବାସଭବନ ସଂଲଗ୍ନ ବାଇଗଣ କ୍ଷେତର ଧାରେ ଧାରେ ।

ଅକ୍ଟୋବର ମାସର ଶେଷଭାଗ । ଜାଡ଼ଶୀତ ଆରମ୍ଭ ହୋଇଯାଇଥାଏ । ସକାଳର କଅଁଳ ଖରା ଆମୋଦପ୍ରଦ, ତଥାପି ମୁଁ ବା କାହିଁକି କଳ୍ପନା କରିବି ମୁଖ୍ୟମନ୍ତ୍ରୀ ମହୋଦୟ ବାଇଗଣ କ୍ଷେତ ଧାରେ ଧାରେ ବୁଲି ଖରା ପୋଉଁଛନ୍ତି । ମୁଖ୍ୟମନ୍ତ୍ରୀ ନିଶ୍ଚିତଭାବେ ମହାଶୟ ହୋଇଥିବେ, ଅଥବା ଅଫିସ ରୁମରେ ବସି ପୂର୍ବଦିନର ବାକି ଫାଇଲ ଶେଷ କରୁଥିବେ ।

କିନ୍ତୁ ଭଦ୍ରବ୍ୟକ୍ତି ଜଣକ ମୋ ଚିନ୍ତାରେ ବାଧାଦେଇ ପ୍ରଶ୍ନ କଲେ କାହାକୁ ଖୋଜୁଛନ୍ତି ? ଉତ୍ତର ଦେଲି "ମୁଖ୍ୟମନ୍ତ୍ରୀଙ୍କ ସହିତ ସାକ୍ଷାତ କରିବାକୁ ଆସିଛି ।" ଭଦ୍ରବ୍ୟକ୍ତି ପ୍ରଶ୍ନ କଲେ "କ'ଣ କାମ ଅଛି ?" ମୁଁ ଅନୁଭବ କଲି ମୁଖ୍ୟମନ୍ତ୍ରୀଙ୍କର କେହି ଆତ୍ମୀୟ ହୋଇଥିବେ । ତେଣୁ ମୋର ଉଦ୍ଦେଶ୍ୟଟି ତାଙ୍କୁ ବୁଝାଇଦେଲି । ଆଶା କରିଥିଲି ଯେ ମୁଖ୍ୟମନ୍ତ୍ରୀ ମହୋଦୟଙ୍କ ନିକଟରେ ମୋ ତରଫରୁ ଓକିଲାତି କରିବେ; କିନ୍ତୁ ଭଦ୍ରବ୍ୟକ୍ତି ଜଣକ ଯେତେବେଳେ ମୋତେ ଋଣ ସମ୍ବନ୍ଧରେ ସରକାରୀ ନୀତି ଜଣାଇଦେଲେ, ସେତେବେଳେ ମୋର ହୋସ ଆସିଲା, "ଇଏ କ'ଣ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ ?"

ଋଣ ସମ୍ବନ୍ଧରେ ସରକାରୀ ନୀତ ଯାହା ଶୁଣିଲି, ଡହିଁରୁ ଅନୁଭବ କଲି ଯେ କିଛିଦିନ ଭୁବନେଶ୍ୱରରେ ଧାଁଧପଡ଼ ନ କଲେ, ଋଣ ପାଇବା ନମିତ୍ତ ପ୍ରାଥମିକ ପଦକ୍ଷେପ ନେଇହେବ ନାହିଁ । ଏହା ବ୍ୟତୀତ ଋଣ ଯେତେବେଳେ ମିଳିବ, ସେତେବେଳକୁ ପ୍ରାପ୍ତ ଶିକ୍ଷାବର୍ଷଟି ଶେଷ ହେବାକୁ ବସିଥିବ । ତେଣୁ ନିରୁପାୟ ହୋଇ ଫେରିଲି । ତଥାପି ମନରେ ସେହି ଚିନ୍ତା ରହିଗଲା, ବାଇଗଣ କ୍ଷେତର ଧାରେ ଧାରେ ମୁଖ୍ୟମନ୍ତ୍ରୀ ।

ଅବଶ୍ୟ ଉଲ୍ଲିଖିତ ଘଟଣାରୁ ଅନୁମାନ କରିଯାଇପାରେ ଯେ ଶ୍ରୀଯୁକ୍ତ ଚୌଧୁରୀଙ୍କର ବାଇଗଣ ଏକ ପ୍ରିୟ ପରିବା ବା ତାଙ୍କର ଟଟକା ପରିବା ଖାଇବାରେ ବିଶ୍ୱାସ ଥିଲା । ବିଶେଷତଃ ଜଣେ ଗାନ୍ଧୀବାଦୀ ହିସାବରେ ପନିପରିବା ଦିଗରେ ଆତ୍ମନିର୍ଭରଶୀଳତା ଉପରେ ତାଙ୍କର ବିଶ୍ୱାସ ଥିଲା ବୋଲି ମଧ୍ୟ କୁହାଯାଇପାରେ । ତେଣୁ ସେ ବଗିଚାରେ ଗୋଲାପ ଗଛ ନ କରି ବାଇଗଣ ଗଛ କରିଉଥିଲେ; କିନ୍ତୁ ପ୍ରକୃତ ତଥ୍ୟ ହେଲା ତାଙ୍କର ଅଗାଧ ବିଶ୍ୱାସ ଥିଲା ବାଡ଼ି ବାଇଗଣରେ, ପୋଥିବାଇଗଣରେ ନୁହେଁ ।

ଶ୍ରୀଯୁକ୍ତ ଚୌଧୁରୀଙ୍କର ଅଧ୍ୟୟନ ପିପାସା ଥିଲା ଅତ୍ୟନ୍ତ ବଳବତ୍ତର । ନୂଆ ଉପାଦେୟ ପୁସ୍ତକଟିଏ ପ୍ରକାଶିତ ହେବାର ସମ୍ବାଦ କୌଣସି ସୂତ୍ରରୁ ପାଇଲେ ସେହି ପୁସ୍ତକଟିଏ କୌଣସି ପ୍ରକାର ସଂଗ୍ରହ କରି ପାଠ ନ କଲା ପର୍ଯ୍ୟନ୍ତ ଅସୁସ୍ଥ ଅନୁଭବ କରିଥାନ୍ତି । ମୋର କେତେବର୍ଷ ତଳର କଥା ମନେପଡ଼ୁଛି । ତା'ର କିଛିଦିନ ପୂର୍ବରୁ ମୋର ପୂଜ୍ୟ ଅଧ୍ୟାପକ ଡକ୍ଟର ସଦାଶିବ ମିଶ୍ରଙ୍କ ମୁଖରୁ ମୁଁ ପ୍ରଥମେ ସେ ପୁସ୍ତକଟି ସମ୍ବନ୍ଧରେ ଶୁଣିବାକୁ ପାଇଲି । ସେ ଅଳ୍ପ ଦିନ ପୂର୍ବରୁ ଆମେରିକା ଗସ୍ତରୁ ଫେରିଥାନ୍ତି । ଅନୁମାନ କଲି ପୁସ୍ତକ ଖଣ୍ଡିକ ତାଙ୍କ ନିକଟରେ ନିଶ୍ଚୟଭାବେ ଥିବ । ତାଙ୍କୁ ମାଗିବାରୁ ସେ ମୋତେ କହିଥିଲେ, "ନବ ବାବୁ ପଢ଼ିବାକୁ ନେଇଛନ୍ତି ।" ଶ୍ରୀଯୁକ୍ତ ଚୌଧୁରୀ ସେଠାରେ ତାଙ୍କ ଜାମାତା ଶ୍ରୀ ନାରାୟଣ ଦେଶାଇଙ୍କ ବସାରେ ଅବସ୍ଥାନ କରୁଥାଆନ୍ତି । ଅଧ୍ୟାପକ ଅମୃତାନନ୍ଦ ଦାସଙ୍କର ଗାନ୍ଧୀ ଅର୍ଥନୀତି ଉପରେ ନୂଆ ହୋଇ ଖଣ୍ଡିଏ ବହି ବାହାରିଥାଏ । ଶ୍ରୀଯୁକ୍ତ ଚୌଧୁରୀଙ୍କ ସହିତ ସମୟେ ସମୟେ ସାକ୍ଷାତ ହୁଏ । ସେ ମୋତେ ପ୍ରଶ୍ନ କଲେ ମୁଁ ପୁସ୍ତକ ଖଣ୍ଡି ପାଠ କରିଥିବା ବିଷୟରେ । ମୁଁ ସେ ସମ୍ବନ୍ଧରେ ମୋର ଅଜ୍ଞତା ପ୍ରକାଶ କଲି । କିନ୍ତୁ କିଛି ଦିନ ପରେ ଦେଖିଲି ସେ ପୁସ୍ତକ ଖଣ୍ଡି ଅଧ୍ୟୟନ କରୁଛନ୍ତି । ଏହିଭଳି ଗାନ୍ଧୀଜୀ ଅର୍ଥନୀତି, ସମାଜନୀତି, ରାଜନୀତି ଇତ୍ୟାଦି ଉପରେ ବହୁ ପୁସ୍ତକ ସମ୍ବନ୍ଧରେ ସେ କହନ୍ତି, ଯାହା ମୁଁ ପାଠକରି ନ ଥାଏ ।

କିନ୍ତୁ ଏହିଠାରେ ମନେରଖିବାକୁ ପଡ଼ିବ ଯେ ଶ୍ରୀଯୁକ୍ତ ଚୌଧୁରୀଙ୍କ ଅଧ୍ୟୟନ କେବଳ ଅଧ୍ୟୟନ ଲାଳସା ପୂରଣରେ ସୀମାବଦ୍ଧ ନ ଥିଲା । ଅଧ୍ୟୟନ ଜନିତ ଜ୍ଞାନକୁ ବାସ୍ତବରେ ଜୀବନଦର୍ଶନରେ ପ୍ରୟୋଗ କରିବାକୁ ପଡ଼ିବ, ଜୀବନରେ ପ୍ରତିଫଳିତ କରିବାକୁ ପଡ଼ିବ ଓ ରାଷ୍ଟ୍ରୀୟ ଆଇନ କାନୁନରେ ପରିଣତ କରିବାକୁ ହେବ. ତାହା ଥିଲା ତାଙ୍କର ଧ୍ୟେୟ । ତେଣୁ ସେ କେବଳ ପୋଥିବାଇଗଣରେ ସନ୍ତୁଷ୍ଟ ନ ରହି ତାକୁ ବାଡ଼ି ବାଇଗଣରେ ପରିଣତ କରିବାକୁ ଚେଷ୍ଟା କରୁଥିଲେ ।

ଏଭଳି ଗୋଟିଏ କଥା ମନେପକାଇବାକୁ ପଡ଼ିବ । ଦିନ ଥିଲା ଯେତେବେଳେ ଦେଶରେ ପ୍ରତ୍ୟହ ଖବରକାଗଜରେ ହେଉ ବା ସଭାସମିତିରେ ହେଉ ସମାଜବାଦ ସମ୍ବନ୍ଧରେ ଶୁଣିବାକୁ ପାଉଥିଲୁ । ଏବେ ଅବଶ୍ୟ ସେ ଶବ୍ଦ ଆଉ ଶୁଣିବାକୁ ମିଳୁନାହିଁ; କିନ୍ତୁ ୧୯୩୪ ମସିହାଠାରୁ ସେହି ଶବ୍ଦଟି ବୁଦ୍ଧିଜୀବୀମାନଙ୍କ ଚିନ୍ତାଧାରାରେ ଏକ ଆନ୍ଦୋଳନ ସୃଷ୍ଟି କରିଥିଲା ଓ ଏକ ପ୍ରଗତିବାଦୀ ବୁଦ୍ଧିଜୀବୀ, ରାଜନୀତିଜ୍ଞ ଓ ସମାଜସେବୀ ଗୋଷ୍ଠୀ ସୃଷ୍ଟି କରିଥିଲା । କିନ୍ତୁ ଓଡ଼ିଶାରେ ସମାଜବାଦ ଚିନ୍ତାଧାରାର ପ୍ରଥମ ଓ ମୁଖ୍ୟ ପ୍ରବକ୍ତା ଶ୍ରୀଯୁକ୍ତ ଚୌଧୁରୀ ଥିଲେ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ମାର୍କସବାଦ ଉପରେ ତାଙ୍କ ଅଧ୍ୟୟନ ଥିଲା ଅତ୍ୟନ୍ତ ଗଭୀର । ମାର୍କସଙ୍କ ଭାବଧାରା ଦ୍ୱାରା ପ୍ରଭାବିତ ହୋଇ ଅର୍ଦ୍ଧଶତାବ୍ଦୀ ତଳେ ୧୯୩୪ ମସିହାରେ ଯେତେବେଳେ ପ୍ରଗତିବାଦୀ କଂଗ୍ରେସ ନେତୃବୃନ୍ଦ, ସମାଜବାଦୀ ଦଳ ଗଠନ କଲେ, ସେତେବେଳେ ଓଡ଼ିଶାରେ ସେହି ସମାଜବାଦୀ ଦର୍ଶନ ଓ ଦଳର ମୁଖ୍ୟ ଧାରକ ଓ ବାହକ ହୋଇପଡ଼ିଲେ ଶ୍ରୀଯୁକ୍ତ ଚୌଧୁରୀ । ତାଙ୍କର ବାସଭବନରେ ଭାରତ ବିଖ୍ୟାତ ଉଚ୍ଚ ସମାଜବାଦୀ ନେତୃବୃନ୍ଦଙ୍କର ମିଳନ ହେଉଥିଲା । ସେହିଠାରେ ପ୍ରସ୍ତୁତ ହେଉଥିଲା ଦଳର କାର୍ଯ୍ୟକ୍ରମର ଚିଠା । ସେହିଠାରେ ନିର୍ଣ୍ଣୀତ ହେଉଥିଲା ଭବିଷ୍ୟତ ପଦକ୍ଷେପର ଖସଡ଼ା । କେବେ ଶ୍ରୀଯୁକ୍ତ ଚୌଧୁରୀ ଥିଲେ କର୍ମଯୋଗୀ, ପୋଥିବାଇଗଣରେ ନୁହେଁ; ଦଳଗଠନ, କାର୍ଯ୍ୟକ୍ରମର ଚିଠା ପ୍ରସ୍ତୁତ ଓ ପଦକ୍ଷେପର ଖସଡ଼ା ପ୍ରସ୍ତୁତରେ ତାଙ୍କ ସମାଜବାଦୀ ମନ ସନ୍ତୁଷ୍ଟ ରହୁ ନ ଥିଲା । ସେ ଚାହୁଁଥିଲେ ସେମାନଙ୍କର ପ୍ରତିଫଳନ ଜୀବନରେ, ସମାଜରେ, ରାଷ୍ଟ୍ରୀୟ ନିୟମ କାନୁନରେ ।

ଜୀବନଦର୍ଶନକୁ ଜୀବନରେ ପ୍ରୟୋଗ କରିବା ବହୁ ସମୟରେ ସମ୍ଭବ ହୋଇପାରେ ନାହିଁ । ଜୀବ ସମାଜବାଦୀ ଓ ସାମ୍ୟବାଦୀ ଦର୍ଶନ ବହୁ ବୁଦ୍ଧିଜୀବୀଙ୍କ ପକ୍ଷେ ଜୀବନ ଦର୍ଶନ ଭାବେ ଗୃହୀତ; କିନ୍ତୁ ନିଜ ନିଜ ଜୀବନରେ ତା'ର ପ୍ରତିଫଳନ କ୍ୱଚିତ୍ ଦେଖାଯାଇଥାଏ । ବିଶେଷତଃ ଯେଉଁମାନେ ରାଜନୈତିକ କ୍ଷମତା ହାସଲ କରନ୍ତି, ସେମାନେ ବହୁ କ୍ଷେତ୍ରରେ ବିଶେଷତଃ ରାଷ୍ଟ୍ରୀୟ ନୀତି ନିୟମ କ୍ଷେତ୍ରରେ ତା'ର ପ୍ରୟୋଗ ଅବଶ୍ୟ କରିଥାନ୍ତି; କିନ୍ତୁ ନିଜ ଜୀବନରେ ସେହି ନୀତି ନିୟମ ପ୍ରୟୋଗ କରିବା କଷ୍ଟସାପେକ୍ଷ ହୋଇପଡ଼େ ।

ସମାଜବାଦୀ ଓ ସାମ୍ୟବାଦୀର ଜୀବନ ଏକ ତ୍ୟାଗ ତିତିକ୍ଷାମୟ ଜୀବନ । ଏହା ଏକ ସୁବିଧା ଉପଭୋଗର ଜୀବନ ନୁହେଁ, ସୁବିଧା ସୁଯୋଗ ବିସର୍ଜନର ଜୀବନ । ସମାଜର ସମସ୍ତେ, ଜନସାଧାରଣ, ଯେତିକି ସୁବିଧା ସୁଯୋଗ ଉପଭୋଗ କରିବେ, ଜଣେ ପ୍ରକୃତ ସମାଜବାଦୀ ବି ସେତିକି ଉପଭୋଗ କରିବ । ସମାଜର ନିଜର କ୍ଷମତା ଅନୁସାରେ ସେବା କରି ସେ ଆହରଣ କରିବ କେବଳ ନିଜର ଆବଶ୍ୟକତା, ଏପରିକି ବ୍ୟକ୍ତିଗତ ସଞ୍ଚୟଶୀଳତା ମଧ୍ୟ ପ୍ରକୃତ ସମାଜବାଦୀ ତତ୍ତ୍ୱର ବିରୋଧୀ ।

ଆମ ଦେଶରେ ଦୃଷ୍ଟିଗୋଚର ହୁଏ, ବହୁବ୍ୟକ୍ତି ସାମ୍ୟବାଦୀ ଓ ସମାଜବାଦୀ ଦର୍ଶନର ବହୁ ତର୍ଜମା କରନ୍ତି । ତା ଉପରେ ବକ୍ତୃତାମାନ ଦିଅନ୍ତି, ତା'ର ଉପାଦେୟତା ପ୍ରତିପାଦନ କରନ୍ତି । କିନ୍ତୁ ଜୀବନରେ ସେହି ଦର୍ଶନ ପ୍ରୟୋଗର ଧାର ଧାରନ୍ତି ନାହିଁ । ଦେଶର ଶତକଡ଼ା ୬୦ ଭାଗ ବ୍ୟକ୍ତି ଦାରିଦ୍ର୍ୟର ସୀମାରେଖା ତଳେ ଥିବେ ମଧ୍ୟ, ଦାରିଦ୍ର୍ୟମୟ, ଅଭାବ ଅନଟନମୟ ଜୀବନ ଯାପନ କରୁଥିଲେ ମଧ୍ୟ ସାମ୍ୟବାଦ ଓ ସମାଜବାଦର ଏହି ପ୍ରବକ୍ତାମାନେ ଉଚ୍ଚତର ମାନର ଜୀବନ ଧାରଣ କରନ୍ତି । କୋଟି କୋଟି ଜନତା ବାସହୀନ ଅବସ୍ଥାରେ ଥିଲେ ମଧ୍ୟ ଲକ୍ଷ ଲକ୍ଷ ବ୍ୟକ୍ତି ସେମାନଙ୍କର ଜୀବନ ପୁରୁଷାନୁକ୍ରମିକ ଭାବେ ରାସ୍ତା କଡ଼ରେ ଫୁଟପାଥ ଧାରରେ କଟାଇ ଦେଉଥିବା ସମୟରେ ସେମାନେ ବହୁତଳ ବିଶିଷ୍ଟ ଅଟ୍ଟାଳିକା ନିର୍ମାଣ କରିବାକୁ ଦ୍ୱିଧାବୋଧ କରନ୍ତି ନାହିଁ ।

ଶ୍ରୀଯୁକ୍ତ ଚୌଧୁରୀଙ୍କ ଜୀବନ ଥିଲା ଏକ ପ୍ରକୃତ ସମାଜବାଦୀ ଓ ସାମ୍ୟବାଦୀର ଜୀବନ । ସେ ଜନ୍ମଲାଭ କରିଥିଲେ ଅଟ୍ଟାଳିକାରେ; କିନ୍ତୁ ମୃତ୍ୟୁ ବେଳକୁ ମୁଣ୍ଡ ଗୁଞ୍ଜିବା ନିମନ୍ତେ ନିଜର ବୋଲି କୌଣସି ବାସସ୍ଥାନ ନ ଥିଲା । ସେ କେବଳ ଯେ ସ୍ୱେଚ୍ଛାକୃତ ଭାବେ ମନ୍ତ୍ରୀତ୍ୱ ବା ମୁଖ୍ୟମନ୍ତ୍ରୀତ୍ୱ ପଦ ପରିତ୍ୟାଗ କରିଥିଲେ, ତାହା ନୁହେଁ, ତ୍ୟାଗ କରିଥିଲେ ସମସ୍ତ ସୁଖ, ସମ୍ଭୋଗ, ସମସ୍ତ ସୁବିଧା ସୁଯୋଗ, ପାରିବାରିକ, ପିତୃଅର୍ଜିତ, ବଂଶଗତ ଅଭିମାନ, ଆଭିଜାତ୍ୟମୟ ଜୀବନ । ସବୁ ସେ ବିସର୍ଜନ ଦେଇଥିଲେ ସମାଜବାଦ ଯଜ୍ଞରେ । ସେ ବଞ୍ଚିଥିଲେ ଏ ଦେଶର ଜଣେ ଦରିଦ୍ରତମ ବ୍ୟକ୍ତି ଭଳି । ଯେଉଁ ସୁଖ ସମ୍ଭୋଗ, ସୁଯୋଗ ସୁବିଧା ଜନସାଧାରଣ ପାଇବେ ନାହିଁ, ତାହା ସେ ବା କାହିଁକି ଉପଭୋଗ କରିବେ ? ଜଣେ ସମାଜବାଦୀ ଭାବେ, ସେ ସବୁ ଉପଭୋଗ କରିବାର ତାଙ୍କର କି ଅଧିକାର ଅଛି ? ମାର୍କସବାଦୀ ଓ ଗାନ୍ଧୀବାଦୀ ସମାଜବାଦ ନୀତି ସେ ଜୀବନରେ ପ୍ରୟୋଗ କରିଥିଲେ, ପ୍ରତିଫଳିତ କରିଥିଲେ ନିଖୁଣ ଭାବେ । ସମାଜବାଦର ପୋଥିବାଇଗଣ ତାଙ୍କ ଜୀବନରେ ବାଡ଼ି ବାଇଗଣରେ ପରିଣତ ହୋଇଥିଲା ।

ଆଜିକାଲି ଯେଉଁମାନେ ଗ୍ରାମପଞ୍ଚାୟତରେ ସରପଞ୍ଚଟିଏ ହେଉଛନ୍ତି, ସେମାନେ ମଧ୍ୟ ବ୍ୟକ୍ତିଗତ ବିତ୍ତ ଓ ପାରିବାରିକ ସମୃଦ୍ଧି ବୃଦ୍ଧି ନିମିତ୍ତ ଯେ ଯଥେଷ୍ଟ ସୁଯୋଗ ପାଉଛନ୍ତି ସେତିକି ନୁହେଁ, ଆଇନ କାନୁନର ଅପପ୍ରୟୋଗ କରି ନିଜ ନିଜର ପ୍ରତିଷ୍ଠା ବୃଦ୍ଧି କରୁଛନ୍ତି । ମନ୍ତ୍ରୀ ହେଲେ ତ ସେ କଥା ଅଲଗା, ରାତାରାତି ସମୃଦ୍ଧଶୀଳ ବ୍ୟକ୍ତି ହେବାର ସୁଯୋଗ ତ ଯଥେଷ୍ଟ ଅଧିକ । ରାଜଧାନୀର ସର୍ବାପେକ୍ଷା ସୁନ୍ଦର ପରିବେଶରେ ଗୃହ ନିର୍ମାଣ ନିମିତ୍ତ ଭୂମି, ଗୃହନିର୍ମାଣ ସରଞ୍ଜାମର ଅଭାବ ଓ ଦୁର୍ମୂଲ୍ୟତା ସତ୍ତ୍ୱେ ବହୁତଳ ବିଶିଷ୍ଟ ପ୍ରାସାଦ ନିର୍ମାଣ ତ ଏକ ମାମୁଲି କଥା । ଗୃହନିର୍ମାଣ ପରେ ନିଜର ରାଜନୈତିକ କ୍ଷମତାର ଅପବ୍ୟବହାର କରି କୌଣସି ସରକାରୀ ଉଦ୍ୟୋଗକୁ ଅତ୍ୟଧିକ ଭଡ଼ାରେ ସେହି ଘର ଯୋଗାଇଦେବା ଯେ ନୀତିରେ ପରିଣତ ହୋଇଗଲାଣି ।

ପ୍ରାୟ ଦୁଇବର୍ଷ ତଳେ ଶ୍ରୀଯୁକ୍ତ ଚୌଧୁରୀ ମୁଖ୍ୟମନ୍ତ୍ରୀ ଥିବା ସମୟରେ ବିଧାୟକ ଥିବା ଜଣେ ବ୍ୟକ୍ତିଙ୍କ ସହିତ ସାକ୍ଷାତ ହୋଇଥିଲା । କଥା ପ୍ରସଙ୍ଗରେ ଜାଣିବାକୁ ଚାହିଁଥିଲି ସେ ଭୁବନେଶ୍ୱରରେ ନିଜ ଘରେ ରହୁଛନ୍ତି କି ବୋଲି । ସେ ମୋତେ ନାସ୍ତିବାଚକ ଜବାବ ଦେଇ ନିଜେ ବିଧାୟକ ଥିବା ସମୟର ମନୋଭାବ ବ୍ୟକ୍ତ କରିଥିଲେ । ତା'ର ସାରାଂଶ ହେଲା, ସେତେବେଳେ ଭୁବନେଶ୍ୱରରେ ଜମି ଶସ୍ତାରେ ମିଳୁଥିଲା । ବିଧାୟକମାନଙ୍କୁ ମଧ୍ୟ ଜମି ମିଳିବାରେ ଅଗ୍ରାଧିକାର ଦିଆଯାଉଥିଲା । ତଥାପି ତାଙ୍କର ଭୟ ହେଲା ଯେ, ସେ ରାଜଧାନୀରେ ଜମି କିଣି ଘର କରିବା କଥା ଯଦି ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଚୌଧୁରୀଙ୍କ କାନରେ

ପଡ଼େ, ତାହାହେଲେ ତାଙ୍କ ସମ୍ପର୍କରେ ସେ କପଟ ମତ ପୋଷଣ କରନ୍ତେ ? ସେହି ଭୟରେ ରାଜଧାନୀରେ ଘର କରିବା କଥା ସେ ମନରୁ ପୋଛିଦେଲେ ।

ତେଣୁ ଶ୍ରୀଯୁକ୍ତ ଚୌଧୁରୀ ଯେ କେବଳ ନିଜେ ବ୍ୟକ୍ତିଗତ ଜୀବନରେ ସମାଜବାଦୀ ତ୍ୟାଗତିତିକ୍ଷାକୁ ବ୍ରତ କରି ନେଇଥିଲେ ସେତିକି ନୁହେଁ, ସେ ଚାହୁଁଥିଲେ ଯେ ତାଙ୍କର ସହକର୍ମୀମାନେ ତାଙ୍କର ସହଧର୍ମୀ ହୁଅନ୍ତୁ ।

ନୀତିବାନ୍ ଓ ଆଦର୍ଶବାନ ବ୍ୟକ୍ତିମାନଙ୍କ ପକ୍ଷେ, ରାଜନୈତିକ କ୍ଷମତା ନିଜ ନିଜର ଆଦର୍ଶ ଓ ଜୀବନଦର୍ଶନକୁ ସାମାଜିକ ଓ ରାଷ୍ଟ୍ରୀୟ ରୂପ ଦେବା ନିମିତ୍ତ ଏକ ସୁଯୋଗ । ଶ୍ରୀଯୁକ୍ତ ଚୌଧୁରୀ ସମାଜବାଦୀ ଚିନ୍ତାଧାରାକୁ ଯେ କେବଳ ନିଜ ଜୀବନରେ ପ୍ରତିଫଳିତ କରିବାକୁ ଚେଷ୍ଟା କରୁଥିଲେ ତାହା ନୁହେଁ, କ୍ଷମତା ରାଜନୀତିକୁ ନିଜର ବ୍ୟକ୍ତିଗତ ବା ପାରିବାରିକ ସମ୍ପତ୍ତି ବୃଦ୍ଧିର ଅସ୍ତ୍ର ହିସାବରେ ବ୍ୟବହାର ନ କରି ସମାଜବାଦୀ ଦର୍ଶନର ରୂପାନ୍ତର ନିମିତ୍ତ ବ୍ୟବହାର କରୁଥିଲେ । ସମାଜବାଦୀ ପୋଥିବାଇଗଣଙ୍କୁ ସମାଜବାଦୀ ବାସ୍ତବ ବାଟରେ ପରିଣତ କରିବା ନିମିତ୍ତ ସେ ରାଜସ୍ୱମନ୍ତ୍ରୀ ଓ ମୁଖ୍ୟମନ୍ତ୍ରୀ ଥିବା ସମୟରେ ଆବଶ୍ୟକ ପଦକ୍ଷେପମାନ ଗ୍ରହଣ କରିଥିଲେ । ଜଣେ ବିଶିଷ୍ଟ ସମାଜବାଦୀ ଭାବେ ତାଙ୍କର ଦୃଢ଼ ବିଶ୍ୱାସ ଥିଲା ଯେ ପ୍ରକୃତ କୃଷୀ ହିଁ ଜମିମାଲିକ ହେବା ଉଚିତ । ଲଙ୍ଗଳ ଯାହାର, ଜମି ତାହାର, ସେ ଦେଥରେ ଶୋଷୀ । ତେଣୁ କୃଷୀମାନଙ୍କୁ ଜମିର ମାଲିକ କରିବା ଉଦ୍ଦେଶ୍ୟରେ ସେ ରାଜସ୍ୱମନ୍ତ୍ରୀ ଥିବା ସମୟରେ ଜମିଦାରୀ ଉଚ୍ଛେଦ ଆଇନ୍, ଭାଗଚାଷୀ ଆଇନ ଓ ଭୂଦାନ ଯଜ୍ଞ ଆଇନ୍‌ମାନ ପ୍ରଣୀତ ହୋଇଥିଲା ।

ସେ ଜନ୍ମଲାଭ କରିଥିଲେ ବିଶିଷ୍ଟ ଆଇନଜୀବୀ ଓ ଜମିଦାର ଶ୍ରୀ ଗୋକୁଳାନନ୍ଦ ଚୌଧୁରୀଙ୍କ ସନ୍ତାନ ଭାବେ; କିନ୍ତୁ ମୃତ୍ୟୁ ବେଳକୁ ସେ ଥିଲେ ଭୂମିହୀନ ବାସହୀନ । ନିଜେ ଜମିଦାରୀ ଉଚ୍ଛେଦ ଆଇନ ପ୍ରଣୟନ କଲେ, ପିତୃଅର୍ଜିତ ଜମିଦାରୀ ହରାଇଲେ । ଯେତିକି ବାକି ଥିଲା, ସେତିକି ବିସର୍ଜନ ଦେଲେ ଭୂଦାନ ଯଜ୍ଞରେ । ସ୍ୱେଚ୍ଛାରେ ବରଣ କରିନେଲେ ସର୍ବହରାର ଗୌରବ ।

ଏଠି ମନେପଡ଼େ ଟଲଷ୍ଟୟଙ୍କ କଥା । ଜନ୍ମଲଭି କରିଥିଲେ ଏକ ସମ୍ଭ୍ରାନ୍ତ ବିତ୍ତବାନ୍ ପରିବାରରେ । ହଜାର ହଜାର ଏକର ଜମିର ମାଲିକ । ସବୁ ବାଣ୍ଟି ଦେଲେ ଭାଗଚାଷୀମାନଙ୍କ ମଧ୍ୟରେ । ନିଃସ୍ୱଭାବରେ ତାଙ୍କର ମୃତ୍ୟୁ ଘଟିଥିଲା ଏକ ରେଳ୍ ଷ୍ଟେସନ୍‌ରେ, ନିଃସହାୟ ଭାବରେ । ଏହା ଥିଲା ଆଦର୍ଶ ନିକଟରେ ଆତ୍ମନିବେଦନ ।

ଠିକ୍ ସେମିତି ଶ୍ରୀଯୁକ୍ତ ଚୌଧୁରୀ । ସମାଜବାଦୀ ଆଦର୍ଶ ନିକଟରେ ଆତ୍ମନିବେଦନ, ଆତ୍ମସମର୍ପଣ କରିଥିଲେ ।

ସେହି ମହାନ୍ ଆତ୍ମା ନିକଟରେ ଆଜି ଅର୍ପଣ କରୁଛୁ ଭକ୍ତିର ଅର୍ଘ୍ୟ । ତାଙ୍କର ଆଦର୍ଶ ଦୀର୍ଘଜୀବୀ ହେଉ, ତାଙ୍କର ସମାଜବାଦୀ ସ୍ୱପ୍ନ ଏ ଜାତିର ଜୀବନରେ ସାର୍ଥକ ହେଉ ।

---

# ତିନିଠି ମହନୀୟ ଅନୁଭୂତି

**ଯତୀନ୍ଦ୍ରନାଥ ପଣ୍ଡା**

ପଦ୍ମପୁର ମରୁଡ଼ି ପ୍ରପୀଡ଼ିତ ଅଞ୍ଚଳ । ପରିବ୍ରଜନରେ ନବ ବାବୁ ଆସି ଦିନାବେଳେ ଏହି ଅଞ୍ଚଳରେ ବୁଲି ବୁଲି ପଦ୍ମପୁରରେ ପହଞ୍ଚିଲେ । ଖିଆପିଆର ବ୍ୟତିକ୍ରମ ହୋଇଚି । ତାହା ସାଙ୍ଗକୁ ଗ୍ରୀଷ୍ମର ପ୍ରଭାବ । ପହଞ୍ଚିଲା ପରେ ସର୍ବୋଦୟ କର୍ମୀ ଗଜେନ୍ଦ୍ର ପ୍ରସାଦ ଦାସ ଓ ସରୋଜିନୀ ଦେବୀଙ୍କ ବସାରେ ରହିଲେ ।

ମୁଁ କଲେଜରେ ଖବର ପାଇ ଘରକୁ ଫେରିଲି । ଆମ ଗାଁ ବଗିଚାର ସୁନ୍ଦର ମିଠା କମଳା ଆସି ଘରେ ପହଞ୍ଚି-ଥାଏ । ବାପା ଆଣିଥାନ୍ତି ।

ମନେହେଲା ଫଳରସ ତାଙ୍କ ପାଇଁ ଦରକାର ହେବ । ଦଶପନ୍ଦରା ଫଳ ଧରି ପହଞ୍ଚିଲି । ନମସ୍କାର କରିବାରୁ କହିଲେ—"କିରେ ପୁଅ ଆସିଲ ?"

କମଳା ଲେମ୍ବୁକୁ ଦେଖି ପଚାରିଲେ—"ଆଚ୍ଛା ତୁ କେମିତି ଜାଣିଲୁ ମୋ ପାଇଁ କମଳାରସ ଦରକାର ? କ'ଣ କିଣିକରି ଆଣିଚୁ ?"

ମୋ'ର ବାଡ଼ିଫଳ କଥା ଶୁଣି ଖୁସି ହେଲେ । ମାଲତୀ ଦେବୀଙ୍କୁ ଡାକି କହିଲେ, "କି ହୋ, ଶୁଣୁଚ ! ପୁଅ ମୋ ପାଇଁ ବାଡ଼ିଆ ମିଠା କମଳା ଆଣିଚି । ଏଇଥିରୁ ଦୁଇତିନିଟା ଖାଇବି, ଆଉ କିଛି ଦରକାର ନାହିଁ ।"

ପୂଜ୍ୟା ମାଲତୀ ଦେବୀ (ମା'ଙ୍କୁ) ଅନୁରୋଧ କଲି ଆମ ଘରକୁ ଯିବା ନିମନ୍ତେ । ନବ ବାବୁଙ୍କୁ ମଧ୍ୟ ଡାକିଲି । ସେ ମନା କରିଦେଲେ । ମାଲତୀ ଦେବୀଙ୍କ ସହିତ ବୁଲି ବୁଲି ଆମ ଘରକୁ ଆସିଲୁ ।

ଆମଘରେ ପହଞ୍ଚି ମାଲତୀ ଦେବୀ କାଠ ଆସନରେ ବସିବା ପାଇଁ ମନା କଲେ । ଚଟେଇ ପାରି ତଳେ ବସିଲୁ । ମୋର ସ୍ତ୍ରୀ ଆସି ନମସ୍କାର କଲେ । ଖରିଦନ ଲାଗି ଦହି ସର୍ବତ ତିଆରି ହେଲା ।

ଆମ ପରିବାରର ପରମ୍ପରା ଅନୁଯାୟୀ ସ୍ୱାମୀ-ସ୍ତ୍ରୀ ଏକାଠି ବସି ଆହାର କରନ୍ତି ନାହିଁ । ମାଲତୀ ଦେବୀ ଜିଦ୍ କରିବାରୁ ମୋର ସ୍ତ୍ରୀ ଆସି ଆମପାଖରେ ବସିଲେ ।

ତେଣେ ନବ ବାବୁ ଆସିବା ପାଇଁ ମନା କରିଥିଲେ ବି ଆମେ ଆସିବା ପରେ ହଠାତ୍ ତାଙ୍କର ଆସିବା ଲାଗି ଇଚ୍ଛା ହେଲା । ସେ ଆମ ଘରକୁ ବାହାରିଲେ । ତାଙ୍କ ସାଙ୍ଗରେ ଜଣେ ଦୁଇଜଣ ବାହାରିଥିଲେ; କିନ୍ତୁ ସେ ସେମାନଙ୍କୁ ମନାକରି ଏକୁଟିଆ ଆସି ପହଞ୍ଚିଗଲେ ।

ମାଲତୀ ଦେବୀ ଏବଂ ନବ ବାବୁ ଦୁହେଁ କମଳା ଚୋପା ଛଡ଼ାଇ ମୋ ସ୍ତ୍ରୀଙ୍କୁ ଏବଂ ମତେ ଖୁଆଇ ଦେଲେ । ଦୁଇ ଚାରିଖଣ୍ଡ ସେମାନେ ନିଜେ ବି ଖାଇଲେ ।

ମୋ ବାପା ଦୂରରେ ଥାଇ ନ ଜାଣିଲା ଭଳି ସେଇ ସ୍ନେହଭରା ଦୃଶ୍ୟ ଉପଲବ୍ଧି କରୁଥାନ୍ତି । ଚିରସ୍ରୋତା ନିର୍ଝରଣୀ ପରି ତାଙ୍କର ସ୍ନେହ ଭୁଲି ହେବ ନାହିଁ । କେଡ଼େ ବିରାଟ ବ୍ୟକ୍ତିତ୍ୱ ! କୋଟି କୋଟି ଓଡ଼ିଶାବାସୀଙ୍କର ସେ ମୁକୁଟହୀନ ସମ୍ରାଟ, କିନ୍ତୁ କେଡ଼େ ସରଳ ଓ ଆତ୍ମୀୟତାଭରା ବ୍ୟବହାର ।

ଆଉ ଏକ ଘଟଣା । ସେତେବେଳେ ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ ଓଡ଼ିଶାର ରାଜସ୍ୱ ମନ୍ତ୍ରୀ । ମୋର ସ୍ୱର୍ଗତ ପିତୃବ୍ୟ ସ୍ୱାଧୀନତା ସଂଗ୍ରାମୀ ଶ୍ରୀଯୁକ୍ତ ରାଜେନ୍ଦ୍ର ପଣ୍ଡା ସେତେବେଳେ ସମ୍ବଲପୁର ଜିଲ୍ଲାବୋର୍ଡ ଚେୟାରମ୍ୟାନ ଓ ଜିଲ୍ଲା କଂଗ୍ରେସ କମିଟିର ସଭାପତି । ଜେଲ୍ ସାଥୀ ଏବଂ କଂଗ୍ରେସ କର୍ମକର୍ତ୍ତା ଭାବେ ଉଭୟଙ୍କର ସଂପର୍କ ରହିଥାଏ ।

ମୁଁ କାକାଙ୍କ ପାଖରେ ରହୁଥାଏ । ଖୁଚୁପଡ଼ାର ଡାକ୍ତର ଶ୍ରୀଯୁକ୍ତ ଦୟାସାଗର ମହାପାତ୍ର ମୋର କାକା । ସେ ନବ ବାବୁଙ୍କୁ ନିମନ୍ତ୍ରଣ କରିଥିଲେ । ହଠାତ୍ ଦିନେ ସନ୍ଧ୍ୟାରେ ଅପ୍ରତ୍ୟାଶିତ ଭାବେ ନବ ବାବୁ ହାଜର । କହିଲେ —"ଆଜି ମୁଁ ତୁମ ଘରେ କୁଣିଆ ହେଲି ।"

କେତେ ଆନନ୍ଦମୟ ଦିନ । ଅଳ୍ପ ସମୟ ମଧ୍ୟରେ ସମ୍ବଲପୁରର ତତ୍କାଳୀନ ନେତୃସ୍ଥାନୀୟ ବ୍ୟକ୍ତିମାନେ ପହଞ୍ଚି ଆଳାପ ଆଲୋଚନା ଚାଲିଲା । ଖାଇବା ପାଇଁ ବିଳମ୍ବ ହୋଇଗଲା । ଆମେ ସମସ୍ତେ ବିଳମ୍ବରେ ଖାଇଲୁ ।

ବିଳମ୍ବରେ ଶୋଇଲେ ମଧ୍ୟ ନବ ବାବୁ ୪ଟା ପୂର୍ବରୁ ଉଠି ନିତ୍ୟକର୍ମ ସାରିଛନ୍ତି । ତାଙ୍କର ଖାଦ୍ୟାଭ୍ୟାସକୁ ଆଖିରେ ରଖି କାକା ଚକୁଳି ପିଠାର ବ୍ୟବସ୍ଥା କରିଥାନ୍ତି । ଖୁଡ଼ୀ, ଭଉଣୀମାନେ ଗାଁକୁ ଯାଇଥିବେ । ପୂଜାରୀ ପିଲାଟି ଉପରେ ବଟାବଟି କରି ପିଠା କରିବାର ଦାୟିତ୍ୱ ଦିଆଯାଇଥାଏ । ରାତି ଚାରିଟାରୁ ଉଠି ଏହି କାମ କରିବା ପାଇଁ ତାକୁ ତାଗିଦ କରି ଦିଆଯାଇଥାଏ ।

ନବ ବାବୁ ଉପସ୍ଥିତିରେ କାକା ପୂଜାରୀ ପିଲାଟିକୁ ଏହି ପ୍ରକାର ବରାଦ ଦେଇଥିଲେ । ତାହାପରେ ଆମେ ସମସ୍ତେ ଶୋଇବାକୁ ଗଲୁ । କାକା ପ୍ରତିଦିନ ବିଳମ୍ବରେ ଉଠନ୍ତି । ବିଛଣା ଉପରେ ଚାହା ଖାଆନ୍ତି । ତାହାପରେ ଦାନ୍ତ ଘଷନ୍ତି ।

ସେ ଦିନ କିନ୍ତୁ ସେ ଖୁବ୍ ସତର୍କ ହୋଇ ଶୋଇଥିଲେ । ତଥାପି ତାଙ୍କର ନିଦ ଭାଙ୍ଗିଲା ନାହିଁ ।

ପାଖ କୋଠରିରେ ନବ ବାବୁ ଶୋଇଥାନ୍ତି । ସେ କେତେବେଳୁ ଉଠି ଚୂଲି ଓ ନିଆଁ ବାଳି ଚକୁଳି ପିଠା ତିଆରି କରିଛନ୍ତି । ଚାହା ତିଆରି କରି କେଟଲି ଏବଂ କପ୍ ପ୍ଲେଟ ଧରି କାକାଙ୍କ କୋଠରିରେ ଡାକ ଛାଡ଼ିଲେ—"ହଇ ହେ ରାଜେନ୍ଦ୍ର ବାବୁ ! ଉଠ ଉଠ, କେତେ ଶୋଉଛ ହେ ? ହୋଇଛି ତୁମର Bed Tea ନିଅ ।

କାକା ମୋର ଅବାକ୍ ! କ'ଣ କହିବେ, କ'ଣ କରିବେ ? କିଂକର୍ତ୍ତବ୍ୟବିମୂଢ଼ ହୋଇଗଲେ । ସେ କହିଲେ, ପୂଜାରୀକୁ କହିଥିଲି ସେ ଉଠାଇଲା ନାହିଁ । ପୂଜାରୀ ମଧ୍ୟ ଉଠିଲା ନାହିଁ ।

କାକା ଅତ୍ୟନ୍ତ ଅପ୍ରତିଭ ଅବସ୍ଥାରେ ଚାହା କପ୍ଟି ଧରି ମୋ ଆଡ଼କୁ ଟିକିଏ ବିରକ୍ତିଜନକ ଦୃଷ୍ଟି ପକାଇଲା-ବେଳେ ନବ ବାବୁ କହିଲେ—"ନିଜ ଅଭ୍ୟାସ ପରିବର୍ତ୍ତନ ନ କରି ପୁଅକୁ ରାଗୁଛ କାହିଁକି ! ଲାଜ ଲାଗୁନାହିଁ । ତୁମର ଭୁଲ୍ ତୁମେ ନ ଦେଖିପାରି ତୁଆଁଟି ଉପରେ ରାଗୁଛ ?"

ମନ୍ତ୍ରମୁଗ୍ଧବତ୍ କାକା ଚୁପ୍ ହୋଇଗଲେ । ତାହାପରେ ପୂଜାରୀ ଟୋକା ଚେଞ୍ଚେଇ ଘରକୁ ଦୌଡ଼ିଆସି ଦେଖିଲା ବେଳକୁ ସବୁ କାମ ଶେଷ ହୋଇଯାଇଛି । ନବ ବାବୁ ତା'ର ପିଠି ଆଉଁଷାଇ କହୁଥାନ୍ତି, "ମୁଁ ଅଛି । ତୋତେ ଗାଳି ଖାଇବାକୁ ପଡ଼ିବ ନାହିଁ; କିନ୍ତୁ ଏଣିକି ଭୋର ସମୟରେ ଉଠିବା ପାଇଁ ଅଭ୍ୟାସ କର ।"

ଆଉ ଦିନକର କଥା । ସେତେବେଳକୁ ନବ ବାବୁ ମନ୍ତ୍ରୀ । ପୂଜ୍ୟା ମାଳତୀ ଦେବୀଙ୍କ ସହିତ ଆସିଛନ୍ତି । ଝିଅ ବୁବୁ ଏବଂ ପୁଅ ଡାଲୁ ବି ସଙ୍ଗରେ ଅଛନ୍ତି । ସମ୍ବଲପୁର ପାହାଡ଼ ଉପରେ ସର୍କିଟ ହାଉସରେ ସେମାନେ ରହୁଥିଲେ ।

ମୁଁ ସେତେବେଳେ ମେହେର କଲେଜର ହଷ୍ଟେଲରେ ରହୁଥାଏ । ଛାତ୍ର କଂଗ୍ରେସର କର୍ମକର୍ତ୍ତାମାନଙ୍କ ମଧ୍ୟରେ ମୁଁ ମଧ୍ୟ ଜଣେ । ନବ ବାବୁଙ୍କ ପୁଅ ଡାଲୁ ଆସି ମତେ ଡାକିଲା । ମା' (ମାଳତୀ ଦେବୀଙ୍କୁ ମୁଁ ମା' ବୋଲି ଡାକେ) ଙ୍କର ଉଦାଚ ମୁଁ ତାଙ୍କ ପାଖକୁ ବାହାରିଲି । ଡାଲୁ ଓ ମୁଁ ଯାଇ ପହଞ୍ଚିଲା ବେଳକୁ ଜଳଖିଆ ଟେବୁଲରେ ବଢ଼ା ହେଉଥାଏ । ନବ ବାବୁ ଆମ ଦୁଇଜଣଙ୍କୁ ଦେଖି ହସି ହସି କହିଲେ, "ଠିକ୍ ସମୟରେ ପହଞ୍ଚିଗଲ । ଆସ ବସ, ସମସ୍ତେ ଖାଇବା ।"

ଜଳଖିଆ ଖାଇଲାବେଳେ ନବ ବାବୁ କହିଲେ, "କାଲି ସକାଳ ୧୧ଟା ପରେ ମୋ ପାଇଁ ସରକାରୀ କାମ ରହିଛି । ତେଣୁ ୭ଟାରୁ ୧୧ଟା ପର୍ଯ୍ୟନ୍ତ କ'ଣ କରିବା ? ମୁଁ ଶୁଣୁଛି ସମ୍ବଲପୁର ମାରୁଆଡ଼ିପଡ଼ା ଘାଟ (ମହାନଦୀ ଘାଟ) କୁଆଡ଼େ ଖୁବ ମଇଳା ହୋଇଛି । କାଲି ସକାଳେ ଆମେ ଯାଇ ସଫା କରିବା; କିନ୍ତୁ ପ୍ରୋଗ୍ରାମ କାହାରି ଆଗରୁ ଜଣାହେବ ନାହିଁ । ନ ହେଲେ ମ୍ୟୁନିସିପାଲିଟିବାଲା ସାବଧାନ ହୋଇଯିବେ ।"

ଭୋର ସକାଳୁ ଆମେ ପୂର୍ବ ନିର୍ଦ୍ଧାରିତ କାର୍ଯ୍ୟକ୍ରମରେ ଯୋଗ ଦେଇ ଘାଟରେ ପହଞ୍ଚିଲୁ । ସେତେବେଳେ ମନ୍ତ୍ରୀଙ୍କ ଗାଡ଼ିର ଆଦର ଥିଲା । ଲୋକେ ମନ୍ତ୍ରୀଙ୍କୁ ଭକ୍ତି କରୁଥାନ୍ତି । ମନ୍ତ୍ରୀଙ୍କ ଗାଡ଼ି ଘାଟରେ ପହଞ୍ଚିଗଲା ।

ଅତ୍ୟନ୍ତ ସାଦା ପୋଷାକରେ ସାଧାରଣ ଧୋତି ଓ ପଞ୍ଜାବୀ ପିନ୍ଧି ଗାମୁଛା ଖଣ୍ଡେ ନବ ବାବୁ ଧରିଥାନ୍ତି । ମା' ପିନ୍ଧିଥାନ୍ତି ଧଳା ଶାଢ଼ୀ । ବୁବୁ ଆଦି ଆମେ ସମସ୍ତେ ଗାଡ଼ିରେ ବସିଥାଉ । କାଲୁ ସ୍ଲୋଗାନ ଆରମ୍ଭ କଲା—"ଇନ କିଲାବ ଜିନ୍ଦାବାଦ୍ ।" ଗାଡ଼ି ଚାଲିଲା । ଏହା ପୂର୍ବରୁ କୋଡ଼ି, ଝାଡ଼ୁ, ଝୁଡ଼ି ଇତ୍ୟାଦି ମାରୱାଡ଼ିପଡ଼ା ଘାଟରେ ପହଞ୍ଚାଇ ଦିଆଯାଇଥାଏ ।

ଆମେ ପହଞ୍ଚିଲୁ, ଜନତା ମଧ୍ୟ ପହଞ୍ଚିଲା ପରେ । କି ଅସନା ହୋଇ ପଡ଼ିଥାଏ ସେ ଘାଟଟି ପ୍ରକୃତରେ । କେତେ ଛୁଆ ପିଲା ଏବଂ ବୃଦ୍ଧ ଆମ ସାମନାରେ ଝାଡ଼ା ଫେରୁଥାନ୍ତି ।

ମା' ମାଳତୀ ଦେବୀ ଆମକୁ କାମ ବାଣ୍ଟି ଦେଲେ । ଝାଡ଼ା ମଇଳା କୋଡ଼ିରେ ଆଣି ଡାଲାରେ ଭର୍ତ୍ତି କରିବାକୁ ପଡ଼ିବ । ବୁବୁ ଆଦି ଝିଅମାନେ ସେଗୁଡ଼ିକ କେତେଦୂର ନେଇଯାଇ ଫୋପାଡ଼ି ଦେବେ । ନିଜେ ନବ ବାବୁ ଓ ମା' ଝାଡ଼ୁ କରିବେ । ସଙ୍ଗେ ସଙ୍ଗେ ଆମେ ସବୁ କାମରେ ସାମିଲ ହୋଇଗଲୁ ।

ମତେ ପ୍ରକୃତରେ ଘୃଣା ଲାଗୁଥାଏ, ଦୁର୍ଗନ୍ଧ ହେଉଥାଏ ଏବଂ ଦେହର ରୋମ ଟାଙ୍କୁରି ଉଠୁଥାଏ; କିନ୍ତୁ ସେହି ପରିବେଶ ଭିତରେ ପୂଜ୍ୟ ନେତା ଓ ନେତ୍ରୀଙ୍କ ଦୃଷ୍ଟାନ୍ତକୁ ଅନୁସରଣ କରିବାକୁ ପଡ଼ିଲା । ଘୃଣା ଉଭେଇଗଲା ।

ଘାଟ ସଫା କରିବା କାର୍ଯ୍ୟରେ ଦିନ ୧୨ଟା ପର୍ଯ୍ୟନ୍ତ ଆମେମାନେ ଲାଗିରହିଥିଲୁ । ପଡ଼ାବାସୀ ଅପଲକ ନେତ୍ରରେ ଆମ କାମକୁ ଦେଖୁଥାନ୍ତି । ଇତିମଧ୍ୟରେ କେତେକ କଂଗ୍ରେସ କର୍ମୀ ପହଞ୍ଚି ନିଜକୁ ଆମର କାର୍ଯ୍ୟକ୍ରମରେ ସାମିଲ କରିଦେଲେ । ତାହାପରେ ଆମେ ସମସ୍ତେ ନଈଧାରକୁ ଆସି ସାବୁନ ଲଗାଇ ଗାଧୋଇ ପଡ଼ିଲୁ । ଗୀତ ଗାଇ ଗାଇ ପହଞ୍ଚିଗଲୁ ସର୍କିଟ ହାଉସରେ ।

ନବ ବାବୁ ମାଳତୀ ଦେବୀଙ୍କୁ କହିଲେ, ହଇହୋ, ଆଜି ପିଲାଏ ଭଲ କାମ କରିଛନ୍ତି । ଆଜି ଭଲ ଖାଇବାକୁ ଦେବାକୁ ହେବ । କ'ଣ ସବୁ ବନ୍ଦେ କରିଛ ? ସମସ୍ତେ ହସଖୁସିରେ ଗପ କୌତୁକ କରି ଖାଇଲୁ । ଘଟଣା କାଲି ପରି ଲାଗୁଛି; କିନ୍ତୁ ସେହି ମହାନ୍ ଆତ୍ମା ଆଉ ନାହାନ୍ତି ।

# ଏମିତି ମୁଖ୍ୟମନ୍ତ୍ରୀ ବି ଥିଲେ

**ବ୍ରଜକିଶୋର ଧଳ**

ନବ ବାବୁଙ୍କ ସହିତ ମୋର ପ୍ରଥମ ସାକ୍ଷାତ ହୁଏ ଦୀର୍ଘ ୪୭ ବର୍ଷ ତଳେ ୧୯୩୮ ମସିହା ଢେଙ୍କାନାଳ ପ୍ରଜାମଣ୍ଡଳ ଆନ୍ଦୋଳନ ବେଳେ । ଏହି ଆନ୍ଦୋଳନ ପ୍ରତି ନବ ବାବୁ ତଥା ଓଡ଼ିଶାର ସମସ୍ତ ରାଜନୈତିକ ଦଳର ନେତୃବୃନ୍ଦଙ୍କର ପ୍ରତ୍ୟକ୍ଷ ଓ ପରୋକ୍ଷ ସହାନୁଭୂତି ଥିଲା । ସେତେବେଳେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥିଲେ ଶ୍ରୀଯୁକ୍ତ ବିଶ୍ୱନାଥ ଦାଶ ଓ କଂଗ୍ରେସ କାର୍ଯ୍ୟକାରୀ କମିଟିର ସଦସ୍ୟ ଥିଲେ ଡକ୍ଟର ହରେକୃଷ୍ଣ ମହତାବ । ଏମାନେ ମଧ୍ୟ ଆନ୍ତରିକତାର ସହିତ ପ୍ରଜାଆନ୍ଦୋଳନକୁ ଉତ୍ସାହିତ କରୁଥିଲେ । ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀଙ୍କ ସହିତ ତାଙ୍କର ସହଧର୍ମିଣୀ ଶ୍ରୀଯୁକ୍ତା ମାଳତୀ ଦେବୀ, ସର୍ବଶ୍ରୀ ସୁରେନ୍ଦ୍ରନାଥ ଦ୍ୱିବେଦୀ, ଭଗବତୀଚରଣ ପାଣିଗ୍ରାହୀ, ଅନନ୍ତ ପଟ୍ଟନାୟକ, ବୈଦ୍ୟନାଥ ରଥ ପ୍ରମୁଖ ଆନ୍ଦୋଳନରେ ସହଯୋଗ କରୁଥିଲେ । ଢେଙ୍କାନାଳର ସୁଯୋଗ୍ୟ ସନ୍ତାନ ତଥା ଗଡ଼ଜାତ ମୁକ୍ତି ଆନ୍ଦୋଳନର ଜନୈକ ରଥୀ ଶ୍ରୀଯୁକ୍ତ ସାରଙ୍ଗଧର ଦାସ ନବକୃଷ୍ଣ ଚୌଧୁରୀଙ୍କ ସହ ଢେଙ୍କାନାଳ ପ୍ରଜାମଣ୍ଡଳ ଆନ୍ଦୋଳନରେ ମୁଖ୍ୟ ଅଂଶ ନେଇଥିଲେ । ଢେଙ୍କାନାଳର ସାଧାରଣ ଲୋକେ ଢେଙ୍କାନାଳ ଭିତରେ ପ୍ରକାଶ୍ୟରେ ସାଧାରଣ ସଭାମାନଙ୍କରେ ଯୋଗ ଦେବା ପାଇଁ ସାହସ ବଢ଼ାଇବା ଓ ଆନ୍ଦୋଳନ ପ୍ରତି ରାଜ୍ୟ ବାହାର ଲୋକଙ୍କର ପ୍ରତ୍ୟକ୍ଷ ସହଯୋଗ ପାଇବା ଉଦ୍ଦେଶ୍ୟରେ କଟକର ସୁକିନ୍ଦା, ବାଙ୍କୀର ଘୋଳପୁର ଓ ଅନୁଗୁଳର ବିଭିନ୍ନ ସ୍ଥାନରେ ସଭାମାନ କରାଯାଉଥିଲା । ସାରଙ୍ଗଧର ବାବୁଙ୍କ ଆହ୍ୱାନକ୍ରମେ ଢେଙ୍କାନାଳର ଛ'ଦେଶ, ଲକ୍ଷ୍ମୀପ୍ରସାଦ, ବଳରାମପୁର ଅଞ୍ଚଳର ଲୋକେ ଆଠଗଡ଼, ତିଗିରିଆ ଓ ବାଙ୍କୀ ଲୋକମାନଙ୍କ ସହିତ ବାଙ୍କୀ ଘୋଳପୁର ନିକଟ କୃଷ୍ଣପୁର ମୁଣ୍ଡିଆରେ ଏକତ୍ରିତ ହୋଇଥିଲେ । ଉକ୍ତ କୃଷ୍ଣପୁର ସଭାରେ ସର୍ବଶ୍ରୀ ନବକୃଷ୍ଣ ଚୌଧୁରୀ, ସାରଙ୍ଗଧର ଦାଶ ଓ ଭଗବତୀ ଚରଣ ପାଣିଗ୍ରାହୀ ଉପସ୍ଥିତ ଥିଲେ । ମୁଁ ଛ' ଦେଶର ଏକ ହଜାର ସୁସଜ୍ଜିତ ଲାଠିଧାରୀ ସ୍ୱେଚ୍ଛାସେବକମାନଙ୍କ ସହିତ ଉକ୍ତ ସଭାରେ ଯୋଗ ଦେଇଥିଲି । ମୁଁ ପ୍ରଥମେ ସେଇଠି ନବ ବାବୁଙ୍କ ସହିତ ପ୍ରତ୍ୟକ୍ଷ ସମ୍ପର୍କରେ ଆସିଲି । ଆମ ସ୍ୱେଚ୍ଛାସେବକମାନଙ୍କର ଡ୍ରିଲ, ମାର୍ଚ୍ଚିଂ ଓ ଶୃଙ୍ଖଳା ଦେଖି ନବ ବାବୁ ବିଶେଷଭାବେ ଆନନ୍ଦିତ ହୋଇ ଉକ୍ତ ସଙ୍ଗଠନର କର୍ତ୍ତା ହିସାବରେ ସଭାରେ ମୋର ତଥା ସ୍ୱେଚ୍ଛାସେବକ ବାହିନୀର ଭୂୟସୀ ପ୍ରଶଂସା କରିବା ସଙ୍ଗେ ସଙ୍ଗେ ମୋ ସହିତ ଏଭଳି ଘନିଷ୍ଠ ଆତ୍ମୀୟତା କରିଥିଲେ ଯେ, ମୁଁ ସବୁଦିନ ପାଇଁ ତାଙ୍କ ସ୍ନେହରେ ବାନ୍ଧିହୋଇ ରହିଲି । ଉକ୍ତ ସଭାକୁ ଭାଙ୍ଗିବା ଉଦ୍ଦେଶ୍ୟରେ ଢେଙ୍କାନାଳ, ତିଗିରିଆ, ଆଠଗଡ଼ ରାଜାମାନେ ସବୁପ୍ରକାର ଉଦ୍ୟମ କରି ବିଫଳ ହୋଇଥିଲେ । ଉକ୍ତ ଷ୍ଟେଟମାନଙ୍କରୁ ୨୦ ହଜାର ପର୍ଯ୍ୟନ୍ତ ଲୋକ ବାଙ୍କି ଲୋକମାନଙ୍କ ସହ କୃଷ୍ଣପୁର ସଭାରେ ଯୋଗ ଦେଇଥିଲେ । ଖଦଡ଼ ପୋଷାକ ଓ ଗାନ୍ଧୀ ଟୋପି ପିନ୍ଧି ଲାଠି ଧରି ଦୀର୍ଘ ୫ ଘଣ୍ଟାକାଳ ସଭା ଚତୁଃପାର୍ଶ୍ୱରେ ଆମ ସ୍ୱେଚ୍ଛାସେବକମାନେ ଯେପରି ଶୃଙ୍ଖଳାର ସହ ଠିଆ ହୋଇଥିଲେ, ତାହା ଏକ ଚମତ୍କାର ଦୃଶ୍ୟ ସୃଷ୍ଟି କରିଥିଲା । ଏହି ସ୍ୱେଚ୍ଛାସେବକମାନଙ୍କୁ ନବ ବାବୁ ଢେଙ୍କାନାଳର 'ଲାଲବାହିନୀ' ନାମରେ ନାମିତ କରିବାରେ ସଭାରେ ପ୍ରବଳ ହର୍ଷଧ୍ୱନି ସହିତ କରତାଳି ଦେଇ ସ୍ୱୀକୃତି ପ୍ରଦାନ କରାଯାଇଥିଲା । ଉକ୍ତ ସଭାରେ ମୋ ସହିତ ଆଠଗଡ଼ର ଅଚ୍ୟୁତାନନ୍ଦ ଦାସ, ତିଗିରିଆର ମଧୁସୂଦନ ପଟ୍ଟନାୟକ ଓ ବାଙ୍କୀର ଫକୀରଚରଣ ପଣ୍ଡା ଭାଷଣ ଦେବାର ସୁଯୋଗ ପାଇଥିଲେ । ବିନା ମାଇକ୍‌ରେ ସଭା । ଶୃଙ୍ଖଳା ଓ ନିସ୍ତବ୍ଧତା ହେତୁ ଲୋକେ ବହୁ ଦୂରରୁ ଥାଇ ମଧ୍ୟ ସହଜରେ ଭାଷଣ ଶୁଣିପାରୁଥିଲେ । ବାଙ୍କୀର କନ୍ତପହଁରା, ଘୋଳପୁର ଓଟଗର ଲୋକମାନଙ୍କ ସହଯୋଗରେ ସଭା ସଫଳ ହୋଇଥିଲା ।

ଘୋଳପୁର କ୍ୟାମ୍ପ୍‌ରେ ନବ ବାବୁଙ୍କର ଅନୁରୋଧକ୍ରମେ ମୁଁ କଟକ ଯାଇ ସେତେବେଳେ ତାଙ୍କର କଟକ କାଠଯୋଡ଼ି କୂଳସ୍ଥ ସନ୍‌ସାଇନ୍ ପଡ଼ିଆ ନିକଟରେ ଥିବା କୋଠାରେ କେତେ ଦିନ କଟାଇ ପ୍ରଜାଆନ୍ଦୋଳନ ସମ୍ପର୍କରେ ତାଙ୍କର ବିଭିନ୍ନ ସହକର୍ମୀ ତଥା ସାରଙ୍ଗଧର ବାବୁ, ଭଗବତୀ ବାବୁ, ସୁରେନ୍ଦ୍ର ବାବୁମାନଙ୍କ ଆଲୋଚନାରେ ଭାଗ ନେଇ ଆନ୍ଦୋଳନ

ସମ୍ପର୍କରେ ବହୁ ଅଭିଜ୍ଞତା ଅର୍ଜନ କଲି । ସେଇଠି ତାଙ୍କଠାରୁ ଜାଣିବାକୁ ପାଇଲି ଯେ ସେ ତାଙ୍କ ଗୃହ ସମସ୍ତରୁ ଢେଙ୍କାନାଳ ଅତ୍ୟାଚାରର କାହାଣୀ ସବୁ ଶୁଣି ସେ ରାଜା ଶଙ୍କର ପ୍ରତାପଙ୍କ ବିରୁଦ୍ଧରେ ପ୍ରତ୍ୟକ୍ଷ ସଂଗ୍ରାମ ପାଇଁ ଚିନ୍ତା କରୁଥିଲେ । ସେତେବେଳେ ରାଜାଙ୍କ ଅତ୍ୟାଚାରର କାହାଣୀ କଟକ ତଥା ସାରା ଓଡ଼ିଶାରେ ଚହଲ ପକାଇଥିଲା । ଏଣୁ ଢେଙ୍କାନାଳ ରାଜା ତାଙ୍କ ଶାସନ କଳଙ୍କ ଘୋଡ଼ାଇବା ପାଇଁ କଟକର କେତେକ ତୋଷାମୋଦକାରୀଙ୍କୁ ହାତକରି କଟକ ଟାଉନ୍ ହଲରେ ୧୯୩୮ ମସିହା ପୂର୍ବରୁ ଏକ ସାଧାରଣ ସଭା ଆହ୍ୱାନ କରିଥିଲେ । ରାଜା ତଥା ତାଙ୍କର ସ୍ତାବକମାନଙ୍କର ନୈତିକ ଦମ୍ଭ ନ ଥିବାରୁ ସଭାରେ ହଲ ଭିତରକୁ ରାଜା ପ୍ରବେଶ କରିବା ସମୟରେ ନବ ବାବୁ ଅଳ୍ପ ସଂଖ୍ୟକ ଯୁବକ ବନ୍ଧୁଙ୍କ ସହିତ "ଢେଙ୍କାନାଳ ରାଜା ଅତ୍ୟାଚାରୀ, ତାଙ୍କୁ ଏଠାରେ ଆମ୍ଭେ ସଭା କରାଇଦେବୁ ନାହିଁ" ଇତ୍ୟାଦି ଧ୍ୱନି ଦେଇ ସଭା କରାଇଦେଇ ନ ଥିଲେ । ନବ ବାବୁ ଏହି କଥା ବର୍ଣ୍ଣନା କରୁଥିବାବେଳେ ଯେଉଁଭଳି ହାସ୍ୟ ସୃଷ୍ଟି କରୁଥିଲେ, ସେ କଥା ଭାବିଲେ ଆଜି ଲୋମ ଟାଙ୍କୁରି ଉଠେ ।

ଘଟଣାଚକ୍ରରେ ଢେଙ୍କାନାଳ ପ୍ରଜା ଆନ୍ଦୋଳନ ତୀବ୍ର ଆକାର ଧରିବାରୁ ଢେଙ୍କାନାଳକୁ ଗୋରା ଫୌଜ ଆସି ଅତ୍ୟାଚାର ଆରମ୍ଭ କରିବାରେ ନବ ବାବୁ, ସାରଙ୍ଗ ବାବୁ ଓ ଶେଷର ନେତୃସ୍ଥାନୀୟ ବ୍ୟକ୍ତିମାନେ ଢେଙ୍କାନାଳ ଲୋକଙ୍କୁ ରାଜ୍ୟଛାଡ଼ି କଟକ ଓ ଅନୁଗୁଳ ଅଞ୍ଚଳକୁ ଚାଲିଯିବାକୁ ପରାମର୍ଶ ଦେଲେ । ସେତେବେଳେ ଯୋଲପୁରଠାରେ ମୋ ଦାୟିତ୍ୱରେ ୪୦ ହଜାର ଲୋକଙ୍କୁ ଧରି ଗୋଟିଏ କ୍ୟାମ୍ପ ଚାଲିଥିଲା । ଯୁକ୍ତିଆର କଲଣ୍ଡି ଓ ଅନୁଗୁଳର ବିଭିନ୍ନ ସ୍ଥାନରେ ଏଭଳି କ୍ୟାମ୍ପମାନ ହୋଇଥିଲା । ନବ ବାବୁ ବହୁବାର ଯୋଲପୁର କ୍ୟାମ୍ପକୁ ଆସି ଆବଶ୍ୟକୀୟ ପରାମର୍ଶ ଦେଉଥିଲେ । ତାଙ୍କ ପରାମର୍ଶରେ ସର୍ବଶ୍ରୀ ସୁରେନ୍ଦ୍ରନାଥ ଦ୍ୱିବେଦୀ, ବିଶ୍ୱନାଥ ପଶାୟତ ଓ ସ୍ୱେଚ୍ଛାସେବକ ଭାବେ ଧୃଲେଶ୍ୱର ବସ୍ତିଆ, ଗୋବିନ୍ଦ ମହାନ୍ତି ଓ ଅନ୍ୟ କେତେ ଜଣ ଆମ୍ଭମାନଙ୍କ ସଙ୍ଗେ ପ୍ରତ୍ୟକ୍ଷ ସହଯୋଗ କରିବା ପାଇଁ ଆସୁଥିଲେ । ଏଠି ସ୍ୱେଚ୍ଛାସେବୀମାନଙ୍କୁ ସତ୍ୟାଗ୍ରହ ଟ୍ରେନିଂ ଦିଆଯାଇ ନବ ବାବୁଙ୍କ ଉପସ୍ଥିତିରେ ମୁଁ ଯୋଲପୁରରୁ ପ୍ରଥମ ସତ୍ୟାଗ୍ରହୀ ଦଳ ଢେଙ୍କାନାଳ ଟାଉନକୁ ପଠାଇଥିଲି । ଢେଙ୍କାନାଳ ସତ୍ୟାଗ୍ରହୀମାନେ ଦବିଯିବାରୁ ନବ ବାବୁ ନିଜେ ଗୌରାଙ୍ଗ ଚରଣ ଦାସ ଓ ଅନ୍ୟମାନଙ୍କ ସହ ଢେଙ୍କାନାଳକୁ ସତ୍ୟାଗ୍ରହ କରିବାକୁ ଆସିଥିଲେ । ସେତେବେଳେ ନବ ବାବୁଙ୍କ ସହଯୋଗରେ ସର୍ବଶ୍ରୀ ଅନନ୍ତ ପଟ୍ଟନାୟକ, ରବି ଘୋଷ, ଫଣୀ ପାଲ, ସଚି ରାଉତରାୟ, ମନମୋହନ ମିଶ୍ର ଓ ଗୋକୁଳମୋହନ ରାୟ ଚୂଡ଼ାମଣିଙ୍କ ସହ ଅନ୍ୟ କେତେକ ଯୁବକ ବନ୍ଧୁ ଓ ନାରୀ-କର୍ମୀ ଢେଙ୍କାନାଳ ଆନ୍ଦୋଳନକୁ ବିଭିନ୍ନ ସମୟରେ ନାନାଭାବେ ପ୍ରତ୍ୟକ୍ଷ ଓ ପରୋକ୍ଷ ସାହାଯ୍ୟ କରୁଥିଲେ । ସେହି ଆନ୍ଦୋଳନ କାଳରୁ ନବ ବାବୁ ଓ ମାଳତୀ ଦେବୀ ଆମ୍ଭମାନଙ୍କ ସହ ଘନିଷ୍ଠ ଭାବେ ସମ୍ପୃକ୍ତ ଥିଲେ ।

ଅନୁଗୁଳ ଢେଙ୍କାନାଳର ପଡ଼ୋଶୀ ରାଜ୍ୟ । ଏଠି ଇଂରେଜ ଶାସନ ଚାଲୁଥିଲା । ଢେଙ୍କାନାଳର ଲୋକଙ୍କୁ ସେଠି ତାଲିମ ଦେଇ ଆନ୍ଦୋଳନକୁ ସାହାଯ୍ୟ କରିବା ପାଇଁ ନବ ବାବୁ ମାଳତୀ ଦେବୀଙ୍କ ତତ୍ତ୍ୱାବଧାନରେ ଅନୁଗୁଳ ଟାଉନରେ ଏକ ଆଶ୍ରମ ପ୍ରତିଷ୍ଠା କଲେ । ସାଧାରଣରେ ଏହା ମାଳତୀ ଚୌଧୁରୀ ଆଶ୍ରମ ଭାବେ ପରିଚିତ । ଢେଙ୍କାନାଳ ଆନ୍ଦୋଳନର ସ୍ମୃତିରକ୍ଷା, ଢେଙ୍କାନାଳ ତଥା ଭାରତର କନିଷ୍ଠ ଶହୀଦ ବାଜିରାଉତ ନାମରେ ଏହି ଆଶ୍ରମରେ ଏକ ଛାତ୍ରାବାସ ଖୋଲିଥିଲେ । ତହିଁରେ ଢେଙ୍କାନାଳ ଆନ୍ଦୋଳନରେ କ୍ଷତିଗ୍ରସ୍ତ ଓ ଅତ୍ୟାଚାରିତ ହୋଇଥିବା ସବର୍ଣ୍ଣ ଓ ଅସବର୍ଣ୍ଣ ବଂଶର ଅନାଥ ସ୍ତ୍ରୀ, ବାଳକଙ୍କୁ ଆଣି ଧନ୍ଦାମୂଳକ ଶିକ୍ଷା ଦେଇ ସ୍ୱାବଲମ୍ବୀ କରାଉଥିଲେ । ସେତେବେଳେ ଉକ୍ତ ଆଶ୍ରମର ଖ୍ୟାତି ଏପରି ବଢ଼ିଥିଲା ଯେ ରାଷ୍ଟ୍ରପତିଭାବେ ଡକ୍ଟର ରାଜେନ୍ଦ୍ର ପ୍ରସାଦ ତାଙ୍କ ଓଡ଼ିଶା ଗସ୍ତ ବେଳେ ଉକ୍ତ ଆଶ୍ରମ ଦେଖି ଉଚ୍ଚ ପ୍ରଶଂସା କରିଥିଲେ ।

କାଳକ୍ରମେ ନବ ବାବୁ ଓଡ଼ିଶାର ମନ୍ତ୍ରୀ ଓ ପରେ ମୁଖ୍ୟମନ୍ତ୍ରୀ ହୋଇଥିଲେ । ମନ୍ତ୍ରୀତ୍ୱ ଗ୍ରହଣ ପରେ ପରେ ପ୍ରଥମେ ଢେଙ୍କାନାଳକୁ ସଦିଚ୍ଛାମୂଳକ ଗସ୍ତରେ ଆସି ଢେଙ୍କାନାଳ ଚଢ଼େଇ ରଗଡ଼ା (ବର୍ତ୍ତମାନର ସର୍କିଟ ହାଉସ) ଠାରେ ପ୍ରଜାମଣ୍ଡଳର କର୍ମୀମାନଙ୍କୁ ଭେଟି ହସଖୁସିରେ ପ୍ରଜାଆନ୍ଦୋଳନ ବେଳେ ତାଙ୍କ ସତ୍ୟାଗ୍ରହ ବେଳର କଥା ସ୍ମରଣ କରାଇ ମନ୍ତ୍ରୀଭାବେ ତାଙ୍କ ଦ୍ୱାର ଢେଙ୍କାନାଳ ଲୋକଙ୍କ ପାଇଁ ସର୍ବଦା ଖୋଲା ରହିବ ବୋଲି କହି ପଂକ୍ତି ଭୋଜନରେ ଯୋଗ ଦେଇ ଫେରିଥିଲେ । ସେତେବେଳେ ତାଙ୍କର ପରିଧେୟ ଓ ସରଳ କଥାବାର୍ତ୍ତାରୁ ତାଙ୍କର ମନ୍ତ୍ରୀତ୍ୱ ଅହମିକାର କୌଣସି ସୂଚନା ମିଳୁ ନ ଥିଲା ।

୧୯୩୮ ମସିହା ଢେଙ୍କାନାଳ ପ୍ରଜାଆନ୍ଦୋଳନ ବେଳୁ ଆମେ ଢେଙ୍କାନାଳର କର୍ମୀମାନେ କଂଗ୍ରେସରେ ଯୋଗ ଦେଇସାରିଥିଲୁ । ଗଡ଼ଜାତ ମିଶ୍ରଣ ପରେ ଢେଙ୍କାନାଳ ଟାଉନରେ ଭଗୀରଥି ସାଗର ନିକଟରେ କଂଗ୍ରେସ ଅଫିସ ଖୋଲି-

ଯାଇ ସେଠାରେ ତତ୍କାଳୀନ ଓଡ଼ିଶାର ରାଜ୍ୟପାଳ ଡକ୍ଟର କୈଳାସନାଥ କାଟଜୁଙ୍କ ଦ୍ୱାରା ଗାନ୍ଧୀ ମୂର୍ତ୍ତି ସ୍ଥାପନ ହେବାରୁ ତାହା ଗାନ୍ଧୀମନ୍ଦିର ନାମରେ ନାମିତ ହୋଇଥିଲା । ଏବେ ମଧ୍ୟ ଏହି ଗାନ୍ଧୀ ମନ୍ଦିରରେ କଂଗ୍ରେସ ଅଫିସ ଚାଲୁଛି । ମାତ୍ର ଦୁଃଖର କଥା, ସେତେବେଳର କଂଗ୍ରେସ ଅଫିସ (ଗାନ୍ଧୀମନ୍ଦିର)ର ଶାନ୍ତି, ଶୃଙ୍ଖଳା, ନୀତିନିୟମ ଏବେ ଆଉ ନାହିଁ । ପବିତ୍ରତା ଦୃଷ୍ଟିରୁ ମନ୍ଦିର ହଲ ଭିତରକୁ ଯୋତା ପିନ୍ଧି ଯିବା ମନା କରାଥିଲା, କାରଣ ମୁଁ ଏଠି ସେକ୍ରେଟାରୀ ଭାବେ ଦୀର୍ଘ ୮ ବର୍ଷ ଦାୟିତ୍ୱ ତୁଲାଇଥିଲି । ଏହି ନିୟମ ସହିତ ଢେଙ୍କାନାଳ ଟାଉନ ଭିତରେ ଦେଇ ଓଡ଼ିଶାର ପଶ୍ଚିମାଞ୍ଚଳକୁ ଗସ୍ତରେ ଯିବା ଆସିବା ସମୟରେ ମୁଖ୍ୟମନ୍ତ୍ରୀଙ୍କ ସମେତ ସବୁ ମନ୍ତ୍ରୀ ତଥା କଂଗ୍ରେସର ନେତୃସ୍ଥାନୀୟ ବ୍ୟକ୍ତି ଗାନ୍ଧୀ ମନ୍ଦିରକୁ ଆସି ପରିଦର୍ଶନ ବହିରେ ସ୍ୱାକ୍ଷର କରିବାର ବ୍ୟବସ୍ଥା ଥିଲା । ଏଥିଦ୍ୱାରା କଂଗ୍ରେସ ଅନୁଷ୍ଠାନର ମହତ୍ତ୍ୱ ବଢ଼ିବା ସଙ୍ଗେ ସଙ୍ଗେ ସର୍ବସାଧାରଣ ଲୋକଙ୍କ ଅନୁପସ୍ଥିତିରେ ମନ୍ତ୍ରୀମାନଙ୍କ ଅଗରେ ନିର୍ଭୟରେ ତାଙ୍କ ଅଭାବ ଅସୁବିଧା ପ୍ରକାଶ କରିବାର ସୁଯୋଗ ସାଧାରଣ ଲୋକେ ପାଇପାରୁଥିଲେ । ମୋର ଏହି ନିୟମକୁ ନବ ବାବୁ ଅତି ଆଗ୍ରହର ସହିତ ପାଳନ କରି ମନ୍ତ୍ରୀ ତଥା ମୁଖ୍ୟମନ୍ତ୍ରୀ ଥିବାବେଳେ ଏଠାରେ ବହୁ ସମୟ କଟାଉଥିଲେ ।

ନବ ବାବୁଙ୍କ ପରିବାର ଅଧିକାଂଶ ସମୟ ଅନୁଗୁଳରେ ବାଜିରାଉତ ଛାତ୍ରାବାସରେ କଟାଉଥିବାରୁ ନବ ବାବୁ ମୁଖ୍ୟମନ୍ତ୍ରୀ ଥିବାବେଳେ ନବ ବାବୁ ଓ ମାଳତୀ ଦେବୀ ଅଧିକାଂଶ ସମୟ ଅନୁଗୁଳ ଯିବା ଆସିବା କରୁଥିଲେ । ସେତେବେଳେ ଏହି ଗାନ୍ଧୀ ମନ୍ଦିରରେ ଘଟିଥିବା ଏକ ସ୍ମରଣୀୟ ଘଟଣା ପାଠ କଲେ ଜଣେ ମୁଖ୍ୟମନ୍ତ୍ରୀଙ୍କର ସ୍ୱଭାବ କର୍ମୀ ତଥା ଜନସାଧାରଣଙ୍କ ପ୍ରତି କେତେ ସରଳ ଓ ଉଦାର ଥିଲା, ପାଠକେ ଅନୁମାନ କରିପାରିବେ । ଦିନେ ମାଳତୀ ଦେବୀ ତାଙ୍କ ଅନୁଗୁଳ ଆଶ୍ରମରୁ କଟକ ଯାଉଥିବା ବାଟରେ ଗାନ୍ଧୀମନ୍ଦିରଠାରେ କିଛି ସମୟ ପାଇଁ ଅଟକିଥିଲେ । ସେତେବେଳେ ମୁଁ ଓ ଢେଙ୍କାନାଳରେ ମୃଷା ମଳିକଙ୍କ ସହ କେତେକ ମୁଖ୍ୟକର୍ମୀ ମନ୍ଦିରରେ ଉପସ୍ଥିତ ଥିଲୁ । ଢେଙ୍କାନାଳର କର୍ମୀମାନଙ୍କ ସଙ୍ଗରେ ମାଳତୀ ଦେବୀଙ୍କର ଘନିଷ୍ଠତା ଥିବାରୁ କଲେଜର ତାଙ୍କ କେତେଜଣେ ଅଚିହ୍ନା କ ନାହିଁ ଦେଖିଅସିବାକୁ ସେ ମୃଷା ମଳିକଙ୍କୁ ଅନୁରୋଧ କଲେ । କିନ୍ତୁ କେଜାଣି କାହିଁକି ସେଦିନ ମୃଷା ମଳିକ ବିରକ୍ତି ପ୍ରକାଶ କରି "ମୁଁ କ'ଣ ତୁମ ପିଅନ କି ?" ବୋଲି କହିବାରେ ମାଳତୀ ଦେବୀ ହସି ହସି କହିଲେ, "ତୁ ଆଜି ଟିକେ ପିଅନ ହୋଇଗଲେ କ୍ଷତି କ'ଣ ହେବ ?" ଏତିକରେ ମୃଷା ମଳିକ ଅତ୍ୟନ୍ତ ରାଗିଯାଇ "ତୁ ମୁଖ୍ୟମନ୍ତ୍ରୀଙ୍କ ସ୍ତ୍ରୀ ହୋଇଛୁ ବୋଲି ତୋର ଏତେ ଦେମାକ ହୋଇଯାଇଛି । ମୁଁ ଇଚ୍ଛା କଲେ ତୋତେ ଏ ସ୍ଥାନରୁ ଧକ୍କାଦେଇ ବାହାର କରିଦେବି" ବୋଲି କହିଥିଲେ । ଏହି ଘଟଣାରେ ଉପସ୍ଥିତ ଥିବା ସମସ୍ତେ ଦୁଃଖିତ ହୋଇ ମୃଷା ମଳିକକୁ ବାହାରକୁ ନେଇଗଲେ । ମାଳତୀ ଦେବୀ ମୃଷାର ବ୍ୟବହାର କଣେ ହେଲେ ଦେଖିଲି ତ ବୋଲି ମୋତେ କହି ଚାଲିଗଲେ । ଏହି ଘଟଣାର ୪ ଦିନ ପରେ ନବ ବାବୁ ଅନୁଗୁଳ ଯିବା ବାଟରେ ଗାନ୍ଧୀମନ୍ଦିରରେ ଓହ୍ଲାଇ କହିଲେ, "ବ୍ରଜ ବାବୁ, ମୃଷା ମାଳତୀ ଦେବୀଙ୍କୁ କ'ଣ କହିଲା କି ?" ମୋଠାରୁ ସମସ୍ତ ଘଟଣା ଶୁଣିସାରି ହସିଦେଇ ଏଇଥିପାଇଁ ମାଳତୀ ଦେବୀ କାହିଁକି ଏତେ ରାଗିଲେ ଓ ମୃଷା ଏଭଳି କଲେ ତାଙ୍କୁ କହିପାରିଲେ ବୋଲି କହିଥିଲେ । ମୃଷା ମଳିକ ପ୍ରତି ନବ ବାବୁ କିଭଳି ବ୍ୟବହାର କରିବେ ବୋଲି ଆମ ଭିତରେ ଯେଉଁ କଳ୍ପନା ଜଳ୍ପନା ଚାଲୁଥିଲା, ତାହା ଶେଷରେ ନବ ବାବୁଙ୍କ ହସରେ ଉଡ଼ିଯାଇଥିଲା । ଏହି ଘଟଣାରୁ ସାଧାରଣ କର୍ମୀମାନଙ୍କ ପ୍ରତି ନବ ବାବୁଙ୍କ ଉଦାରତାର ପରିଚୟ ମିଳିବ । ଆଜି ସେହି ନବ ବାବୁଙ୍କ ଭଳି ସରଳ, ଉଦାର ଓ ନିରାଡ଼ମ୍ବର ମୁଖ୍ୟମନ୍ତ୍ରୀ ନାହାନ୍ତି କି ମୃଷା ମଳିକ ଭଳି ନିର୍ଭୀକ, ସଚ୍ଚୋଟ, ସ୍ପଷ୍ଟବାଦୀ କଂଗ୍ରେସ କର୍ମୀ ନାହାନ୍ତି । ପାଠକମାନଙ୍କ ଅବଗତି ପାଇଁ ଏତିକି ଲେଖିଲେ ଯଥେଷ୍ଟ ହେବ ଯେ ଢେଙ୍କାନାଳ ପ୍ରଜାମଣ୍ଡଳ ଆନ୍ଦୋଳନ ବେଳେ ମୃଷା ମଳିକ ଥିଲେ ଜଣେ ସାଧାରଣ କର୍ମୀ, ପାଠ ଶାଠ ବେଶି ନ ଥିଲା । ମାତ୍ର ଦେଶସେବାର ପ୍ରଗାଢ଼ ଅନୁରକ୍ତି ଲାଗି ସେ ଫାଶିଦଣ୍ଡରେ ଦଣ୍ଡିତ ହୋଇ ପରେ ମୁକ୍ତ ପାଇଥିଲେ । ସେତେବେଳେ ଢେଙ୍କାନାଳ କାହିଁକି ସମଗ୍ର ଓଡ଼ିଶାର କଂଗ୍ରେସ କର୍ମୀ ମହଲରେ ମୃଷା ମଳିକର ନାମ ଜଣାଶୁଣା ଥିଲା । ତାଙ୍କ ସମ୍ପର୍କରେ ମୋର "ଭୁଲିବୁ ନାହିଁ" ପୁସ୍ତକରେ ବିସ୍ତୃତଭାବେ ଲେଖାଯାଇଛି । ନବ ବାବୁ ସେଦିନ ଅନୁଗୁଳ ଯାଇ କଟକ ଫେରିଯାଇଥିଲେ । ଏହାର ଦୁଇଦିନ ପରେ ମାଳତୀ ଦେବୀ କଟକରୁ ଅନୁଗୁଳ ଯିବା ବାଟରେ ଗାନ୍ଧୀ ମନ୍ଦିରରେ ଓହ୍ଲାଇଲେ । ଦୈବେ ମୃଷା ମଳିକ ସେଠାରେ ଉପସ୍ଥିତ ଥିଲେ । ମାଳତୀ ଦେବୀ ମୃଷାକୁ ଦେଖି କହିଲେ, "କିରେ ମୃଷାଭାଇ, ଆଉ ରାଗ ଅଛି କି ନାହିଁ । ଅନୁଗୁଳ ଯିବୁ କି ?" 'କାହିଁକି ଯିବି ନାହିଁ' ବୋଲି କହି ମୃଷା ମଳିକ ମାଳତୀ ଦେବୀଙ୍କଠାରୁ ତାଙ୍କ ବ୍ୟାଗ ଛଡ଼ାଇ ନେଇ ହସି ହସି ଗାଡ଼ିରେ ବସିଲେ ଓ ଦୁହେଁ ଖୁସିମନରେ ଅନୁଗୁଳ ଯାଇଥିଲେ । ମାଳତୀ ଦେବୀଙ୍କୁ ଢେଙ୍କାନାଳ ଲୋକେ ଭୁଲି ପାରିବେ ନାହିଁ । ୧୯୩୮ ମସିହା ପ୍ରଜାମଣ୍ଡଳ ଆନ୍ଦୋଳନ ବେଳେ ଅଗଷ୍ଟ

୧୨ ତାରିଖରେ ଢେଙ୍କାନାଳ ଟାଉନ ନିକଟ ଅଲସୁଆ ହାଟଚୋଟା ସଭାରେ ଗୁଳିରେ ଆହତ ହୋଇଥିବା ବ୍ୟକ୍ତିମାନଙ୍କୁ ମାଳତୀ ଦେବୀ ସେବା ଶୁଶ୍ରୂଷା କରି ତାଳଚେର ଟ୍ରେନରେ କଟକ ଡାକ୍ତରଖାନା ନେଇଥିଲେ ।

ନବ ବାବୁ ମୁଖ୍ୟମନ୍ତ୍ରୀତ୍ୱ ଛାଡ଼ିବା ପରେ ଢେଙ୍କାନାଳ ଆସି ଗାନ୍ଧୀମନ୍ଦିରରେ ଆମ୍ଭମାନଙ୍କ ସଙ୍ଗେ ହସଖୁସିରେ ଆଲୋଚନା କରି (ମୁଖ୍ୟମନ୍ତ୍ରୀତ୍ୱ ଛାଡ଼ିବାରେ ଲେଶମାତ୍ର ଦୁଃଖ ତାଙ୍କ ଚେହେରା ଓ କଥାବାର୍ତ୍ତାରୁ ଜଣା ପଡ଼ୁ ନ ଥିଲା) ମୋତେ ନେଇ କାମାକ୍ଷାନଗର ଗଲେ । ସେଠାରୁ ମୃଷା ମଲିକ ଘର ବାଲିଗୋରଡ଼ ବାଟ ଦେଇ ସେ ଅଞ୍ଚଳ କର୍ମୀମାନଙ୍କୁ ଭେଟି ସୁକିନ୍ଦା ବାଟେ କଲିକତା ଯାଇଥିଲେ । ଏଥିରୁ ଢେଙ୍କାନାଳ ପ୍ରତି ତାଙ୍କର ମମତା ସହଜେ ଅନୁମେୟ । ସେଦିନୁ ତାଙ୍କ ସହ ମୋର ଆଉ ଭେଟ ହୋଇ ନ ଥିଲା । ଗତ ବିଧାନସଭା ନିର୍ବାଚନ ବେଳେ ମାଳତୀ ଦେବୀ ଢେଙ୍କାନାଳ ନିର୍ବାଚନ ମଣ୍ଡଳୀରୁ ପ୍ରାର୍ଥୀ ହୋଇଥିବାରୁ ନବ ବାବୁ କିଛି ଦିନ ପାଇଁ ଢେଙ୍କାନାଳରେ ରହିଥିଲେ । ତାଙ୍କ ସହ ଏହି ସମୟରେ ମୋର ଶେଷ ସାକ୍ଷାତ ହୋଇଥିଲା ।

ସେ ମୋର ଦୀର୍ଘଦିନର ରାଜନୈତିକ ଗୁରୁ ଓ ବନ୍ଧୁ ଥିଲେ । ତାଙ୍କ ସହିତ ଦୀର୍ଘ ୪୭ ବର୍ଷର ସମ୍ପର୍କ ମୋର ଅଭୁଲା ସ୍ମୃତି ହୋଇ ରହିଲା । ଅତଏବ ଦୁଃଖର କଥା, ତାଙ୍କ ମୃତ୍ୟୁ ବେଳକୁ ମୁଁ ରୋଗଶଯ୍ୟାରେ ପଡ଼ିଥିବାରୁ ତାଙ୍କର ଶେଷ ଦର୍ଶନରୁ ବଞ୍ଚିତ ହେଲି । ତାଙ୍କ ଭଳି ଜଣେ ଉଦାର ନେତା ଆଜୀବନ ନିଃସ୍ୱାର୍ଥପର ଦେଶସେବୀଙ୍କ ସଂସ୍ପର୍ଶରେ ଆସିବାର ସୁଯୋଗ ପାଇଥିବାରୁ ମୁଁ ନିଜକୁ ଧନ୍ୟ ମନେକରିବା ସଙ୍ଗେ ସଙ୍ଗେ ତାଙ୍କର ସ୍ୱର୍ଗତ ଅମର ଆତ୍ମାର ସଦ୍‌ଗତି ପାଇଁ ପ୍ରଭୁଙ୍କ ନିକଟରେ ପ୍ରାର୍ଥନା କରୁଛି ।

---

# ଦଧୀଚି-ଅସ୍ଥି

**ବିନୋଦ ରାଉତରାୟ**

ସେତେବେଳେ ମୁଁ ଥିଲି ବାଲେଶ୍ୱର ହାଇସ୍କୁଲର ଛାତ୍ର । ପଢୁଥିଲି ତଳ ଶ୍ରେଣୀରେ । ତଥାପି ବିଦ୍ୟାଳୟର ଶିକ୍ଷକ ଓ ଛାତ୍ରମାନଙ୍କର ଦୃଷ୍ଟି ଆକର୍ଷଣ କରିପାରିଥିଲି ନିଜର ଯୋଗ୍ୟତା ବଳରେ । କବିତା ତ ଲେଖୁଥିଲି; ଅବଲୀଳାକ୍ରମେ ଯାହା ଦେଖୁଥିଲି, ତାହା ଆଙ୍କିଦେଇ ପାରୁଥିଲି । ସେଥିରେ ରଙ୍ଗ ବୋଳି ସୁନ୍ଦର କରିପାରୁଥିଲି । ଏହି କାର୍ଯ୍ୟ ଅନ୍ୟ କେହି କରିପାରୁ ନ ଥିଲେ ।

ଦିନେ ହଠାତ୍ ଖବର ମିଳିଲା ଯେ ତତ୍କାଳୀନ ମନ୍ତ୍ରୀ ନବକୃଷ୍ଣ ଚୌଧୁରୀ ଆମ ବିଦ୍ୟାଳୟ ପରିଦର୍ଶନରେ ଆସିବେ ଓ ସେଠାରେ କିଛି ସମୟ ଅତିବାହିତ କରି ଯିବେ, ସଭା କରିବାକୁ ନିକଟସ୍ଥ ରାଇସୁଙ୍ଗୁଡ଼ା ଗ୍ରାମକୁ । ସେ ହେଉଛି ସ୍ୱାଧୀନତାର ପ୍ରାକ୍କାଳ । ସମଗ୍ର ଭାରତରେ ହିନ୍ଦୁ ଓ ମୁସଲମାନମାନଙ୍କ ମଧ୍ୟରେ ବୈରଭାବ ଉତ୍କଟ ଆକାର ଧାରଣ କରିଥାଏ । କଲିକତା, ପଞ୍ଜାବ ଓ ବିହାର ପ୍ରଭୃତି ସ୍ଥାନରେ ରକ୍ତନଦୀ ବୋହିଯାଉଥାଏ କହିଲେ ଆଦୌ ଅତ୍ୟୁକ୍ତି ହେବ ନାହିଁ । ଯେଉଁମାନେ କାନ୍ଧକୁ କାନ୍ଧ ମିଳାଇ, ଗଳାକୁ ଗଳା ଲଗାଇ ଭାଇ ଭାଇ ଭଳି ଚଳୁଥିଲେ, ସେମାନଙ୍କ ଅନ୍ତରର ଅନ୍ତଃପୁରରେ ହିଂସା ଓ ଅବିଶ୍ୱାସ କାଳିମା ଏପରି ଦାନା ବାନ୍ଧିବାକୁ ଆରମ୍ଭ କରିଥାଏ ଯେ, ସତ୍ୟନିଷ୍ଠ, ବିନୟୀ, ଭଦ୍ର, ବିବେକୀ, କ୍ଷମାଶୀଳ, ସହନଶୀଳ ପ୍ରଭୃତି ଶବ୍ଦର ସ୍ଥାନ ଆଉ ନ ଥାଏ କହିଲେ ଚଳେ । ଏହିଭଳି ସମୟରେ ମାନବବାଦୀ ନବକୃଷ୍ଣ ଚୌଧୁରୀ ଯାଉଥାନ୍ତି ରାଇସୁଙ୍ଗୁଡ଼ା ମୁସଲମାନ୍ ପଲ୍ଲୀରେ ସଭା କରି ନିବିଡ଼ ନିଶ୍ଛିଦ୍ର ଭ୍ରାତୃଭାବର ପୁନଃପ୍ରତିଷ୍ଠା ପାଇଁ । ବାଲେଶ୍ୱର ହାଇସ୍କୁଲ ଗୋଟିଏ ଘରୋଇ ବିଦ୍ୟାଳୟ ହୋଇଥିବାରୁ ତା'ର ପ୍ରଧାନ ଶିକ୍ଷକ ଜଣେ ଅଭିଜ୍ଞ, ଶାସ୍ତ୍ରଜ୍ଞ ମୁସଲମାନ୍ ହୋଇଥିବାରୁ ତାର ପ୍ରକାଣ୍ଡ ଛାତ୍ରାବାସରେ ଶତାଧିକ ହିନ୍ଦୁ ଓ ମୁସଲମାନ୍ ଛାତ୍ର ଏକାଠି ବାସ କରୁଥିବାରୁ କିଛି ସମୟ ସେମାନଙ୍କ ସହିତ କଟାଇବାକୁ ବୋଧହୁଏ ତାଙ୍କ ଭଳି ପ୍ରତାପଶାଳୀ, ବୁଦ୍ଧିମାନ୍, ବିଚାରବନ୍ତ ଓ ସହନଶୀଳ ମନ୍ତ୍ରୀ ଉଚିତ ମନେକରିଥିଲେ । ତଦନୁସାରେ ବ୍ୟବସ୍ଥା ମଧ୍ୟ କରାଯାଇଥିଲା ।

ସେତେବେଳେ ଚିନ୍ତନ ଶକ୍ତି ଥିଲା ସୀମିତ । ତଥାପି ମନ୍ତ୍ରୀ ଚୌଧୁରୀ ଆସିବା ସମ୍ବାଦ କାନରେ ପଡ଼ିବା ସଙ୍ଗେ ସଙ୍ଗେ କୌଣସି ଏକ ପତ୍ରିକାରୁ ତାଙ୍କର ଫଟୋ ଯୋଗାଡ଼ କରିଥିଲି । ପ୍ରଗାଢ଼ ଆତ୍ମବିଶ୍ୱାସ, ଅଦମ୍ୟ ସାହସ ଓ ଅସୀମ ଉନ୍ମାଦନା ଫଳରେ ଅଳ୍ପ କେତେଟି ଘଣ୍ଟା ମଧ୍ୟରେ ରଙ୍ଗିନ୍ ପ୍ରତିକୃତିଟିଏ ପ୍ରସ୍ତୁତ କରି ପ୍ରଧାନ ଶିକ୍ଷକଙ୍କୁ ଦେଖାଇଲି । ପ୍ରଧାନ ଶିକ୍ଷକ ଏସ୍. ଏ. ମୁନିମ୍ ଖୁବ ଖୁସିଟାଏ ହୋଇଗଲେ ଓ ସ୍ଥିର କଲେ ତାହା ଯେପରି ହେଉ ମନ୍ତ୍ରୀ ମହୋଦୟଙ୍କୁ ଉପହାର ଦିଆଯିବ । ଆମମାନଙ୍କର ଆନନ୍ଦ ଏଣିକି ଦେଖେ କିଏ ?

ଯଥାନିର୍ଦ୍ଦିଷ୍ଟ ସମୟରେ ଚୌଧୁରୀଙ୍କ ଗାଡ଼ି ଆସି ବିଦ୍ୟାଳୟର ହତା ମଧ୍ୟରେ ପ୍ରବେଶ କଲା । ପୂର୍ବରୁ ପତାକା ଧରି ଧାଡ଼ିବାନ୍ଧି ଠିଆହୋଇଥିବା ଛାତ୍ରମାନେ ଅଭିନନ୍ଦନ ଜଣାଇଲେ । ସ୍ଥାନୀୟ ବିଶିଷ୍ଟ ଭଦ୍ରବ୍ୟକ୍ତି, ପ୍ରଧାନ ଶିକ୍ଷକ ଓ ଅନ୍ୟାନ୍ୟ ଶିକ୍ଷକମାନଙ୍କ ଗହଣରେ ଆଲୋଚନାରତ ଥିବା ସମୟରେ ଭେଟି ଦେଲି ସେ ପ୍ରତିକୃତିଟି । ଅପଟୁ ହାତରେ କେତେ ସାମାନ୍ୟ ସେ ଚିତ୍ର । ସେ କିନ୍ତୁ ଅସାମାନ୍ୟ ଆଗ୍ରହର ସହ ଗ୍ରହଣ କରିଥିଲେ ବୋଲି ଏବେ ମଧ୍ୟ ସ୍ମୃତିପଟରେ ତାହା ଅଙ୍କିତ ହୋଇ ରହିଛି । ମୋ ପଛେ ପଛେ ଛାତ୍ରମାନଙ୍କ ପକ୍ଷରୁ ଏକ ଦରଖାସ୍ତ ପେଶ୍ କରାଗଲା । ତାହା ଥିଲା ମନ୍ତ୍ରୀଙ୍କର ପରିଦର୍ଶନ ଯୋଗୁଁ ପରଦିନଟିକୁ ଛୁଟିଦିବସ ରୂପେ ଘୋଷଣା କରିବା ପାଇଁ ନିବେଦନ । ପୂର୍ବରୁ ଏହି ପରମ୍ପରା ରହିଥିଲା । ଉପସ୍ଥିତ ସରକାରୀ ଲୋକମାନେ ବିଦ୍ୟାଳୟ ପରିଦର୍ଶନ କଲେ, ଗୋଟିଏ ଦିନ ଛୁଟି ଦିଆଯାଉଥିଲା । ସେହି ପରମ୍ପରା ଅନୁସାରେ ଛୁଟିଦିନଟିଏ

ମାଗିବା ପାଇଁ ଛାତ୍ରମାନେ ଆଗେଇ ଆସିଥିଲେ; କିନ୍ତୁ ସେ ଦରଖାସ୍ତଟିକୁ ପଢ଼ି ପଢ଼ି ଗମ୍ଭୀର ହୋଇଯାଇଥିଲେ । ସବୁ ପ୍ରକାର ଅନୁରୋଧକୁ ପ୍ରତ୍ୟାଖ୍ୟାନ କରିଦେଇ କହିଥିଲେ ଯେ, କେତେ ମନ୍ତ୍ରୀ ଆସିବେ, କେତେ ଅଫିସର ଆସିବେ, ସେମାନେ ହେଉଛନ୍ତି ଦେଶର କର୍ମୀ । ବିଦ୍ୟାଳୟ ପରିଦର୍ଶନ କରିବା ଓ ତା'ର ଉନ୍ନତି ବିଧାନ କରିବା ସେମାନଙ୍କର କର୍ତ୍ତବ୍ୟ; କିନ୍ତୁ ଛୁଟି ଦେବା ଏହି କର୍ତ୍ତବ୍ୟ ମଧ୍ୟରେ ନୁହେଁ । ଏହିପରି ଛୁଟି ଦେଲେ ବିଦ୍ୟାଳୟ ତ ଅଧିକାଂଶ ଦିନ ବନ୍ଦ ରହିବ; ପାଠପଢ଼ା ହେବ କିପରି ?

ଏହି ଘଟଣାର ଅଳ୍ପ କେତେଟି ମାସ ପରେ କଟକଠାରେ ହେଉଥାଏ ଛାତ୍ରକଂଗ୍ରେସର ସମ୍ମେଳନ । ସାଲେପୁର ବିଦ୍ୟାଳୟର ପ୍ରତିନିଧି ଭାବରେ କେତେ ଜଣ ବନ୍ଧୁଙ୍କ ସହିତ ମୁଁ ଯାଇଥାଏ ସେଥିରେ ଯୋଗ ଦେବାକୁ । ପ୍ରତିନିଧିମାନଙ୍କର ରହିବା ପାଇଁ ବ୍ୟବସ୍ଥା ହୋଇଥାଏ ବାଙ୍କାବଜାର ଧର୍ମଶାଳାରେ । ଉତ୍କଳ ଛାତ୍ର କଂଗ୍ରେସର ସଭାପତି ଥାଆନ୍ତି ତତ୍କାଳୀନ ଛାତ୍ରନେତା ପ୍ରଦୀପ୍ତକିଶୋର ଦାସ । ସୌମ୍ୟଦର୍ଶନ ଯୁବକ । ପରବର୍ତ୍ତୀ କାଳରେ ସମାଜବାଦୀ ଜନନେତା, ମନ୍ତ୍ରୀ ଓ ସାପ୍ତାହିକ କୃଷକର ସମ୍ପାଦକ ରୂପେ ସୁନାମ ଅର୍ଜନ କରିଛନ୍ତି । ଆମେମାନେ ଚୌଧୁରୀବଜାରର ଛକ ଉପରେ ଥିବା ଡନ୍‌କ୍ୟାବିନ୍‌ରେ ଯଥାସଂକ୍ଷିପ୍ତ ସାନ୍ଧ୍ୟଭୋଜନ ସମାପ୍ତ କରି ଉପସ୍ଥିତ ହେଲୁ ମ୍ୟୁନିସିପାଲିଟି ପଡ଼ିଆରେ ଥିବା ଯଥାନିର୍ଦ୍ଦିଷ୍ଟ ମଞ୍ଚନିକଟରେ । ଅଧି-ବେଶନରେ ଯୋଗ ଦେଇଥାନ୍ତି ନିଖିଳ ଭାରତ ଛାତ୍ର କଂଗ୍ରେସର ସଭାପତି ଓ ଭାଷଣ ଦେବାକୁ ନିମନ୍ତ୍ରିତ ହୋଇ ଆସିଥାନ୍ତି ଗାନ୍ଧୀବାଦର ପ୍ରବକ୍ତା ମନ୍ତ୍ରୀ ନବକୃଷ୍ଣ ଚୌଧୁରୀ ।

ଅଳ୍ପଦିନ ପୂର୍ବରୁ ଚୌଧୁରୀଙ୍କର ଏକମାତ୍ର ପୁତ୍ର ଉଦୀୟମାନ ଛାତ୍ରନେତା କାଳୁ ଆତ୍ମହତ୍ୟା କରିଥାନ୍ତି । ଏହି ଆତ୍ମହତ୍ୟାର ପ୍ରକୃତ କାରଣ ଜଣାପଡ଼ି ନ ଥିଲେ ମଧ୍ୟ ସାଧୁ, ସଚ୍ଚୋଟ, ସ୍ପଷ୍ଟବାଦୀ ମନ୍ତ୍ରୀ ଚୌଧୁରୀ ଯେ ଅନେକ ପରିମାଣରେ ବିମର୍ଷ ହୋଇପଡ଼ିଥାନ୍ତି, ଯେକୌଣସି ବ୍ୟକ୍ତି ତାହାଙ୍କୁ ଦେଖି ଅନୁଭବ କରିପାରିବ । ସେ ଯଥାସମୟରେ ମାଇକ ପାଖକୁ ଆସିଥିଲେ ଓ ନିଜର ହୃଦ୍‌ଗମନୀୟ ନିବେଦନ ଛାତ୍ରମାନଙ୍କ ସମ୍ମୁଖରେ ଉପସ୍ଥାପିତ କରିଥିଲେ । ହତାଶା, ବିଫଳତା, ବ୍ୟର୍ଥତାଭରା ସଂସାରର ଜ୍ୱାଳାମୟ ସଂଗ୍ରାମ ମଧ୍ୟରେ ମାନବବାଦୀ ନିରଳସ କର୍ମୀ ଭଳି କାର୍ଯ୍ୟ କରିଯିବାକୁ ଉପଦେଶ ଦେଇଥିଲେ । ଆଜି ବି ମୋର ମନେପଡ଼ୁଛି, ସେ ଛୁଗୁଲାଇ କରି କହିଥିଲେ ଯେ ପ୍ରାଚୀନମାନଙ୍କଠାରୁ ନବୀନମାନେ ଅଧିକ ନୀତିହୀନ ହୋଇ-ପଡ଼ୁଛନ୍ତି । ସମାଜର ନୈତିକ ପତନ ପାଇଁ ସେ ଯୁବକମାନଙ୍କୁ ହିଁ ବିଶେଷ ଭାବରେ ଦାୟୀ କରିଥିଲେ । ସ୍ପଷ୍ଟ ଭାଷାରେ କହିଥିଲେ ଯେ, ଦ୍ୱିତୀୟ ମହାଯୁଦ୍ଧ ପୂର୍ବରୁ ଆମ ଦେଶରେ କଣ୍ଟ୍ରୋଲ ବିଭାଗ ନ ଥିଲା । ଏହା ଏକ ନୂତନ ବିଭାଗ ଓ ଏଥିରେ କାର୍ଯ୍ୟ କରୁଥିବା ଅଧିକାଂଶ କର୍ମୀ ସଦ୍ୟ ବିଦ୍ୟାଳୟ କିମ୍ବା ବିଶ୍ୱବିଦ୍ୟାଳୟ ତ୍ୟାଗ କରିଆସିଛନ୍ତି । ସେମାନଙ୍କ ଦୁର୍ବାର ଦୁରାକାଂକ୍ଷା ହିଁ କଳାପୋତେଇର ମୂଳବୀଜ ହୋଇଛି । ଏଣୁ ଯେଉଁ ଛାତ୍ରମାନେ ଛାତ୍ର ଥିଲାବେଳେ ଦୁର୍ନୀତି ବିରୁଦ୍ଧରେ ନିଜର ସ୍ୱର ଉତ୍ତୋଳନ କରୁଛନ୍ତି, ସେହିମାନେ ହିଁ ପରବର୍ତ୍ତୀ କାଳରେ ନୀତିହୀନ କାର୍ଯ୍ୟ କରିବାକୁ ଆଦୌ କୁଣ୍ଠିତ ହେଉନାହାନ୍ତି ।

ପରବର୍ତ୍ତୀ କାଳରେ ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟର ଛାତ୍ର ଥିବା ସମୟରେ ତାହାଙ୍କୁ ଏକାଧିକ ବାର ସେଠାରେ ଦେଖିଛି । ବ୍ୟକ୍ତିଗତ ପରିଚୟ ମଧ୍ୟ ଘଟିଛି । ବିଶ୍ୱଭାରତୀର ପ୍ରାକ୍ତନ ଛାତ୍ରମାନଙ୍କ ସଭାରେ ଯୋଗ ଦେବାକୁ ସେ ସମୟ ସମୟରେ ଯାଉଥିଲେ । ସେଠାରେ ଓଡ଼ିଶାର ଓ ଓଡ଼ିଶୀର ଅତୁଳନୀୟ ମର୍ଯ୍ୟାଦା ସମ୍ବନ୍ଧରେ ସର୍ବଦା ସଜାଗ ରହି କାର୍ଯ୍ୟ କରୁଥିଲେ । ତାଙ୍କର ପୋଖତ ବୁଦ୍ଧି, ବିସ୍ମରଣୀଳତା, ନିର୍ଭୀକତା ସର୍ବଦା ଲକ୍ଷ୍ୟ କରିବାର କଥା । ମୋର ଯେତେଦୂର ମନେହେଉଛି ଥରେ ପ୍ରସଙ୍ଗକ୍ରମେ ତତ୍କାଳୀନ ବଙ୍ଗୀୟ ଜନନେତା ଅତୁଲ୍ୟ ଘୋଷଙ୍କୁ ଓଡ଼ିଶା ଅଞ୍ଚଳ ମଧ୍ୟରେ ମେଦିନୀପୁର ରହିବା ବାଞ୍ଛନୀୟ ବୋଲି ବୁଝାଇବାକୁ ଯାଇ କହିଥିଲେ ଯେ, ମାଳତୀ ଦେବୀ ନିର୍ବାଚନ ପ୍ରଚାରରେ ମେଦିନୀପୁର ଯାଇଁ ସେଠାରେ ଲୋକମାନଙ୍କୁ ଓଡ଼ିଆ ଭାଷାରେ ବକ୍ତୃତା ଦେଇଥିଲେ ଓ ସେଠାକାର ଲୋକମାନେ ତାହାକୁ ଅତି ଆଗ୍ରହର ସହିତ ଶୁଣିଥିଲେ ଓ ବୁଝିଥିଲେ ।

ସେତେବେଳେ ସେ ଥାନ୍ତି ଓଡ଼ିଶାର ମୁଖ୍ୟମନ୍ତ୍ରୀ । ଅତୁଲ୍ୟ ଘୋଷ ଉତ୍ତର ଦେଇଥିଲେ—ମାଳତୀ ଦେବୀ ଯେଉଁପରି ଭାବରେ ଓଡ଼ିଆ କହିଥିବେ, ତାହା ବୁଝିବାକୁ ମେଦିନୀପୁରର ଲୋକମାନଙ୍କର ଆଦୌ ଅସୁବିଧା ହୋଇ ନ ଥିବ । ଏଭଳି ରହସ୍ୟପୂର୍ଣ୍ଣ ଶ୍ଳେଷୋକ୍ତିରେ ସେଠାରେ ଉପସ୍ଥିତ ସୁଧୀଜନମାନେ ହାସ୍ୟ ସମ୍ବରଣ କରିପାରି ନ ଥିଲେ । ତଥାପି ଚୌଧୁରୀ ନିର୍ବିକାର ଓ ନିଜର ଯୁକ୍ତିରେ ଅଟଳ ।

ଆମମାନଙ୍କର ଅନୁରୋଧ ରକ୍ଷାକରି କିଛି ଆର୍ଥିକ ସାହାଯ୍ୟ ମଞ୍ଜୁର କରିଥିଲେ, ଯାହା ଫଳରେ ପ୍ରଥମଥର ପାଇଁ ଓଡ଼ିଆ ସାହିତ୍ୟ ପରିଷଦ ପକ୍ଷରୁ ଏକ ଉନ୍ନତ ଧରଣର ସାଂସ୍କୃତିକ କାର୍ଯ୍ୟକ୍ରମ ବିଶ୍ୱଭାରତୀରେ କରାଯାଇପାରିଥିଲା । ନୃତ୍ୟଗୁରୁ କେଳୁଚରଣଙ୍କ ସହିତ କୁମାରୀ ମୀନାକ୍ଷି ନନ୍ଦ ମଧ୍ୟ ସେଥିରେ ଅଂଶଗ୍ରହଣ କରି ଓଡ଼ିଶୀ ନୃତ୍ୟ ପ୍ରତି ଅନୁରାଗୀମାନଙ୍କ ଦୃଷ୍ଟି ଆକର୍ଷଣ କରିପାରିଥିଲେ । ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରୀ ଥିବା ସମୟରେ ବିଶ୍ୱଭାରତୀରେ ଉପାଧ୍ୟୁତ୍ତର ଓଡ଼ିଆ ଅଧ୍ୟୟନ ଓ ଗବେଷଣା ବିଭାଗଟି ନିର୍ଦ୍ଦିଷ୍ଟ ରୂପ ଗ୍ରହଣ କରିପାରିଥିଲା ।

ଅଧ୍ୟୟନ ଶେଷରେ ମୁଁ କେବଳ ମୋର କର୍ମକ୍ଷେତ୍ରରେ ଅନୁଗୁଳଠାରେ ଯୋଗ ଦେଇ ନ ଥିଲି; ସେ ମଧ୍ୟ ମନ୍ତ୍ରୀତ୍ୱ ବର୍ଜନପୂର୍ବକ ଅନୁଗୁଳକୁ ଫେରିଆସିଥିଲେ । ସ୍ୱାଧୀନତା ସଂଗ୍ରାମର ଅନ୍ୟତମ ଯୋଦ୍ଧା, ଅନୁସନ୍ଧିତ୍ସୁ ଓ ଆନନ୍ଦର ଅନାହତ ପ୍ରେରଣା ନବକୃଷ୍ଣଙ୍କୁ ଯେଉଁପରି ଭାବରେ ପ୍ରତ୍ୟକ୍ଷ ରାଜନୀତିରୁ ବିଦାୟ କରିଦିଆଗଲା କିମ୍ବା ତାହାଙ୍କୁ ଇଚ୍ଛାକୃତ ଭାବରେ ବିଦାୟ ନେବା ପାଇଁ ପରିବେଶ ସୃଷ୍ଟି କରାଗଲା, ତା'ର ଇତିହାସ ଆଦୌ ରୁଚିକର ନୁହେଁ । ମାତ୍ର ଏକଥା ପ୍ରମାଣିତ ହୋଇଗଲା ଯେ ଘୃଣା, ବୈରତା ଓ ସ୍ଲୋଗାନ୍‌ଧର୍ମୀ ରାଜନୀତି ନିମନ୍ତେ ସେ ଥିଲେ ସମ୍ପୂର୍ଣ୍ଣ ଅନୁପଯୁକ୍ତ ।

ଯେଉଁଦିନ ସେ ଅନୁଗୁଳ ଫେରିଲେ, ସେଦିନର ସ୍ମୃତି ଅହରହ ଚିନ୍ତନ ଓ ଘର୍ଷଣ ଫଳରେ ମାନସପଟରୁ ଲିଭିଯାଇ ପାରିନାହିଁ । ତତ୍କାଳୀନ ଓଡ଼ିଶାର ମୁଖ୍ୟ ସଚିବ ଶିବରମଣ ତାହାଙ୍କୁ ବିଦାୟ ଦେଇଗଲେ ତାଳଚେର ଟ୍ରେନ୍‌ରେ । ସେ ମେରାମୁଣ୍ଡଳୀ ଷ୍ଟେସନ୍‌ରେ ଗାଡ଼ିରୁ ଓହ୍ଲାଇ ଅନୁଗୁଳ ବସ୍‌ରେ ଆସି ପହଞ୍ଚିଥିଲେ । ଗୋଟିଏ କାନ୍ଧରେ ଝୁଲି ଥାଏ, ବାଇନାକୁଲାର ଓ ଅନ୍ୟ କାନ୍ଧରେ କ୍ୟାମେରାଟିଏ । ପୃଷ୍ଠଦେଶରେ ଗୋଟିଏ କିଟ୍ ବ୍ୟାଗ୍ ମଧ୍ୟରେ ଆପଣାର ବ୍ୟବହୃତ ଅଳ୍ପ କେତେଖଣ୍ଡି ଲୁଗାପଟା ଓ ପାଦରେ ସାଧାରଣ ଚପଲ । ସିଧା ସିଧା ଡଗ ଡଗ ହୋଇ ଚାଲିଗଲେ ଅନୁଗୁଳ ସହରର ଶେଷ ପ୍ରାନ୍ତରେ ମନୋରମ ପରିବେଷ୍ଟନୀ ମଧ୍ୟରେ ଥିବା ବାଜିରାଉତ ଛାତ୍ରାବାସକୁ । ସୁପଣ୍ଡିତ, ଧୈର୍ଯ୍ୟବାନ୍, ବୁଦ୍ଧିମାନ୍, ଚିନ୍ତାଶୀଳ, ନ୍ୟାୟବନ୍ତ, ସମଦର୍ଶୀ ନବକୃଷ୍ଣଙ୍କୁ ସେଦିନ ଏହି ଅବସ୍ଥାରେ ଯିଏ ଦେଖିଛି, ସେ କେବେହେଲେ ପାସୋରି ଦେଇପାରିବ ନାହିଁ । ଯୌବନ ଅନ୍ତର୍ହିତ, ବଳ ଅତନାନ୍ତ, ଦୃଷ୍ଟିଶକ୍ତି ଜରାକ୍ରାନ୍ତ, ତଥାପି ସ୍ମିତୋଜ୍ଜ୍ୱଳ ମୁଖ, ନିଷ୍ପାପ ସ୍ନିଗ୍ଧ ଦୃଷ୍ଟି । 'ବାପି' ଆସିଗଲେଣି ବୋଲି ବାଜିରାଉତ ଛାତ୍ରାବାସର ଶ୍ରେଷ୍ଠ ଶ୍ରେଷ୍ଠ ଅନ୍ତେବାସୀଙ୍କ ମଧ୍ୟରେ ମହାସୋର ହର୍ଷୋଲ୍ଲାସପୂର୍ଣ୍ଣ କୋଳାହଳ ସୃଷ୍ଟି ହୋଇଗଲା । ଶୁଣାଗଲା ଅନ୍ୟାନ୍ୟ ସାମଗ୍ରୀ ଆସିବ ବିଜୁ ପଟ୍ଟନାୟକଙ୍କର ଟ୍ରକରେ । ଆସିଲା ମଧ୍ୟ । ଦେଖିଲୁ ସିନ୍ଧୀ ଗାଈ ଓ କେତେକ ଫୁଲଗଛ ଶୋଭିତ କୁଣ୍ଡ ମାତ୍ର । ସମୂହ ସ୍ୱାର୍ଥ ଦୃଷ୍ଟିରୁ ଗାଈ ଦିଆହୋଇଗଲା ଛାତ୍ରାବାସର ଗୋଶାଳାକୁ । ଫୁଲଗଛ-ଗୁଡ଼ିକ ରହିଗଲା ସେହି ସ୍ଥାନର ଶୋଭାବର୍ଦ୍ଧନ କରିବା ପାଇଁ ।

ଆଜିକାଲି ଦେଖାଯାଉଛି ରାଜନୀତି ଏକ ପ୍ରକାର ଉପାର୍ଜନର ପନ୍ଥା ହୋଇଗଲାଣି । ଯିଏ ଏମ୍.ଏଲ୍.ଏ. କିମ୍ବା ପଞ୍ଚାୟତ ସମିତିର ଚେୟାରମ୍ୟାନ୍‌ଟିଏ ହୋଇଯାଉଛି, ତାହାର ସ୍ୱାର୍ଥପ୍ରଣୋଦିତ ବ୍ୟାବସାୟିକ ତୀକ୍ଷ୍ଣତା ପ୍ରକଟିତ ହେଉଛି । ସେ ଚରାଚର ବିଶ୍ୱମଣ୍ଡଳ ପରିବ୍ୟାପ୍ତ ହୋଇପାରୁଛି । ଜ୍ଞାତ ଅଜ୍ଞାତ ସର୍ବଶକ୍ତିସମ୍ପନ୍ନ ବୋଲି ତାହାକୁ କୁହାଯାଉଛି । ଗାଡ଼ି ନ ହେଲେ ଗୋଡ଼ ଚଳୁନାହିଁ । ଅଣ୍ଟାଗୁଞ୍ଜା ନ ମିଳିଲେ ଲୋକସେବା ସମ୍ଭବ ହେଉନାହିଁ । ଗାଡ଼ି, ବାଡ଼ି, ଚୂଡ଼ି ସବୁ କିଛି ଆପେ ଆପେ ଆସିଯାଉଛି । ଆଲ୍ଲାଉଦ୍ଦିନର କୁହୁକ ଦୀପ ସତେ ଯେପରି ହାତମୁଠାରେ ଅଛି । ତୀକ୍ଷ୍ଣଧୀ, ସର୍ବତ୍ୟାଗୀ, ସତ୍ୟାନ୍ୱେଷୀ, ମାନବପ୍ରେମୀ ନବକୃଷ୍ଣ ଅନ୍ତତଃ ଛଅ ସାତ ବର୍ଷକାଳ ମୁଖ୍ୟମନ୍ତ୍ରୀ ରହି ଯେଉଁ ସମ୍ପତ୍ତି ନେଇ ଅନୁଗୁଳ ଯେପରିଭାବେ ଫେରିଥିଲେ, ତାହା ହୁଏତ ଦିନେ ଆଈମାଆର କାହାଣୀ ଭଳି ଶୁଣାଯିବ, କିନ୍ତୁ ସେଦିନ ତାହା ଥିଲା ନିରୋଳା ସତ୍ୟ !

ନବକୃଷ୍ଣଙ୍କ ପିତା ଗୋକୁଳାନନ୍ଦ ଥିଲେ ଓଡ଼ିଆ ଆନ୍ଦୋଳନର ପରାକ୍ରମୀ ନେତା ଓ ମଧୁବାବୁଙ୍କର ଡାହାଣ ହାତ ଭଳି । ଅଖଣ୍ଡ ପ୍ରତିପତ୍ତି ଓ ସମ୍ପତ୍ତି ପିଲାମାନଙ୍କ ନିମନ୍ତେ ଛାଡ଼ିଯାଇଥିଲେ । ସେ ସକଳ ପାର୍ଥିବ ମୋହ ନବକୃଷ୍ଣଙ୍କୁ ବାନ୍ଧି ରଖି ପାରି ନ ଥିଲା । ନୂତନ ସ୍ୱାଦର ଆସ୍ୱାଦନ ନିମନ୍ତେ ସେ ବାରମ୍ବାର ବନ୍ଧନ ଛିନ୍ନ କରିଥିଲେ । ପାରିବାରିକ ବନ୍ଧନ, ସାମାଜିକ ବନ୍ଧନ, ସମ୍ପତ୍ତିର ବନ୍ଧନ, କ୍ଷମତାର ବନ୍ଧନ ଗୋଟି ଗୋଟି ନିଷ୍ଠୁର ଭାବରେ ଖସିପଡ଼ିଥିଲା ତାଙ୍କର ଚିର ଗତିଶୀଳ ପାଦଯୁଗଳ ପାଖରେ । କେବଳ ରାଜନୈତିକ ବିପ୍ଳବ ନୁହେଁ; ସାମାଜିକ, ପାରିବାରିକ, ଅର୍ଥନୈତିକ ଓ ସାଂସ୍କୃତିକ ବିପ୍ଳବ ନିମନ୍ତେ ଚରମ ସାହସ ଓ ପରମ ତ୍ୟାଗ ପ୍ରଦର୍ଶନ କରିବା ଭଳି ବ୍ୟକ୍ତି ସେ ଥିଲେ । ଏହା ତାଙ୍କର ଯାତଶତ୍ରୁ ମଧ୍ୟ ସ୍ୱୀକାର କରିବ ।

---

# ଆଧୁନିକ ଓଡ଼ିଶାର ପ୍ରଥମ ନିର୍ମାତା
# ନବକୃଷ୍ଣ ଚୌଧୁରୀ

**ବଳରାମ ମହାନ୍ତ**

ସ୍ୱର୍ଗତ ନବକୃଷ୍ଣ ଚୌଧୁରୀ ସମଗ୍ର ଦେଶରେ ଜଣେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ, ନିର୍ଭୀକ ବିପ୍ଳବୀ, ସାଧୁ ଓ ସଚ୍ଚୋଟ ପ୍ରଶାସକ ଭାବରେ ସୁପରିଚିତ । ଦେଶରେ ଏହିଭଳି ଗୁଣସମ୍ପନ୍ନ ରାଜନୀତିଜ୍ଞଙ୍କ ଏକାନ୍ତ ଅଭାବ ଥିବା ଯୋଗୁଁ ବର୍ତ୍ତମାନ ତାଙ୍କର ଏହି ଗୁଣଗୁଡ଼ିକ ସମ୍ବନ୍ଧରେ ଆଲୋଚନା କରାଯାଉଛି । ମାତ୍ର ଦୀର୍ଘ କର୍ମମୟ ଜୀବନକାଳ ଭିତରେ ରାଜନୈତିକ, ପ୍ରଶାସନିକ ଓ ସାମାଜିକ କ୍ଷେତ୍ରରେ ତାଙ୍କର ବହୁ ଦୂରଦୃଷ୍ଟିସମ୍ପନ୍ନ ବୈପ୍ଳବିକ ଚିନ୍ତାଧାରାକୁ କାର୍ଯ୍ୟକାରୀ କରିବା ପାଇଁ ସେ ଯେଉଁ ଆନ୍ତରିକ ଉଦ୍ୟମ କରିଥିଲେ, ଅଦ୍ୟାବଧି ସେଗୁଡ଼ିକର ବିସ୍ତୃତ ଆଲୋଚନା ହୋଇନାହିଁ । ନିଜର ବୈପ୍ଳବିକ ଚିନ୍ତାଧାରା ଓ କାର୍ଯ୍ୟକଳାପକୁ ପ୍ରଚାର କରିବାରେ ଶ୍ରୀଯୁକ୍ତ ଚୌଧୁରୀ କେବେହେଲେ ଆଗ୍ରହ ପ୍ରକାଶ କରି ନ ଥିଲେ କି କେହି ତାହା ପ୍ରଚାର କରୁ ବୋଲି ସେ ନିଜ ଆଡ଼ୁ ଉଦ୍ୟମ କରୁ ନ ଥିଲେ । ତେଣୁ ସ୍ୱାଧୀନ ଭାରତ ନିର୍ମାଣ ପାଇଁ କେତେକ କ୍ଷେତ୍ରରେ ଏକ ସମୟରେ ସେ ପଥପ୍ରଦର୍ଶକ ହୋଇଥିଲେ ମଧ୍ୟ ସ୍ୱାଧୀନୋତ୍ତର ଇତିହାସରେ ତାଙ୍କ ଚିନ୍ତାଧାରା ଓ କାର୍ଯ୍ୟକଳାପ ଉପଯୁକ୍ତ ସ୍ଥାନ ପାଇପାରିନାହିଁ । ପରଲୋକ ପରେ ତାଙ୍କ ବୈପ୍ଳବିକ ଚିନ୍ତାଧାରା ଓ କାର୍ଯ୍ୟକଳାପଗୁଡ଼ିକୁ ସଂଗ୍ରହ ଓ ଲିପିବଦ୍ଧ କରି ଦେଶର ବୁଦ୍ଧିଜୀବୀଙ୍କ ନିକଟରେ ଉପସ୍ଥାପିତ କରିବା ଓଡ଼ିଶାବାସୀଙ୍କର ଏକାନ୍ତ କର୍ତ୍ତବ୍ୟ ।

ଏହି କ୍ଷୁଦ୍ର ଲେଖା ଭିତରେ ବିପ୍ଳବୀ ନବକୃଷ୍ଣ ଚୌଧୁରୀଙ୍କ ଚିନ୍ତାଧାରା ଓ କାର୍ଯ୍ୟକଳାପ ଆଲୋଚନା ସମ୍ଭବ ନୁହେଁ । ଶ୍ରୀଯୁକ୍ତ ଚୌଧୁରୀ ଯେଉଁ ୯ ବର୍ଷ କାଳ ଓଡ଼ିଶାର ଶାସନଦାୟିତ୍ୱରେ ଥିଲେ, ସେହି ସମୟ ଭିତରେ ତାଙ୍କର କେତେକ ବୈପ୍ଳବିକ ଦୂରଦୃଷ୍ଟିସମ୍ପନ୍ନ କାର୍ଯ୍ୟକଳାପ ସମ୍ବନ୍ଧରେ ଆଲୋଚନା କରିବା ପାଇଁ ଉଦ୍ୟମ କରିବି । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହେବା ପରେ ୧୯୩୭ ରେ ଓଡ଼ିଶାରେ ବିଧାନସଭାକୁ ପ୍ରଥମ ନିର୍ବାଚନ ହେବା ପରଠାରୁ ୧୯୫୬ ଶେଷ ଭାଗରେ ଶାସନ ଦାୟିତ୍ୱରୁ ଅବ୍ୟାହତି ନେଇ ଚାଲିଯିବା ପର୍ଯ୍ୟନ୍ତ ଯେତେଥର ନିର୍ବାଚନ ହୋଇଛି, ସେ ସବୁଥର କଂଗ୍ରେସ ପ୍ରାର୍ଥୀ ଭାବରେ ଓଡ଼ିଶା ବିଧାନ-ସଭାକୁ ନିର୍ବାଚିତ ହୋଇଆସିଛନ୍ତି ଏବଂ ସେଥିଭିତରୁ ୧୯୪୬ ଠାରୁ ୧୯୪୮ ପର୍ଯ୍ୟନ୍ତ ରାଜ୍ୟର ରାଜସ୍ୱ ଓ ଯୋଗାଣ ମନ୍ତ୍ରୀ ଏବଂ ୧୯୫୦ ମସିହାଠାରୁ ୧୯୫୬ ଶେଷଭାଗ ପର୍ଯ୍ୟନ୍ତ ମୁଖ୍ୟମନ୍ତ୍ରୀ ଭାବରେ ଶାସନ ଦାୟିତ୍ୱ ବହନ କରିଥିଲେ । ୧୯୪୮ ମସିହାରେ ନବକୃଷ୍ଣ ଚୌଧୁରୀ ରାଜସ୍ୱ ମନ୍ତ୍ରୀ ପଦରୁ ଇସ୍ତଫା ଦେଇ ଚାଲିଯିବା ପରେ ୧୯୫୦ ମସିହାରେ ଯେତେବେଳେ ମୁଖ୍ୟମନ୍ତ୍ରୀ ଡକ୍ଟର ହରେକୃଷ୍ଣ ମହତାବ କେନ୍ଦ୍ର ମନ୍ତ୍ରିମଣ୍ଡଳରେ ଯୋଗ ଦେବା ପାଇଁ ଚାଲିଯିବା ସ୍ଥିର ହେଲା, ସେତେବେଳେ ଶ୍ରୀଯୁକ୍ତ ଚୌଧୁରୀ ଆଉ ଶାସନକ୍ଷେତ୍ରକୁ ଫେରିବେ ନାହିଁ ବୋଲି ଧରିନେଇ କଂଗ୍ରେସ ଦଳର ନେତୃତ୍ୱ ପାଇଁ ପ୍ରତିଦ୍ୱନ୍ଦ୍ୱିତା ହେବା କଥା ଜଣା-ଯାଉଥିଲା; ମାତ୍ର ସେତେବେଳର ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁଙ୍କ ଅନୁରୋଧକ୍ରମେ ଶ୍ରୀ ନବକୃଷ୍ଣ ଚୌଧୁରୀ ପୁଣି ଶାସନକ୍ଷେତ୍ରକୁ ଫେରି ମୁଖ୍ୟମନ୍ତ୍ରୀ ଦାୟିତ୍ୱ ଗ୍ରହଣ କଲେ । ସ୍ୱାଧୀନ ଭାରତର ନୂତନ ସମ୍ବିଧାନ ଅନୁଯାୟୀ ଶାସନକୁ ପୁନର୍ଗଠିତ କରି ଏବଂ ପ୍ରଥମ ପଞ୍ଚବାର୍ଷିକ ଯୋଜନାକୁ କାର୍ଯ୍ୟକାରୀ କରି ଆଧୁନିକ ଓଡ଼ିଶାର ଭିତ୍ତି ସ୍ଥାପନ କରିବା ପାଇଁ ଶ୍ରୀଯୁକ୍ତ ଚୌଧୁରୀ ସର୍ବାପେକ୍ଷା ଯୋଗ୍ୟ ବୋଲି ବିଚାର କରି ତାଙ୍କ ଉପରେ ଶାସନ ଦାୟିତ୍ୱ ନ୍ୟସ୍ତ କରାଯାଇଥିଲା ।

## ତାଙ୍କ ନେତୃତ୍ୱରେ ପ୍ରଥମ ପଞ୍ଚବାର୍ଷିକ ଯୋଜନା କାର୍ଯ୍ୟକାରୀ ହେଲା

୧୯୫୦ ମସିହାର ପ୍ରଥମ ଭାଗରେ ଶ୍ରୀ ନବକୃଷ୍ଣ ଚୌଧୁରୀ ଯେତେବେଳେ ମୁଖ୍ୟମନ୍ତ୍ରୀ ଭାବରେ ଶାସନ ଦାୟିତ୍ୱ ଗ୍ରହଣ କଲେ, ସେ ସମୟରେ ଓଡ଼ିଶାର ଆର୍ଥିକ ଓ ପ୍ରଶାସନିକ ଅବସ୍ଥା ବର୍ତ୍ତମାନ କଳନା କରିହେବ ନାହିଁ । ଭୂରାଜସ୍ୱ ସେତେ-

ବେଳେ ଓଡ଼ିଶା ସରକାରଙ୍କର ପ୍ରଧାନ ଅସ୍ଥିର ପନ୍ଥା ଏବଂ କୃଷି ସମସ୍ତ ଓଡ଼ିଶାବାସୀଙ୍କର ଜୀବନଧାରଣରେ ଏକମାତ୍ର ଅବଲମ୍ବନ । କୌଣସି ବୃହତ୍ ଶିଳ୍ପ ତ ଦୂରର କଥା, ମଧ୍ୟମ ଧରଣର ଶିଳ୍ପଟିଏ ସ୍ଥାପନ କରିବା ଭଳି ଆର୍ଥିକ ସମ୍ବଳ ବା ଆନୁଷଙ୍ଗିକ ସୁବିଧା ଓଡ଼ିଶାରେ ନ ଥିଲା । ବିଦ୍ୟୁତ୍ ଶକ୍ତି, ରାସ୍ତାଘାଟ ତଥା ଅନ୍ୟାନ୍ୟ ଆନୁଷଙ୍ଗିକ ସୁବିଧାର ଅଭାବ ଯୋଗୁଁ ବାହାରର ଶିଳ୍ପପତି-ମାନେ ପ୍ରାକୃତିକ ସମ୍ପଦପୂର୍ଣ୍ଣ ଓଡ଼ିଶାରେ ଶିଳ୍ପ ସ୍ଥାପନ ପାଇଁ ଆଗ୍ରହ ପ୍ରକାଶ କରୁ ନ ଥିଲେ । ଏଣେ ଓଡ଼ିଶାରେ ଲୋକଙ୍କର ଆର୍ଥିକ ସମ୍ବଳ ନ ଥିଲା କି ତାଲିମପ୍ରାପ୍ତ ବୈଷୟିକ ବ୍ୟକ୍ତି ନ ଥିଲେ । ଏହି ପୃଷ୍ଠଭୂମିରେ ପ୍ରଥମ ପଞ୍ଚବାର୍ଷିକ ଯୋଜନା (୧୯୫୧ ଠାରୁ ୧୯୫୬ ପର୍ଯ୍ୟନ୍ତ) କାର୍ଯ୍ୟକାରୀ କରିବା ଦାୟିତ୍ୱ ପଡ଼ିଥିଲା ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କ ନେତୃତ୍ୱରେ ଗଠିତ ମନ୍ତ୍ରିମଣ୍ଡଳ ଉପରେ । ମାତ୍ର ଦୁଇବର୍ଷ ପୂର୍ବରୁ ଓଡ଼ିଶା ସହିତ ମିଶିଥିବା ପ୍ରାକୃତିକ ସମ୍ପଦପୂର୍ଣ୍ଣ ପୂର୍ବତନ ଗଡ଼ଜାତ ଅଞ୍ଚଳଗୁଡ଼ିକୁ ସେତେ-ବେଳର ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କ ସ୍ତରକୁ ଆଣିବା କଠିନ ବ୍ୟାପାର ବୋଲି ମନେ ହେଉଥିଲା । ପଞ୍ଚବାର୍ଷିକ ଯୋଜନା ଅନୁସାରେ ଯୋଜନାବଦ୍ଧ ଅର୍ଥନୀତିକୁ କାର୍ଯ୍ୟକାରୀ କରିବା ପାଇଁ ଆବଶ୍ୟକୀୟ ଆର୍ଥିକ ସମ୍ବଳ ମିଳିବା ନିମନ୍ତେ କେନ୍ଦ୍ର-ସରକାରଙ୍କଠାରୁ ପ୍ରତିଶ୍ରୁତି ମିଳିଥିଲେ ମଧ୍ୟ ତାକୁ କାର୍ଯ୍ୟକାରୀ କରିବା ପାଇଁ ଓଡ଼ିଶା ସରକାରଙ୍କ ବୈଷୟିକ ଶକ୍ତି ନ ଥିଲା । ସେତେବେଳେ କୃଷି ଇଞ୍ଜିନିୟରିଂ ଶିକ୍ଷା ଦେବା ପାଇଁ ଓଡ଼ିଶାରେ କୌଣସି ଅନୁଷ୍ଠାନ ନ ଥିଲା । କଟକର ଇଞ୍ଜିନିୟରିଂ ସ୍କୁଲ ଓ ମେଡ଼ିକାଲ କଲେଜ ଥିଲା ଏକମାତ୍ର ଉଚ୍ଚ ବୈଷୟିକ ଶିକ୍ଷାନୁଷ୍ଠାନ ।

## କୃଷି ଓ ପଶୁପାଳନ କଲେଜ ପ୍ରତିଷ୍ଠା

ପ୍ରଥମ ପଞ୍ଚବାର୍ଷିକ ଯୋଜନାରେ କୃଷିକୁ ଅଗ୍ରାଧିକାର ଦିଆଯାଇଥିବାରୁ ଚୌଧୁରୀ ମନ୍ତ୍ରିମଣ୍ଡଳ ଓଡ଼ିଶାରେ ସର୍ବ-ପ୍ରଥମେ ଗୋଟିଏ କୃଷି କଲେଜ ଏବଂ ଆଉ ଗୋଟିଏ ପଶୁପାଳନ ଓ ପଶୁ ଚିକିତ୍ସା କଲେଜ ପ୍ରତିଷ୍ଠା କରିଥିଲେ ଏବଂ ଉନ୍ନତ ଧରଣର କୃଷି ପଦ୍ଧତି ପ୍ରବର୍ତ୍ତନ କରି କୃଷି ଉତ୍ପାଦନ ବୃଦ୍ଧି କରିଥିଲେ ।

## ପ୍ରଥମ ପଥପ୍ରଦର୍ଶକ ଶିଳ୍ପପୁଞ୍ଜି ପ୍ରତିଷ୍ଠା

ମୁଖ୍ୟତଃ ମୂଳଧନର ଅଭାବ ଯୋଗୁଁ ଓଡ଼ିଶାର ଯୁବକମାନେ ଶିଳ୍ପ ପ୍ରସାର ଦିଗରେ ଆଗ୍ରହ ପ୍ରକାଶ କରୁ ନ ଥିଲେ । ତେଣୁ ଓଡ଼ିଶାର ଯୁବକମାନଙ୍କ ଭିତରେ ଶିଳ୍ପ ସ୍ଥାପନ ନିମନ୍ତେ ଚୌଧୁରୀ ମନ୍ତ୍ରିମଣ୍ଡଳ ଏକ ପଥପ୍ରଦର୍ଶକ ଶିଳ୍ପ ଯୋଜନା କଟକ ନିକଟରେ ମଧୁପାଟଣାଠାରେ କାର୍ଯ୍ୟକାରୀ କରିଥିଲେ । ଏହି ଶିଳ୍ପ କାରଖାନା ସ୍ଥାପନରେ ନିଜେ ସରକାର ଶତକଡ଼ା ୯୦ ଭାଗ ଅର୍ଥ ବିନିଯୋଗ କରିଥିଲେ ଏବଂ ଯୁବକ ଶିଳ୍ପୋଦ୍ୟୋଗୀମାନଙ୍କୁ ମାତ୍ର ୧୦ ଭାଗ ଅର୍ଥ ବିନିଯୋଗ କରି ଅଂଶୀଦାର ହେବା ପାଇଁ ସୁବିଧା ଦେଇଥିଲେ । କାଳକ୍ରମେ ସେହି ଅଂଶୀଦାରମାନେ ହିଁ କାରଖାନାର ସମସ୍ତ ଅଂଶ କିଣିନେଇ ମାଲିକ ହେବାର ପରିକଳ୍ପନା ରହିଥିଲା । ଏହାଛଡ଼ା ଡୁଡୁମା ଓ ହୀରାକୁଦ ଜଳ-ବିଦ୍ୟୁତ୍ ଯୋଜନା ନିର୍ମାଣ କାର୍ଯ୍ୟକୁ ତ୍ୱରାନ୍ୱିତ କରି ଶେଷ କରିପାରିଥିବାରୁ ପ୍ରଥମ ଯୋଜନାର ଶେଷ ଭାଗରେ ଚୌଦ୍ୱାରଠାରେ ଗୋଟିଏ କାଗଜକଳ, କେନ୍ଦୁଝରର ଯୋଡ଼ାଠାରେ ଗୋଟିଏ ଫେରୋମାଙ୍ଗାନିଜ କାରଖାନା, କୋରାପୁଟର ରାୟଗଡ଼ାଠାରେ ଫେରୋମାଙ୍ଗାନିଜ କାରଖାନା ଶିଳ୍ପପତିମାନଙ୍କ ଦ୍ୱାରା ସ୍ଥାପିତ ହେବା ସମ୍ଭବ ହୋଇଥିଲା ।

## ରାଉରକେଲା ଇସ୍ପାତ କାରଖାନା ଓ ହୀରାକୁଦ ବନ୍ଧ ନିର୍ମାଣରେ ତାଙ୍କର ଅବଦାନ

କେନ୍ଦ୍ର ସରକାରଙ୍କ ଉଦ୍ୟମରେ ପ୍ରତିଷ୍ଠିତ ଦେଶର ସର୍ବପ୍ରଥମ ରାଷ୍ଟ୍ରାୟତ୍ତ ଇସ୍ପାତ କାରଖାନାର ନିର୍ମାଣ କାର୍ଯ୍ୟ ପ୍ରଥମ ପଞ୍ଚବାର୍ଷିକ ଯୋଜନା କାଳ ଭିତରେ ଆରମ୍ଭ ହୋଇ ପ୍ରାୟ ଶେଷ ହୋଇଥିଲା ଏବଂ ହୀରାକୁଦ ବହୁମୁଖୀ ଯୋଜନା ଓ ଡୁଡୁମା ଜଳ-ବିଦ୍ୟୁତ୍ ଯୋଜନାର ନିର୍ମାଣ କାର୍ଯ୍ୟ ଏହି ଯୋଜନା କାଳରେ ହିଁ ଶେଷ ହୋଇଥିଲା । ରାଉରକେଲା ଇସ୍ପାତ କାରଖାନା ଓ ହୀରାକୁଦ ଯୋଜନା ନିର୍ମାଣରେ ବ୍ୟକ୍ତିଗତ ଭାବରେ ସେତେବେଳର ମୁଖ୍ୟମନ୍ତ୍ରୀ ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କ ଅବଦାନ ଉଲ୍ଲେଖଯୋଗ୍ୟ । ଭାରତର ପ୍ରଥମ ରାଷ୍ଟ୍ରାୟତ୍ତ ଇସ୍ପାତ କାରଖାନା ନିଜ ନିଜ ରାଜ୍ୟରେ ନିର୍ମାଣ ପାଇଁ ସେତେବେଳର ମଧ୍ୟପ୍ରଦେଶ ଓ ପଶ୍ଚିମବଙ୍ଗର ପ୍ରଭାବଶାଳୀ ମୁଖ୍ୟମନ୍ତ୍ରୀମାନେ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁଙ୍କୁ ପ୍ରଭାବିତ କରିବା ପାଇଁ ସବୁମତେ ଉଦ୍ୟମ

କରିଥିଲେ ମଧ୍ୟ ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀଙ୍କ ପ୍ରତି ପଣ୍ଡିତ ନେହେରୁଙ୍କ ଶ୍ରଦ୍ଧା ଓ ବିଶ୍ୱାସ ଥିବାରୁ ଶେଷରେ ରାଉରକେଲାରେ ହିଁ ଦେଶର ପ୍ରଥମ ରାଷ୍ଟ୍ରାୟତ୍ତ ଇସ୍ପାତ ଶିଳ୍ପକାରଖାନା ପାଇଁ ସ୍ଥାନ ନିରୂପିତ ହୋଇଥିଲା । ଅବଶ୍ୟ କେନ୍ଦ୍ରୀୟ ବୈଷୟିକ ବିଶେଷଜ୍ଞମାନେ ବୈଷୟିକ ତଥ୍ୟ ଦୃଷ୍ଟିରୁ ରାଉରକେଲାକୁ ସର୍ବାପେକ୍ଷା ଉପଯୁକ୍ତ ସ୍ଥାନ ବୋଲି ନିରୂପଣ କରିଥିଲେ, ମାତ୍ର ଏହାକୁ ବଦଳାଇ-ଦେବା ପାଇଁ ପଣ୍ଡିତ ନେହେରୁଙ୍କୁ ପ୍ରଭାବିତ କରିବା ନିମନ୍ତେ ଉଦ୍ୟମ ହୋଇଥିଲା । ସେହିପରି ମୁଖ୍ୟମନ୍ତ୍ରୀ ଭାବରେ ଶ୍ରୀଯୁକ୍ତ ଚୌଧୁରୀ ହୀରାକୁଦ ବହୁମୁଖୀ ଯୋଜନାର ନିର୍ମାଣ କାର୍ଯ୍ୟ ତ୍ୱରାନ୍ୱିତ କରିବା ପାଇଁ ବ୍ୟକ୍ତିଗତ ଭାବରେ ତୀକ୍ଷ୍ଣ ଦୃଷ୍ଟି ଦେଇଥିଲେ । ସେ ମୁଖ୍ୟମନ୍ତ୍ରୀ ଦାୟିତ୍ୱ ଗ୍ରହଣ କଲାବେଳକୁ ହୀରାକୁଦ ଯୋଜନାର ପ୍ରାଥମିକ କାର୍ଯ୍ୟ ମାତ୍ର ଆରମ୍ଭ ହେଉଥିଲା । ସେ ହୀରାକୁଦ କଣ୍ଟ୍ରୋଲ ବୋର୍ଡ଼ର ପ୍ରଥମ ସଭାପତି ଥିଲେ । ହୀରାକୁଦ ବନ୍ଧ ନିର୍ମାଣର ଶେଷ ପର୍ଯ୍ୟାୟରେ ୧୯୫୫ ମସିହା ବେଳକୁ ବନ୍ଧ ଫଳରେ ବୁଡ଼ି ଯାଉଥିବା ଅଞ୍ଚଳର ୨୦୦ ଗ୍ରାମର ଅଧିବାସୀଙ୍କୁ ଆଣି ଅନ୍ୟତ୍ର ଥଇଥାନ କରିବାବେଳେ ସେ କିପରି କଠିନ ଅବସ୍ଥାର ସମ୍ମୁଖୀନ ହୋଇଥିଲେ, ତାହା ଯେ ନ ଦେଖିଛି ସେ କଦାପି ବିଶ୍ୱାସ କରିପାରିବ ନାହିଁ । ବୁଡ଼ିଅଞ୍ଚଳର ଲୋକଙ୍କୁ ଥଇଥାନ ପାଇଁ ନିରୂପିତ ସ୍ଥାନମାନଙ୍କୁ ଉଠିଆସିବା ନିମନ୍ତେ ଶ୍ରୀଯୁକ୍ତ ଚୌଧୁରୀ ନିଜେ ବୁଡ଼ିଅଞ୍ଚଳର ଗ୍ରାମେ ଗ୍ରାମେ ଯାଇ ଲୋକଙ୍କୁ ବୁଝାଇଥିଲେ । ତଥାପି ଶେଷ ମୁହୂର୍ତ୍ତରେ ସେମାନଙ୍କ ଭିତରୁ ଅନେକ ନ ଆସିବାରୁ ସାମରିକ ପୋଲିସ ଗାଡ଼ିରେ ସେମାନଙ୍କ ଜିନିଷପତ୍ର ଜବରଦସ୍ତି ଉଠାଇ ଆଣିବାକୁ ପଡ଼ିଥିଲା । ଏହି ସମୟରେ ଓଡ଼ିଶା ବିଧାନ ସଭା ଭିତରେ ତଥା ସମ୍ବଲପୁର ଅଞ୍ଚଳରେ ଯେଉଁ ତୀବ୍ର ଆନ୍ଦୋଳନ ହୋଇଥିଲା, ତା'ର ସେ ସମ୍ମୁଖୀନ ହୋଇଥିଲେ ।

ଘଟଣାକ୍ରମେ ଶ୍ରୀଯୁକ୍ତ ଚୌଧୁରୀ ରାଉରକେଲା ଇସ୍ପାତ କାରଖାନା ତଥା ହୀରାକୁଦ ବନ୍ଧ ଉଦ୍‌ଘାଟନ ଉତ୍ସବ ବେଳକୁ ଶାସନ ଦାୟିତ୍ୱରେ ନ ଥିଲେ । ସେ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେଇ ଚାଲିଯିବାର ମାତ୍ର କିଛିମାସ ପରେ ତାଙ୍କ ଶାସନକାଳରେ ନିର୍ମିତ ଓଡ଼ିଶାର ଏହି ଦୁଇଟି ସର୍ବବୃହତ୍ ଯୋଜନା ଉଦ୍‌ଘାଟିତ ହୋଇଥିଲା । ଶ୍ରୀଯୁକ୍ତ ଚୌଧୁରୀ ୧୯୫୬ ଅକ୍ଟୋବର ମାସରେ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେଇ ଚାଲିଗଲେ ଏବଂ ହୀରାକୁଦ ବନ୍ଧ ଏହାର ୪ ମାସ ପରେ ୧୯୫୭ ମାର୍ଚ୍ଚ ମାସରେ ଉଦ୍‌ଘାଟିତ ହୋଇଥିଲା ।

## ଶାସନ ବିକେନ୍ଦ୍ରୀକରଣ ପାଇଁ ଅଞ୍ଚଳ ଶାସନ ଆଇନ

ମୁଖ୍ୟମନ୍ତ୍ରୀ ଭାବରେ ଶ୍ରୀଯୁକ୍ତ ଚୌଧୁରୀ ଓଡ଼ିଶାରେ ପ୍ରଥମ ପଞ୍ଚବାର୍ଷିକ ଯୋଜନା (୧୯୫୧–୫୨ ରୁ ୧୯୫୫–୫୬) କୁ କାର୍ଯ୍ୟକାରୀ କରି ଆଧୁନିକ ଓଡ଼ିଶାର ଯେ ଅର୍ଥନୈତିକ ଭିତ୍ତି ସ୍ଥାପନ କରିଥିଲେ ସେତିକି ନୁହେଁ, ଏହି ସମୟ ଭିତରେ ସେ ତାଙ୍କର କେତେକ ବୈପ୍ଳବିକ ଚିନ୍ତାଧାରାକୁ ବାସ୍ତବ ରୂପ ଦେବା ପାଇଁ ଉଦ୍ୟମ କରିଥିଲେ । ଶାସନକୁ ବିକେନ୍ଦ୍ରୀକରଣ କରି ଶାସନର ବିଭିନ୍ନ ସ୍ତରରେ ଜନସାଧାରଣଙ୍କୁ ଭାଗୀଦାର କରିବା ପାଇଁ ଏକ ପରିକଳ୍ପନାର ରୂପରେଖ ଦେଇଥିଲେ । ୧୯୪୭ ରେ ସେ ରାଜସ୍ୱ ମନ୍ତ୍ରୀ ଥିଲାବେଳେ ତାଙ୍କ ନେତୃତ୍ୱରେ ଗଠିତ ଓଡ଼ିଶା ଜମିଜମା କମିଟି ଜମିଦାରୀ ଉଚ୍ଛେଦ ପାଇଁ ଏକ ପୂର୍ଣ୍ଣାଙ୍ଗ ଯୋଜନା ପ୍ରସ୍ତୁତ କରିଦେବା ସଙ୍ଗେ ସଙ୍ଗେ ଶାସନକୁ ବିକେନ୍ଦ୍ରୀକରଣ କରି ଶାସନରେ ଜନସାଧାରଣଙ୍କୁ ଭାଗୀଦାର କରିବା ନିମନ୍ତେ ଅଞ୍ଚଳ ଶାସନ ନାମରେ ଏକ ପରିକଳ୍ପନା ସୁପାରିଶ କରିଥିଲେ । ଏହି ପରିକଳ୍ପନା ଅନୁଯାୟୀ ଓଡ଼ିଶାକୁ ବିଭିନ୍ନ ଅଞ୍ଚଳରେ ବିଭକ୍ତ କରାଯାଇ ପ୍ରତ୍ୟେକ ଅଞ୍ଚଳର ନିର୍ବାଚିତ ଲୋକପ୍ରତିନିଧିଙ୍କୁ ନେଇ ଗଠିତ ଅଞ୍ଚଳ ସଭା ରାଜସ୍ୱ ଆଦାୟ କରିବେ ଏବଂ ଅଞ୍ଚଳର ସମସ୍ତ ଉନ୍ନୟନ କାର୍ଯ୍ୟର ଦାୟିତ୍ୱ ଗ୍ରହଣ କରିବାର ବ୍ୟବସ୍ଥା ଥିଲା । ସେ ମୁଖ୍ୟମନ୍ତ୍ରୀ ହେବା ପରେ ଏଥିପାଇଁ ୧୯୫୬ ରେ ବିଧିବଦ୍ଧ ଆଇନ ପ୍ରଣୟନ କରିଥିଲେ । ସ୍ୱାଧୀନ ଭାରତର ସମ୍ବିଧାନର ନିର୍ଦ୍ଦେଶମୂଳକ ନୀତି ଅନୁଯାୟୀ ଶାସନକୁ ବିକେନ୍ଦ୍ରୀକରଣ କରିବା ପାଇଁ ସମଗ୍ର ଦେଶରେ ଏହା ଥିଲା ପ୍ରଥମ ପରିକଳ୍ପନା । ମାତ୍ର ଅମଲାତନ୍ତ୍ରର ତୀବ୍ର ବିରୋଧ ଯୋଗୁଁ ଏବଂ ଶାସକ କଂଗ୍ରେସ ଦଳ ଆଗ୍ରହ ପ୍ରକାଶ ନ କରିବାରୁ ଏହିଭଳି ଏକ ବୈପ୍ଳବିକ ଆଇନ କାର୍ଯ୍ୟକାରୀ ହୋଇପାରିଲା ନାହିଁ । ଏହାର ପାଞ୍ଚବର୍ଷ ପରେ ବଲବନ୍ତରାୟ ମେହେଟା କମିଟିଙ୍କ ସୁପାରିଶମତେ ଅଞ୍ଚଳ ଶାସନ ଆଇନ ଅପେକ୍ଷା ଅତି ସୀମିତ କ୍ଷମତା ଥାଇ ଏକ ତିନି ସ୍ତରୀୟ ପଞ୍ଚାୟତିରାଜ ଆଇନ କାର୍ଯ୍ୟକାରୀ ହେଲା ।

## ଶାସନର ସବୁ ସ୍ତରରେ ଓଡ଼ିଆ ଭାଷା ପ୍ରବର୍ତ୍ତନ ପାଇଁ ପ୍ରାଥମିକ ବ୍ୟବସ୍ଥା

ଶାସନ ବିକେନ୍ଦ୍ରୀକରଣ କରି ତଳସ୍ତରରେ ଲୋକପ୍ରତିନିଧିଙ୍କୁ ଅଂଶୀଦାର କରିବାକୁ ହେଲେ ଶାସନର ସବୁ ସ୍ତରରେ ଆଞ୍ଚଳିକ ଭାଷାର ପ୍ରଚଳନ ଏକାନ୍ତ ଆବଶ୍ୟକ । ତା'ହେଲେ ଯାଇ ସାଧାରଣ ଲୋକେ ଶାସନ କାର୍ଯ୍ୟରେ ସକ୍ରିୟ ଅଂଶ ଗ୍ରହଣ କରିପାରିବେ । ସେଥିପାଇଁ ସ୍ୱାଧୀନ ଭାରତରେ ସମ୍ବିଧାନର ମୌଳିକ ନୀତି ଭିତରେ ଆଞ୍ଚଳିକ ଭାଷା ପ୍ରବର୍ତ୍ତନ ଥିଲା ଗୁରୁତ୍ୱପୂର୍ଣ୍ଣ ନୀତି । ମୁଖ୍ୟମନ୍ତ୍ରୀ ଦାୟିତ୍ୱ ଗ୍ରହଣ କରିବା ପରେ ଶ୍ରୀଯୁକ୍ତ ଚୌଧୁରୀ ଶାସନର ସବୁ ସ୍ତରରେ ଓଡ଼ିଆ ଭାଷା ପ୍ରବର୍ତ୍ତନ ପାଇଁ ଉଦ୍ୟମ ଆରମ୍ଭ କରିଥିଲେ । ସେଥିପାଇଁ ୧୯୫୨ ରେ ସେ ଏ ସମ୍ପର୍କୀୟ ଆଇନକୁ ସଂଶୋଧନ କରାଇ ସଙ୍ଗେ ସଙ୍ଗେ ଏକ ପ୍ରଶାସନିକ ଇଂରେଜୀ-ଓଡ଼ିଆ ଶବ୍ଦକୋଷ ପ୍ରଣୟନ କରାଇଥିଲେ । ପ୍ରଶାସନିକ ସ୍ତରରେ ଆଞ୍ଚଳିକ ଭାଷା ପ୍ରବର୍ତ୍ତନ ପାଇଁ ସମଗ୍ର ଦେଶରେ ଏହା ପ୍ରଥମ ଉଦ୍ୟମ । କିନ୍ତୁ ଶ୍ରୀଯୁକ୍ତ ଚୌଧୁରୀଙ୍କ ଏହି ଉଦ୍ୟମକୁ ସେତେବେଳର ଉଚ୍ଚ ଅଫିସରମାନେ ବିରୋଧ କରିଥିଲେ । ଚିଫ ସେକ୍ରେଟେରୀ ବ୍ରହ୍ମଦେବ ମୁଖାର୍ଜି ସେତେବେଳେ ଏହି ଉଦ୍ୟମର ବିରୋଧ କରି ଦର୍ଶାଇଥିଲେ ଯେ ଓଡ଼ିଆ ମାଧ୍ୟମରେ ସମସ୍ତ ପ୍ରଶାସନିକ କାର୍ଯ୍ୟ କଲେ କେନ୍ଦ୍ର ସରକାର ଏବଂ ଏକାଉଣ୍ଟାଣ୍ଟ ଜେନେରାଲଙ୍କ ଅଫିସ ସହିତ ରାଜ୍ୟ ସରକାର ପତ୍ରାଳାପ କରିବାରେ ଅସୁବିଧା ହେବ । ଅନ୍ୟ କୌଣସି ରାଜ୍ୟରେ ଏ ପର୍ଯ୍ୟନ୍ତ ଶାସନକ୍ଷେତ୍ରରେ ଆଞ୍ଚଳିକ ଭାଷା ବ୍ୟବହାର କରାଯାଇ ନ ଥିବା ସ୍ଥଳେ ଆମେ ଓଡ଼ିଶାରେ କାହିଁକି ଅଗ୍ରସର ହୋଇ ଏହା କରିବା ? ଯାହାହେଉ ମୁଖ୍ୟମନ୍ତ୍ରୀଙ୍କ ନିଷ୍ଠାପ୍ରିୟତାରେ ଏ ଦିଗରେ ସମସ୍ତ ପ୍ରାଥମିକ କାର୍ଯ୍ୟ ସମ୍ପନ୍ନ ହୋଇଥିଲା । ୧୯୫୨ ମସିହାରେ ପ୍ରଶାସନିକ ଶବ୍ଦକୋଶ ପ୍ରକାଶନ ଛଡ଼ା ୧୯୫୬ ରେ ଓଡ଼ିଆ ଟାଇପରାଇଟର ପାଇଁ ଏକ ନୂତନ କୀ-ବୋର୍ଡ଼ ପ୍ରସ୍ତୁତ କରାଯାଇ ରେମିଙ୍ଗଟନ୍ କମ୍ପାନୀକୁ ଓଡ଼ିଆ ଟାଇପରାଇଟର ନିର୍ମାଣ କରିବା ପାଇଁ ଅର୍ଡର ଦିଆଯାଇଥିଲା । ତାଙ୍କ ପରବର୍ତ୍ତୀ ମନ୍ତ୍ରିମଣ୍ଡଳମାନେ ଏ ଦିଗରେ ଆନ୍ତରିକତା ନ ଦେଖାଇବାରୁ ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କ ସ୍ୱପ୍ନ ଏବେ ମଧ୍ୟ ଅପୂର୍ଣ୍ଣ ରହିଛି ।

## ଭାଗଚାଷୀଙ୍କୁ ରକ୍ଷା କରିବା ପାଇଁ ଆଇନ

ଯେପରି ସ୍ୱାଧୀନତା ସଂଗ୍ରାମ ଭିତରେ କୃଷକ ଆନ୍ଦୋଳନ ଓ ସମାଜବାଦୀ ଆନ୍ଦୋଳନର ନେତୃତ୍ୱ ନେଇ ଶ୍ରୀ ନବକୃଷ୍ଣ ଚୌଧୁରୀ ଓଡ଼ିଶା କୃଷକମାନଙ୍କ ସମସ୍ୟା ସମ୍ପର୍କରେ ଯେଉଁ ପ୍ରତ୍ୟକ୍ଷ ଜ୍ଞାନ ହାସଲ କରିଥିଲେ ଏବଂ ପରେ ଜମିଜମା କମିଟିର ସଭାପତି ଭାବରେ ସେ ସମଗ୍ର ଦେଶର କୃଷକ ସମସ୍ୟା ସମ୍ବନ୍ଧରେ ଯେଉଁ ବିସ୍ତୃତ ଓ ଗଭୀର ଅଧ୍ୟୟନ କରିଥିଲେ, ସେଥିରେ ଚାଷୀଙ୍କ ପାଇଁ ବିଶେଷ ଭାବରେ ଭୂସଂସ୍କାରରେ କ୍ଷୁଦ୍ର ଚାଷୀଙ୍କ ପାଇଁ କ'ଣ କରିବାକୁ ହେବ, ତାହା ସେ ସ୍ପଷ୍ଟ ଭାବରେ ଜାଣିଥିଲେ । ଭୂସଂସ୍କାର ପୂର୍ବରୁ ଜମି ମାଲିକମାନେ କ୍ଷୁଦ୍ର ଚାଷୀ ଓ ଭାଗଚାଷୀମାନଙ୍କୁ ଜମିରୁ ଉଚ୍ଛେଦ କରିବା ପାଇଁ ଚକ୍ରାନ୍ତ କରିବେ ବୋଲି ଜଣାପଡ଼ିଯାଇଥିଲା । ସେଥିପାଇଁ ଶ୍ରୀଯୁକ୍ତ ଚୌଧୁରୀ ରାଜସ୍ୱମନ୍ତ୍ରୀ ଥିଲାବେଳେ ୧୯୪୮ ମସିହାରେ ଭାଗଚାଷ ଆଇନ ପ୍ରଣୟନ କରାଇଥିଲେ । ଏହି ଆଇନ ଅନୁସାରେ ୩୩ ଏକର ବା ତଦୂର୍ଦ୍ଧ୍ୱ ଅଧିକ ଜମି ଥିବା ଜମିମାଲିକମାନେ ଭାଗଚାଷୀଙ୍କୁ ଉଚ୍ଛେଦ କରିପାରିବେ ନାହିଁ ଏବଂ ଦଖଲ ସତ୍ତ୍ୱ ଥିବା ପ୍ରଜାମାନେ ଜମିମାଲିକଙ୍କୁ ତିନି ଭାଗରୁ ଭାଗେଠାରୁ ଅଧିକ ଦେବାକୁ ବାଧ୍ୟ ନୁହନ୍ତି । ଏହି ସାମୟିକ ଆଇନର ମିଆଦ ବର୍ଷକୁ ବର୍ଷ ବୃଦ୍ଧି କରାଯାଇ ୧୯୫୫ ପର୍ଯ୍ୟନ୍ତ ଚାଲିଥିଲା । ୧୯୫୫ରେ ସେ ମୁଖ୍ୟମନ୍ତ୍ରୀ ଥିଲାବେଳେ ପ୍ରକୃତ ଭାଗଚାଷୀଙ୍କୁ ଉଚ୍ଛେଦ ନ କରାଇଦେବା ଉଦ୍ଦେଶ୍ୟରେ ଭାଗଚାଷ ଆଇନର ସଂଶୋଧନ କରାଇଥିଲେ । ଏହି ସଂଶୋଧିତ ଆଇନରେ ବ୍ୟବସ୍ଥା ଥିଲା ଯେ କୌଣସି ଜମି ମାଲିକ ଭାଗଚାଷୀଙ୍କୁ ଜମିରୁ ଉଚ୍ଛେଦ କରିପାରିବେ ନାହିଁ, ତାହା ଛଡ଼ା ଏଥିରେ ବ୍ୟବସ୍ଥା ଥିଲା ଯେ ଭାଗଚାଷୀମାନେ ଜମିମାଲିକଙ୍କୁ ମୋଟ ଉତ୍ପାଦନର ଚାରିଭାଗରୁ ଭାଗେ ବା ତା'ର ମୂଲ୍ୟ ଯାହା ହେବ ସେତିକି ଦେବେ । କ୍ଷୁଦ୍ର ଭାଗଚାଷୀଙ୍କ ସ୍ୱାର୍ଥକୁ ରକ୍ଷା କରିବା ଉଦ୍ଦେଶ୍ୟରେ ପ୍ରଣୀତ ଏହି ଆଇନ ଦ୍ୱାରା ଭାଗଚାଷୀମାନେ ଆଶାନୁରୂପ ଉପକୃତ ହୋଇପାରି ନ ଥିଲେ । ପ୍ରଥମ କଥା, ଏହିଭଳି ଆଇନ ପ୍ରତି ଶାସକ କଂଗ୍ରେସ ଦଳର ବଡ଼ ବଡ଼ ଜମିମାଲିକମାନଙ୍କର ଅଧାମନ୍ତ୍ରଣିଆ ସମର୍ଥନ ଥିଲା ଏବଂ ସମ୍ପୃକ୍ତ ସରକାରୀ କର୍ମଚାରୀଙ୍କର ଏହି ଆଇନକୁ କାର୍ଯ୍ୟକାରୀ କରିବାରେ ଆନ୍ତରିକତା ନ ଥିଲା । ଭାଗଚାଷୀଙ୍କୁ କୋର୍ଟରେ ନିଜର ଅଧିକାରକୁ ସାବ୍ୟସ୍ତ କରିବାକୁ ପଡ଼ୁଥିବାରୁ ସେମାନେ ହଇରାଣ ହେଉଥିଲେ । କ୍ଷୁଦ୍ର ଚାଷୀଙ୍କ ସମର୍ଥକ ବାମପନ୍ଥୀ ଦଳମାନେ ସେମାନଙ୍କୁ ଆଶାନୁରୂପ ସାହାଯ୍ୟ କରିପାରି ନ ଥିଲେ । ଯାହାହେଉ ଭୂସଂସ୍କାର ପୂର୍ବରୁ କ୍ଷୁଦ୍ର ଚାଷୀଙ୍କୁ ରକ୍ଷା କରିବା ପାଇଁ ଏହା ଥିଲା ଦେଶରେ ସର୍ବପ୍ରଥମ ଆଇନଗତ ପଦକ୍ଷେପ । ଏହି ଆଇନ ପରେ ବଡ଼ ବଡ଼ ଜମିମାଲିକମାନେ ନିଶ୍ଚିତଭାବରେ ଜାଣିଗଲେ ଯେ ସେମାନଙ୍କ ଦଖଲରେ ଅଧିକାଂଶ ଭାଗଜମି

ରହିପାରିବ ନାହିଁ । ଭୂସଂସ୍କାର ଆଇନରେ ସରକାର ସେମାନଙ୍କଠାରୁ ଜମି ବେଦଖଲ କରିନେଇଯିବାରୁ ପୂର୍ବରୁ ସେମାନେ ନିଜ ଦଖଲରେ ଥିବା ଜମିକୁ ବିକ୍ରି କରିଦେବା ଆରମ୍ଭ କରିଦେଲେ । ସେଥିପାଇଁ ଜମିର ମୂଲ୍ୟ ସେତେବେଳେ ହ୍ରାସ ପାଇବାରେ ଲାଗିଲା । ତେଣୁ ପରୋକ୍ଷରେ ଏହି ଆଇନର ଉଦ୍ଦେଶ୍ୟ ସାଧିତ ହୋଇଥିଲା । ଏହି ଆଇନକୁ କାର୍ଯ୍ୟକାରୀ କରିବା ଦିଗରେ ଗିରିବର ବନ୍ଧୁ ନବକୃଷ୍ଣ ଚୌଧୁରୀ ଯେଉଁ ଆନ୍ତରିକତା ଓ ଦୃଢ଼ତା ଦେଖାଇଥିଲେ, ତା'ର ତୁଳନା ନାହିଁ । ଏଥିପାଇଁ କାର୍ଯ୍ୟ କରୁଥିବା କଂଗ୍ରେସ ବିରୋଧୀ ବାମପନ୍ଥୀ ଦଳମାନଙ୍କୁ ସେ ସକ୍ରିୟଭାବେ ସାହାଯ୍ୟ କରିଥିଲେ ।

ଅଞ୍ଚଳ ଶାସନ ଆଇନ ଓ ଗ୍ରାମଗୃହ ଆଇନ ଭଳି ପ୍ରଗତିଶୀଳ ପରିକଳ୍ପନାକୁ କାର୍ଯ୍ୟକାରୀ କରିବାରେ ଶ୍ରୀଯୁକ୍ତ ଚୌଧୁରୀଙ୍କୁ ଶାସକ କଂଗ୍ରେସ ଦଳ ଓ ଅମଲାତନ୍ତ୍ର ଯେଉଁଭଳି ବିରୋଧ କରିଥିଲେ, ସେଥିରେ ତାଙ୍କର ବିଶ୍ୱାସ ହୋଇଯାଇଥିଲା ଯେ ଦେଶର ଏହି ଅବସ୍ଥାରେ କୌଣସି ପ୍ରଗତିଶୀଳ ଯୋଜନାକୁ କାର୍ଯ୍ୟକାରୀ କରିବା ସମ୍ଭବ ହେବ ନାହିଁ । ଏଥିପାଇଁ ଶାସନ ବାହାରେ ରହି ଲୋକଙ୍କୁ ସଂଗଠିତ କରିବାକୁ ହେବ । ତେଣୁ ଶାସନରୁ ଅବ୍ୟାହତି ନେବା ପରେ ଲୋକସଂଗଠନ କାର୍ଯ୍ୟରେ ଲାଗିଥିବା ଦଳ ଓ ଅନୁଷ୍ଠାନଙ୍କ ପ୍ରତି ସେ ପୂର୍ଣ୍ଣ ସମର୍ଥନ ଜଣାଇଥିଲେ ।

---

# ଏକ ରାଜନୀତିକ ବ୍ୟକ୍ତିତ୍ୱର ସମୀକ୍ଷା

**ଚିତ୍ତରଞ୍ଜନ ଦାସ**

ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ କେବଳ ଅମୁକଙ୍କର ପୁଅ ନ ଥିଲେ କିମ୍ବା ଅମୁକଙ୍କର ସ୍ୱାମୀ କିମ୍ବା ଭଣଜା ନ ଥିଲେ। ମଣିଷମାତ୍ରକେ ସମସ୍ତେ ଅମୁକର ପୁଅ ଅଥବା ସମୁକର ସ୍ୱାମୀ ବା ନାତି ହୋଇ ଜନ୍ମ ହୁଅନ୍ତି ସତ, ମାତ୍ର ସେମାନଙ୍କ ମଧ୍ୟରୁ ଯେଉଁ ଶତକେ ଦେଢଜଣ ସାଧାରଣ କ୍ଷେତ୍ରକୁ ଆସନ୍ତି, ସେମାନଙ୍କର ଜୀବନଟିକୁ କେବଳ ଗୋଟିଏ ନିର୍ଦ୍ଦିଷ୍ଟ ପରିବାର ମଧ୍ୟରେ ସୀମିତ କରି ଦେଖି ହୁଏ ନାହିଁ। ସେମାନେ ଜଣେ ଜଣେ ବ୍ୟକ୍ତି ହିସାବରେ ଜୀବନ ଅତିବାହିତ କରିଥିଲେ ମଧ୍ୟ ତଥାପି କେବଳ କେତୋଟା ବ୍ୟକ୍ତିଗତ ବାଡ଼ ଭିତରେ ସେମାନଙ୍କୁ ଦେଖି ହୁଏନାହିଁ। ଓଡ଼ିଶାର ଗତ ପ୍ରାୟ ପଚାଶ ବର୍ଷର ରାଜନୀତିକ ଇତିହାସରେ ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କୁ ଜଣେ ପ୍ରତିନିଧିମୂଳକ ମନୁଷ୍ୟ ବୋଲି କୁହାଯିବ। ରାଜନୀତିକ ନେତୃତ୍ୱର ସମଗ୍ର ଭୂମିଟି ଉପରେ ଶ୍ରୀ ଚୌଧୁରୀ ଏକ ନିର୍ଦ୍ଦିଷ୍ଟ ଭୂମିକା ଗ୍ରହଣ କରିଥିଲେ। ତାଙ୍କୁ ସେହି ଭୂମିକା ଓ ସେହି ସ୍ଥାନଟିର ପରିପ୍ରେକ୍ଷୀରେ ଯଥାସମ୍ଭବ ଅଧିକ ସମଗ୍ର ଭାବରେ ଦେଖିବାକୁ ସାହସ କରିପାରିଲେ ଯାଇ ଆମେ ତାଙ୍କର ଯଥାର୍ଥ ସମୀକ୍ଷଣ କରିପାରିବା।

ଏକଦା ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥିଲେ। ସ୍ୱାଧୀନ ଭାରତବର୍ଷରେ କାଳକ୍ରମେ ମୁଖ୍ୟମନ୍ତ୍ରୀମାନେ ଉପରସ୍ଥ କୌଣସି ଦରବାରରୁ ଏବେ ନିଯୁକ୍ତ ହୋଇ ଆସିଲେଣି ଓ ତେଣୁ ସମଗ୍ର ବିଧିଟିର ପ୍ରକ୍ରିୟା ମଧ୍ୟରେ ସ୍ୱୟଂ ମୁଖ୍ୟମନ୍ତ୍ରୀମାନେ ମଧ୍ୟ କ୍ରମଶଃ ଆପଣାର ପଦଟିକୁ ଅନ୍ୟର ଅନୁଗ୍ରହ ଦ୍ୱାରା ଅର୍ଜିତ ପ୍ରାୟ ଏକ ଚାକିରି ପରି ଗ୍ରହଣ କରିବାକୁ ହିଁ ବାସ୍ତବତା ବୋଲି ଗ୍ରହଣ କରିବାରେ ଅଭ୍ୟସ୍ତ ହୋଇଗଲେଣି ସତ, ମାତ୍ର ଶ୍ରୀ ନବକୃଷ୍ଣ ଚୌଧୁରୀ ଓଡ଼ିଶାର ନେତୃତ୍ୱ-ମଣ୍ଡଳଟି ଭିତରେ ରହିଥିବା ସମୟରେ ପ୍ରକ୍ରିୟା ଅନ୍ୟ ପ୍ରକାରର ଥିଲା ଓ ତେଣୁ ସ୍ୱୀକୃତ ପରମ୍ପରା ମଧ୍ୟ ଅନ୍ୟ ପ୍ରକାରର ଥିଲା। ସେତେବେଳେ ନେତାମାନଙ୍କର ରାଜନୀତିକ ଭୂମିଟି ଉପରେ ଏକ ସ୍ୱକୀୟ ସଂପ୍ରତ୍ୟୟ ଓ ବିଶ୍ୱାସ ରହିଥିଲା—ତେଣୁ ଏକ ସ୍ୱକୀୟ ଅଙ୍ଗୀକାରବଦ୍ଧତା ମଧ୍ୟ ରହିଥିଲା। ସେତେବେଳେ ବାହାରକୁ ତ ସମସ୍ତେ ଭାରତୀୟ ରାଜନୀତିରେ ଉପରକୁ ପତାକା ପରି ଫରଫର ହୋଇ ଉଡ଼ୁଥିଲେ, ମାତ୍ର ପ୍ରାୟ ପ୍ରତ୍ୟେକେ ଏକ ନିର୍ଦ୍ଦିଷ୍ଟ ସ୍ୱପ୍ନ ଓ ନିର୍ଦ୍ଦିଷ୍ଟ ପ୍ରତିଶ୍ରୁତିର ପ୍ରତିନିଧିତ୍ୱ କରୁଥିଲେ। ଗୋଟିଏ ନେତୃତ୍ୱକୁ ଅଉ ଗୋଟିଏ ନେତୃତ୍ୱଠାରୁ ଫରକ କରି ଚିହ୍ନିବାକୁ ସେତେବେଳେ ଏକ ନିଶ୍ଚିତ ଓ ନିର୍ଭରଯୋଗ୍ୟ ଅବକାଶ ରହିଥିଲା। ତେଣୁ ହାତୀ ଚିହ୍ନାଇବାକୁ ଯାଇ ହାତୀଶାଳରୁ ଯେକୌଣସି ଗୋଟାଏ ହାତୀକୁ ଦେଖାଇଦେବା ପରି ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କୁ ଆମେ କଦାପି ଅନେକ ମୁଖ୍ୟମନ୍ତ୍ରୀଙ୍କ ଭିତରେ ଜଣେ ମୁଖ୍ୟମନ୍ତ୍ରୀ ବୋଲି ଦେଖାଇ ପାରିବା ନାହିଁ। ତାଙ୍କୁ ସ୍ୱତନ୍ତ୍ର ଭାବରେ ନ ଚିହ୍ନିବା ପର୍ଯ୍ୟନ୍ତ କଦାପି ଯଥାର୍ଥ ଭାବରେ ଚିହ୍ନି ପାରିବା ନାହିଁ। ସେହି ଦୃଷ୍ଟିରୁ ମଧ୍ୟ ତାଙ୍କର ଜୀବନ ଓ କରଣିଗୁଡ଼ିକର ବିଚାର ସମୀକ୍ଷାତ୍ମକ ହେବାକୁ ହିଁ ବାଧ୍ୟ ହେବ। ତେବେ ଯାଇ ଆମେ ତାଙ୍କୁ ଦେଖିପାରିବା ଭଳି ଦେଖିବାକୁ ସମର୍ଥ ହେବା।

ଭାରତବର୍ଷ ଇଂରେଜଙ୍କଠୁ ସ୍ୱାଧୀନତା ହାସଲ କରିବା ସକାଶେ ସଂଗ୍ରାମ କରୁଥିବା ସମୟରେ ସାରା ସଂଗ୍ରାମର ଶତ୍ରୁ ଗୋଟିଏ ଥିଲା ଓ ତେଣୁ ସଂଗ୍ରାମୀମାନଙ୍କର ଶିବିରଟି ମଧ୍ୟ ସ୍ଥୂଳତଃ ଗୋଟିଏ ବୋଲି ଦେଖାଯାଉଥିଲା ସତ; କିନ୍ତୁ ସ୍ୱାଧୀନତା ପରେ ଦେଶରେ ଭବିଷ୍ୟ ବ୍ୟବସ୍ଥା କିପରି ହେବ ବା ନ ହେବ, ଦେଶର ଶାସନରେ କାହାର କେତେ ପ୍ରକୃତ ଭାଗ ରହିବ ବା ନ ରହିବ, ଏହିସବୁ ବିଷୟରେ ଦୃଷ୍ଟିଗତ ଫରକ ଅନେକ ରହିଥିଲା। ଉପରକୁ ଗୋଟିଏ ବୋଲି ଦେଖାଯାଉଥିବା ଶିବିରଟି ମଧ୍ୟରେ ସ୍ୱାର୍ଥ ତଥା ଗୋଷ୍ଠୀର ବିଭିନ୍ନତା ଅନୁସାରେ କେତେ ଅନ୍ତର ରହିଥିଲା। ସବାଉପରେ ଗାନ୍ଧୀ-ନେତୃତ୍ୱର ଛତାଟି

ସବୁଠାରୁ ବଡ଼ ହୋଇ ବଞ୍ଚିଥିଲା ସତ, ମାତ୍ର ତାହାର ଭିତରେ ଆଦର୍ଶଗତ କେତେ ପ୍ରକାରର ଛାପ ପରମ୍ପରଠାରୁ ଏକ ସମୁଚିତ ଦୂରତା ରକ୍ଷା କରି ରହିଥିଲେ ଓ ସେହି ଅନୁସାରେ ଆପଣା ଆପଣାର କ୍ଷେତ୍ରଗୁଡ଼ିକୁ ପ୍ରସ୍ତୁତ ମଧ୍ୟ କରୁଥିଲେ । ଶତାବ୍ଦୀର ଦ୍ୱିତୀୟ-ଶତକ ବେଳକୁ ଭାରତୀୟ ରାଜନୀତିକ ସଂଗ୍ରାମଟି ଏକ ସ୍ପଷ୍ଟ ଆଭିମୁଖ୍ୟ ଧାରଣ କରିବା ପରେ ଛାପଗୁଡ଼ିକର ସ୍ୱାତନ୍ତ୍ର୍ୟ ମଧ୍ୟ ଆହୁରି ଅଧିକ ସ୍ପଷ୍ଟ ହୋଇଯାଇଥିଲା । ସେତେବେଳେ ଓଡ଼ିଶାରେ ଉତ୍କଳ ସମ୍ମିଳନୀର ସ୍ଥାନୀୟ ଆଭିମୁଖ୍ୟଟି କ୍ରମେ ଅଧିକରୁ ଅଧିକ ଓଡ଼ିଆଙ୍କ ଲାଗି ଅଯଥେଷ୍ଟ ବୋଲି ଅନୁଭୂତ ହେଉଥିଲା ଏବଂ ପଣ୍ଡିତ ଗୋପବନ୍ଧୁଙ୍କର ନେତୃତ୍ୱରେ ଓଡ଼ିଶା ଜାତୀୟ ଜାଗରଣରେ ଏକ ନୂତନ ଚରଣରେ ପ୍ରବେଶ କରି ସମଗ୍ର ଭାରତୀୟ ମୁଖ୍ୟ ସ୍ରୋତଟିରେ ସମ୍ମିଳିତ ହେବା ନିମନ୍ତେ ଆପଣାକୁ ପ୍ରସ୍ତୁତ କରୁଥିଲା । ପ୍ରାୟ ସେତିକବେଳେ ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ ଜଣେ ନବଯୁବକର ଅନୁରାଗ ନେଇ ଓଡ଼ିଶାର ସାଧାରଣ କ୍ଷେତ୍ରରେ ପ୍ରବେଶ କରିଥିଲେ । ସେତେବେଳେ ଯେଉଁମାନେ ପ୍ରଧାନତଃ ଏକ ଆଦର୍ଶବାଦୀ ଉତ୍ସାହରେ ରାଜନୀତି ଭିତରକୁ ଆସିଥିଲେ, ସେମାନେ ସାଧାରଣତଃ ବଡ଼ଘରମାନଙ୍କରୁ ଆସିଥିଲେ ଓ ତେଣୁ ଆସିବା ମାତ୍ରକେ ପୁରା ବାରି ହୋଇ ପଡ଼ୁଥିଲେ । ମନେ ଅବା ଖାଲି ଚାକିରିଗୁଡ଼ାକ ସେମାନଙ୍କ ସକାଶେ ଅପେକ୍ଷା କରି ରହିଥିଲେ । ସେମାନେ କେତେ ବଡ଼ ତ୍ୟାଗ କରି ଦାଣ୍ଡକୁ ଆସିଲେ ବୋଲି କହିବାକୁ ହଜାର ହଜାର ମଣିଷ ରହିଥିଲେ । ଆପଣାକୁ ଆପେ ବାଛି ନେଇଥିବା ଆହ୍ୱାନଟି ଅନୁସାରେ ଉଠାଣ କରିବାକୁ ମଧ୍ୟ ସେମାନଙ୍କୁ ମୋଟେ ବେଳ ମିଳୁ ନ ଥିଲା । ତେଣୁ ଅନେକାଂଶ କ୍ଷେତ୍ରରେ ଭିତରେ ହୁଏତ ଅନେକ ଖାଦ ରହିଯାଉଥିଲା । ସଂଗ୍ରାମ ପରେ ସେତେବେଳେ ରାଜନୀତିକ ସ୍ୱାଧୀନତା ଆସିଲା ଓ ବାଇଦଗୁଡ଼ାକ ବେକରେ ପଡ଼ିଲା, ଖାଦଗୁଡ଼ାକ ରହିଯାଇଥିଲା ବୋଲି ହୁଏତ ସେତିକବେଳେ ଯାଇ ଜଣାପଡ଼ିଲା । ଅସଲ ପରୀକ୍ଷା ସେତିକବେଳେ ହେଲା ।

ରାଜନୀତିକ ସ୍ୱାଧୀନତା ଲାଗି ସଂଗ୍ରାମର ସେହି ଯୁଗଟି ମୁଖ୍ୟତଃ ଏକ ଉତ୍ସାହର ଯୁଗ ଥିଲା । ଭାରତୀୟ ଜାତୀୟ କଂଗ୍ରେସକୁ ପୀଠ କରି ସେଥିରେ ସମବେତ ହୋଇଥିବା ଆପାତତଃ ସମସ୍ତେ ଇଂରେଜ ସାମ୍ରାଜ୍ୟ ଶାସନ ସହିତ ଲଢ଼ୁଥିଲେ ସତ, ମାତ୍ର ସେମାନେ ଭବିଷ୍ୟତର ଭାରତବର୍ଷ ବିଷୟରେ ଭିନ୍ନ ଭିନ୍ନ ଚିନ୍ତା କରୁଥିଲେ, ଭିନ୍ନ ଭିନ୍ନ ଚିତ୍ର ଦେଖୁଥିଲେ । ମୋତିଲାଲ ଯେପରି ଚିନ୍ତା କରୁଥିଲେ, ଜବାହରଲାଲ ମୋଟେ ସେପରି ଚିନ୍ତା କରୁ ନ ଥିଲେ । ବଲ୍ଲଭଭାଇ ଯେପରି ଚିତ୍ର ଦେଖୁଥିଲେ, ରାଜେନ୍ଦ୍ରପ୍ରସାଦ ମୋଟେ ସେପରି ଚିତ୍ର ଦେଖୁ ନ ଥିଲେ । ଏହି ନେତାମାନେ ଆପଣାର ଅବଚେତନ ଅନୁରକ୍ତିଗୁଡ଼ିକର କ୍ଷେତ୍ରରେ ନାନା ପ୍ରତିକ୍ରିୟାବାଦୀ ସଂସ୍କାର ସହିତ ବାନ୍ଧି ହୋଇ ରହିଥିଲେ ଓ ହୁଏତ ଶେଷ ପର୍ଯ୍ୟନ୍ତ ମଧ୍ୟ ମୂଳତଃ ସେମାନଙ୍କର ସେହି ସଂସ୍କାରଗୁଡ଼ିକ ହିଁ ସେମାନଙ୍କ ରାଜନୀତିକ ଭୂମିକାଗୁଡ଼ିକର ନିର୍ଣ୍ଣାୟକ ରୂପେ କାର୍ଯ୍ୟ କରିଥିଲା । ଜାତୀୟତାବାଦ କେବେହେଲେ ଶୁଦ୍ଧ ଭାବରେ ଏକ ରାଜନୀତିକ ପ୍ରେରଣା ବା ଆଦର୍ଶରୂପେ କାର୍ଯ୍ୟ କରି ନ ଥାଏ; ସେଥିରେ ଧର୍ମ, ପରମ୍ପରା ଓ ଅତୀତ ପ୍ରତି ଏକ ଅହେତୁକ ଅତିମୋହ—ଏହିପରି କେତେ କ'ଣ ଭାବପ୍ରବଣତା ଭର୍ତ୍ତି ହୋଇ ରହିଥାଏ ଓ ନେତୃତ୍ୱର ରାଜନୀତିକ ଭୂମିଟିକୁ ଆହୁରି ଅଧିକ ଜଟିଳ କରି ରଖିଥାଏ । ପୂର୍ଣ୍ଣ ସ୍ୱାଧୀନତା ହିଁ ଭାରତବର୍ଷର ଲକ୍ଷ୍ୟ ବୋଲି ଘୋଷିତ ହେବା ପର୍ଯ୍ୟନ୍ତ ଭାରତୀୟ ଜାତୀୟ କଂଗ୍ରେସ ଦେଶର ଅଧିକାଂଶ ମଣିଷଙ୍କର ଆଖିରେ ଏହିପରି ଏକ ସଂସ୍ଥା ହୋଇ ରହିଥିଲା । ସମ୍ଭବତଃ ସେହି କାରଣରୁ ଅନ୍ତତଃ ବୟସ ଦୃଷ୍ଟିରୁ ଅପେକ୍ଷାକୃତ ଅଧିକ କନିଷ୍ଠମାନେ ଜାତୀୟ ସଂଗ୍ରାମର ରାଜନୀତିକ ଆଭିମୁଖ୍ୟଟିକୁ ଏକ ଅଧିକ ସ୍ପଷ୍ଟ ପରିଧି ଓ ସଂଜ୍ଞା ଦେଇପାରିବାକୁ କଂଗ୍ରେସ ଭିତରେ ଥାଇ ମଧ୍ୟ ଏକ ସୋସିଆଲିଷ୍ଟ ଉପଗୋଷ୍ଠୀ ଗଢ଼ିଥିଲେ । ଏମାନେ ସେହି ଗୋଟିଏ ଖୋଳା ଭିତରେ ଥାଇ ମଧ୍ୟ ପୁରୁଣାମାନଙ୍କୁ ସତେ ଅବା ଅପରପାଖରେ ଏବଂ ଆପଣାକୁ ଏପାଖରେ ଦେଖୁଥିଲେ । ପୂରା ଅଲଗା ହୋଇ ନ ଥିଲେ, ତଥାପି ଅଲଗା ବୋଲି ଦେଖାଇ ହେଉଥିଲେ । ମୋତିଲାଲ ଓ ସେ ପୁରୁଷର ଅନ୍ୟମାନେ ସେପାଖରେ ରହିଥିଲେ । ମୋତିଲାଲଙ୍କ ପୁତ୍ର ଏପାଖ ଓ ସେପାଖର ମଝିରେ ରହିଥିଲେ । ତାଙ୍କୁ ପୁରୁଣାମାନେ ନୂଆମାନଙ୍କ ଭିତରେ ରହିଥିବା ଆପଣା ପକ୍ଷର ଲୋକ ବୋଲି ଭାବୁଥିଲେ; ନୂଆମାନେ ବି ନାନା କାରଣରୁ ତାଙ୍କୁ ପୁରୁଣାମାନଙ୍କ ସହିତ ଉତ୍ତମରୂପେ ଚଳପ୍ରଚଳ ହୋଇପାରୁଥିବା ଆପଣା ପକ୍ଷର ହିଁ ଜଣେ ପ୍ରତିଭାବାନ୍ ପ୍ରତିନିଧି ବୋଲି ଭାବି ଅନେକ ସମୟରେ ଭାରି ଆନନ୍ଦ ପାଉଥିଲେ । ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ ସେତେବେଳେ ଆପଣାକୁ କିଞ୍ଚିତ୍ ସ୍ୱତନ୍ତ୍ର ବୋଲି ଚିହ୍ନା ଦେବାକୁ ମନ କରୁଥିବା ଏହି କଂଗ୍ରେସ ସୋସିଆଲିଷ୍ଟମାନଙ୍କ ଭିତରେ ରହିଥିଲେ । ଓଡ଼ିଶାର ସ୍ଥାନୀୟ ମଞ୍ଚଟିରେ ସେ ପଣ୍ଡିତ ଜବାହରଲାଲଙ୍କର ଭୂମିକାଟିକୁ ପ୍ରାୟ ସର୍ବସମ୍ମତିକ୍ରମେ ଗ୍ରହଣ କରିଥିଲେ । ସେପଟକୁ କଂଗ୍ରେସ ପରି ଦିଶୁଥିଲେ ଏବଂ ଏପଟକୁ ସୋସିଆଲିଷ୍ଟ ପରି ଦିଶୁଥିଲେ । ଦୁଇ ପାଖରେ ଥିଲେ, ମାତ୍ର ସେତେବେଳର ଅନେକ ନବୀନଙ୍କ ପରି ସ୍ପଷ୍ଟ ଭାବରେ କୌଣସି ଗୋଟିଏ ପାଖରେ ନ ଥିଲେ । ହୁଏତ ଦୁଇ ପାଖରେ ବୋଲି ଚିହ୍ନା ଦେବାକୁ ମନ କରୁଥିଲେ । ସାହିତ୍ୟ ଓ ରାଜନୀତିକୁ

ମିଶାଇ ଯେତେବେଳେ ଓଡ଼ିଶାରେ ସେଇ 'ଆଧୁନିକ' ପତ୍ରିକାର ଆବିର୍ଭାବ ହୋଇଥିଲା, ତାହାର ଗୋଟିଏ ସଂଖ୍ୟାରେ ଜବାହରଲାଲ ନେହେରୁଙ୍କର ଫଟୋ ବାହାରିଥିଲା । ସେହି ପତ୍ରିକାରେ ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ 'ବୈଜ୍ଞାନିକ ସାମ୍ୟବାଦ' ବିଷୟରେ ଏକଦା ଏକ ପ୍ରବନ୍ଧ ଲେଖିଥିଲେ । ଏସବୁର ଅବ୍ୟବହିତ ପରେ ସେହି ପ୍ରଥମକାଳୀନ ସୋସିଆଲିଷ୍ଟମାନେ ଦୁଇ ଭାଗରେ ଅଲଗା ହୋଇଗଲେ । ଗୋଟିଏ ଭାଗ ଆପଣାକୁ କମ୍ୟୁନିଷ୍ଟ ବୋଲି ଘୋଷଣା କଲା । ସାରା ଭାରତବର୍ଷରେ ଏହା ଘଟିଲା, ତେଣୁ ଓଡ଼ିଶାରେ ମଧ୍ୟ ଘଟିଲା । ତେଣିକି କମ୍ୟୁନିଷ୍ଟମାନଙ୍କୁ କଂଗ୍ରେସ ଭିତରର ବୋଲି କହିବାକୁ ଆଉ କୌଣସି କାରଣ ରହିଲା ନାହିଁ । ମାତ୍ର ସୋସିଆଲିଷ୍ଟମାନେ ଏକାବେଳକେ ଦୁଇ ସଙ୍ଗାଡ଼ି ପଇତା ପକାଇଲେ, ଦୁଇ ଆଦର୍ଶର ଯଜମାନ ହେଲେ । ସେମାନଙ୍କର ଅସଲ ଦେହଟା କଂଗ୍ରେସୀ ପରି ଦେଖାଗଲା, ମାତ୍ର ବେଳେ ବେଳେ ବ୍ୟବହାର କରିବା ସକାଶେ ଯେଉଁ ମୁଖାଟି ପାଖରେ ରହିଥିଲା, ସେଇଟିକୁ ସୋସିଆଲିଷ୍ଟ ବୋଲି ପରିଚିତ କରାଯାଉଥିଲା ।

ତରବାନ୍ଧ ଫାର୍ମ ଏବଂ ଅଲକାଶ୍ରମର ଘଟଣା ଶ୍ରୀଯୁକ୍ତ ଚୌଧୁରୀଙ୍କ ଜୀବନରେ ଏହି ପର୍ଯ୍ୟାୟର ଘଟଣା । ଏହି ସବୁକଥାକୁ ଏକାଧିକ କାରଣରୁ ମୁଖ୍ୟତଃ ଏକ ସାମୟିକ ଉତ୍ସାହରୁ ପ୍ରସୂତ ଏକ ସାମୟିକ କାର୍ଯ୍ୟକ୍ରମ ବୋଲି କୁହାଯାଇ ପାରିବ । କୃଷକ ଆନ୍ଦୋଳନ ଲାଗି ଦେଖାଯାଇଥିବା ଉତ୍ସାହଟିକୁ ମଧ୍ୟ ସେହିପରି ଏକ ସାମୟିକ ବୁଦ୍ଧିବୋଧର ତାଡ଼ନାରୁ ଜାତ ହୋଇଥିବା ଏକ ଘଟଣା ବୋଲି କୁହାଯିବ । ଜାତୀୟ ସ୍ୱାଧୀନତାର ଆନ୍ଦୋଳନରେ କୃଷକମାନଙ୍କୁ ସାମିଲ କରାଯାଇଥିଲା ସତ, ମାତ୍ର ସେମାନଙ୍କୁ ସେହି ଆନ୍ଦୋଳନରେ କାମରେ ଲଗାଇବାକୁ ହିଁ କେବଳ ସାମିଲ କରାଯାଇ ନ ଥିଲା । କୃଷକକୁ ଏକ ଶକ୍ତିରୂପେ ଗଠନ କରିବା ଲାଗି ସାମିଲ କରାଯାଇ ନ ଥିଲା । ନେତାମାନେ ଏପରି ଧାତୁରେ ତିଆରି ହୋଇଥିଲେ ଯେ ଶକ୍ତିଗୁଡ଼ିକ କେବଳ ସେହିମାନଙ୍କ ପାଖରେ ଠୁଳ ହୋଇ ରହିବା ବ୍ୟତୀତ ପ୍ରକୃତରେ ଆଉ କୌଣସି ଗୁରା ନ ଥିଲା । ସମ୍ଭବତଃ ମୂଳର ଏହି କୌଶଳଟିକୁ ଅବଲମ୍ବନ କରାଯାଇ ଆସିଥିବାରୁ ଏବେ ସ୍ୱାଧୀନତାର ଗୋଟାଏ ପୁରୁଷ ଅତିକ୍ରାନ୍ତ ହୋଇଯାଇଥିବା ପରେ ମଧ୍ୟ ଭାରତବର୍ଷର କୃଷକ ତଥାପି ଏକ ସଚେତନ ସଂଗ୍ରାମୀ ଶ୍ରେଣୀ ରୂପେ ତିଆରି ହୋଇପାରିନାହିଁ । ଭାରତରେ କୃଷକ ଆନ୍ଦୋଳନର ନେତାମାନେ କୃଷକ ନ ଥିଲେ, ସେମାନେ ଆହୁରି ଅନେକ ଜାଗାରେ ରାଜନୀତି କରୁଥିଲେ । ସତେ ଅବା ପ୍ରୟୋଜନବଶତଃ ସମୟ ସମୟରେ କୃଷକମାନଙ୍କର ପାଖକୁ ଥରେ ଅଧେ ମାଡ଼ିଆସୁଥିଲେ । କାମ ସରିବା ପରେ ଆପଣାର ଅସଲ ନୀଡ଼ଗୁଡ଼ିକୁ ବାହୁଡ଼ି ଯାଉଥିଲେ । ଭାବପ୍ରବଣତାର ଭୂମିରେ ସେମାନେ କୃଷକମାନଙ୍କ ତରଫରେ ଅବଶ୍ୟ ରହିଥିଲେ । କୃଷକର ହିତ ଲାଗି ଭୂମିସଂସ୍କାରର କ୍ଷେତ୍ରରେ ବ୍ୟକ୍ତ କରାଯାଇଥିବା ଯାବତୀୟ ସହାନୁଭୂତି ଏହି ଦେଶରେ ଏବେ ମଧ୍ୟ ପ୍ରଧାନତଃ ସେହି ଭାବପ୍ରବଣତାର ସ୍ତରରେ ରହିଛି; କୃଷକ ଏକ ସଚେତନ ରାଜନୀତିକ ଶକ୍ତିରେ ପରିଣତ ହୋଇଥିଲେ ସେପରି କଦାପି ହୋଇ ନ ଥାନ୍ତା । ୧୯୨୮ ମସିହାରେ ଜବାହରଲାଲଙ୍କର ଏକ ପତ୍ରର ଉତ୍ତର ଦେଇ ମହାତ୍ମା ଗାନ୍ଧୀ ଲେଖିଥିଲେ ଯେ ଭବିଷ୍ୟତରେ ଭାରତବର୍ଷରେ କେବେ ନା କେବେ ଏହି ଦେଶର ଧନୀ ତଥା ମୁଖର ଶିକ୍ଷିତ ସଂପ୍ରଦାୟକୁ ବାଦ୍ ଦେଇ ଏକ ସଘନ ଜନଆନ୍ଦୋଳନ ଆରମ୍ଭ କରିବା ଲାଗି ସିଏ ମଧ୍ୟ ଜବାହରଙ୍କ ସହିତ ସଂପୂର୍ଣ୍ଣ ଏକମତ; ମାତ୍ର ଗାନ୍ଧୀଜୀ ଅଧୀର ତରୁଣ ମନକୁ ସାନ୍ତ୍ୱନା ଦେଇ କହିଥିଲେ ଯେ ତାହାର ବେଳ ତଥାପି ଆସିନାହିଁ । ତାହାର ବେଳ କେବେ ବି ଆସିଲା ନାହିଁ । ରାଜନୀତିକ ସ୍ୱାଧୀନତା ପରେ ଭାରତୀୟ ରାଜନୀତିର ନେତୃତ୍ୱର ଗୃହଟି ଭିତରେ ଯେଉଁ ଅଟୋକାରଗଣ ସବୁ ଆସି ପଶିଲେ, ତାହା ଫଳରେ ସେହି ଆନ୍ଦୋଳନକୁ ଆହୁରି ଅଧିକ ପରାହତ କରି ରଖାଗଲା । ଯେଉଁମାନଙ୍କୁ ଏକ ଶକ୍ତିରୂପେ ପରିଣତ କରିଥିଲେ ଦେଶରେ ଯଥାର୍ଥରେ ଏକ ବିମୋଚନକାମୀ ଆନ୍ଦୋଳନ ହୋଇପାରିଥାନ୍ତା, କେତେ କାରଣରୁ ସେମାନଙ୍କୁ ପଛରେ ଗୌଣ କରି ରଖାଗଲା । ସେମାନେ ପଲ ହୋଇ ପଛରେ ରହିଲେ, ବାବୁମାନଙ୍କର ହିସାବ ଅନୁସାରେ ସଂଗ୍ରାମ ଚାଲିଲା ।

କୃଷକ ଆନ୍ଦୋଳନ ପରେ ଗଡ଼ଜାତ ଆନ୍ଦୋଳନ । ଏଥିରେ କଂଗ୍ରେସ, ସୋସିଆଲିଷ୍ଟ ଏବଂ କମ୍ୟୁନିଷ୍ଟ ସମସ୍ତେ ପଶିଥିଲେ । ଗଡ଼ଜାତର ଅତ୍ୟାଚରିତ ପ୍ରଜାମାନଙ୍କ ଲାଗି ଏହିସବୁ ମାର୍କାର କୌଣସି ମୂଲ୍ୟ ନ ଥିଲା । ଅନ୍ୟମାନଙ୍କ ସହିତ ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ ମଧ୍ୟ ସେଥିରେ ନେତୃତ୍ୱ ଦେଇଥିଲେ, ନେତୃତ୍ୱରେ ଭାଗ ନେଇଥିଲେ । ମାତ୍ର ଗଡ଼ଜାତର ସାଧାରଣ ମଣିଷକୁ ଏହି ଆନ୍ଦୋଳନରେ ସବାଆଗରେ ରଖିବା ନିମନ୍ତେ ଏଥିରେ ଖୁବ୍ ବେଶି କାର୍ଯ୍ୟକ୍ରମ ନ ଥିଲା । ସଂଗ୍ରାମୀମାନେ ମୋଗଲବନ୍ଦୀରୁ ଆସି ମାଡ଼ ଖାଇ ପୁଣି ମୋଗଲବନ୍ଦୀକୁ ଚାଲିଯାଉଥିଲେ । ପ୍ରଜାମାନେ ତଥାପି ରାଜାମାନଙ୍କୁ ଆଦର କରିବାକୁ ବାଧ୍ୟ ହେଉଥିଲେ । ଏହି ଆନ୍ଦୋଳନ ଗଡ଼ଜାତ ଅନ୍ଧାରର ଲଙ୍କାଗଡ଼ଟାକୁ ହଲାଇଦେଇ ଏକ କୋଳାହଳ ସୃଷ୍ଟି କରିବାରେ

କେତେକାଂଶରେ ଅବଶ୍ୟ ସମର୍ଥ ହୋଇଥିଲା ସତ, ମାତ୍ର ଗଡ଼ଜାତଗୁଡ଼ାକ ତଥାପି ଗଡ଼ଜାତ ହୋଇ ରହିଗଲେ । ଭାରତ ସ୍ୱାଧୀନ ହେବା ପରେ ମଧ୍ୟ, ବିପ୍ଳବୀମାନଙ୍କ ହାତରେ ନୁହେଁ, ପ୍ରତିକ୍ରିୟାଶୀଳ ଅନ୍ୟମାନଙ୍କ ହାତରେ ହିଁ ସେଠାରେ ନେତୃତ୍ୱର ଚକ୍ର-ଗୁଡ଼ାକ ରହିଗଲା । ଅଳ୍ପ ବହୁଳ ପରିମାଣରେ ଏବେ ମଧ୍ୟ ରହିଛି । ଆଇନ କରାହୋଇ ରାଜାମାନଙ୍କର ଚୂଳକୁ ଉଡ଼ାଇ ଦିଆଯିବାର ଏତେ ବର୍ଷ ପରେ ମଧ୍ୟ ଗଡ଼ଜାତର ଅଧିକ ମଫସଲ ରଜାକୁ ରଜା ପରି ହିଁ ଦେଖୁଛନ୍ତି । ପରବର୍ତ୍ତୀ କାଳର ନୂଆ ନେତାମାନଙ୍କୁ ମଧ୍ୟ ରଜା ପରି ଆଦର ନେଉଛନ୍ତି । ପ୍ରଜାଶକ୍ତି ରଜା ପାଖରେ ଆଦୌ ନାହିଁ । ଗଡ଼ଜାତ ଆନ୍ଦୋଳନ ଯେଉଁମାନଙ୍କୁ ନେତା କଲା, କବି କଲା, ମନ୍ତ୍ରୀ କଲା ଏବଂ ପ୍ରତିନିଧି କରି ଭୁବନେଶ୍ୱରକୁ ପଠାଇଲା, ସେମାନେ ସମସ୍ତେ ପ୍ରଜାଠାରୁ ଦୂରରେ ଯାଇ ଠିଆ ହୋଇଛନ୍ତି —ଯଚନନଗରରେ ବାସ କରୁଛନ୍ତି ।

ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ ପ୍ରାୟ ରାଜନୀତିକ କ୍ଷେତ୍ରକୁ ଆସିବା ମାତ୍ରକେ ହିଁ ସେଠାରେ କେବଳ ନେତା ହୋଇ ରହିବାର ହିଁ ଦୁର୍ଭାଗ୍ୟକୁ ଭୋଗ କରିଥିଲେ । ଭାରତବର୍ଷର ସାମାଜିକ ଗଠନଗୁଡ଼ାକ ଯେଉଁପରି, ସେହି ଦୃଷ୍ଟିରୁ ଏଠାରେ ପ୍ରାୟ କେହି ହେଲେ ତଳୁ ଆରମ୍ଭ କରି ଉପରକୁ ଆସନ୍ତି ନାହିଁ । ତଳେ ଥିବା ମଣିଷମାନେ ତଳେ ରହନ୍ତି, କର୍ମୀ ହୁଅନ୍ତି, ଚୋଳକରି ହୁଅନ୍ତି; ଅନ୍ୟ ପକ୍ଷରେ ସିଏ ନେତା ହେବାର କଥା, ସିଏ ନେତା ହୋଇ ହିଁ କ୍ରୀଡ଼ାଙ୍ଗନ ଭିତରେ ପ୍ରବେଶ କରିଥାଏ । ଏହି ଦେଶରେ ଉପରକୁ ବିପ୍ଳବ ବୋଲି ଘୋଷିତ ହୋଇଥିବା ଏକାଧିକ ଅବସର ସମ୍ଭବତଃ ଏହି କାରଣଟିରୁ ହିଁ ଆଗକୁ ଆସି ଫସରଫାଟି ଯାଇଛି । ଆମର ଏଠି ନେତା ହେବାକୁ ହେଲେ ଓ ସମଗ୍ର କ୍ଷେତ୍ରଟିର ସୋପାନ-ଗୁଡ଼ିକୁ ଆଦୌ ଅଙ୍ଗେ ନିଭାଇବାକୁ ପଡ଼େ ନାହିଁ; ତେଣୁ ଆମର ଅଧିକାଂଶ ନେତାଙ୍କୁ ଏହିପରି ଅଭାବକୁ ସାଙ୍ଗରେ ନେଇ ଅଗ୍ରସର ହେବାକୁ ପଡ଼େ । ବସ୍ତୁତଃ, ଏହି ଦୁର୍ଭାଗ୍ୟଟି ସକାଶେ ସେମାନେ ମୂଳରୁ ଯେଉଁଠି ଥାଆନ୍ତି, ସବୁକାଳ ପାଇଁ ପ୍ରାୟ ସେଇଠି ରହିଯାଆନ୍ତି । ଉପରକୁ ଦେଖିବାକୁ ପାଉଁ ପଛକୁ ଆହୁରି ଅଧିକ ଲମ୍ବର ପାଉଁ ପିନ୍ଧୁଥାନ୍ତି, ଘୋଡ଼ା ପରେ ଘୋଡ଼ା ଓ ଘୋଡ଼ା ପରେ ହାତୀ ଚଢ଼ିଥାନ୍ତି ସତ, ମାତ୍ର ଭିତରେ ଫମ୍ପିଆ ହୋଇ ରହିଯାଇଥାନ୍ତି । ଏହି ଦୁର୍ଭାଗ୍ୟଟିକୁ ପୃଷ୍ଠଭୂମିରେ ରଖି ଭାରତୀୟ ଯାବତୀୟ ନେତୃତ୍ୱ ସ୍ଥାନ ଓ ସେଠାରେ ବସିଥିବା ବ୍ୟକ୍ତିମାନଙ୍କର ଆଚରଣ ବିଷୟରେ ଏକ ସମୀକ୍ଷାତ୍ମକ ବିଶ୍ଳେଷଣ ଅବଶ୍ୟ କରାଯାଇପାରିବ । ନବକୃଷ୍ଣ ଚୌଧୁରୀ ଜଣେ ଜମିଦାରର ପୁଅ ଥିଲେ, ଶାନ୍ତିନିକେତନରେ ପାଠ ପଢ଼ିଥିଲେ, ଇଂରାଜୀ ଜାଣିଥିଲେ, ତାଙ୍କର ବଡ଼ଭାଇ ଏଡ଼େ ବଡ଼ ହାକିମ ପଦ ତ୍ୟାଗ କରି ଦେଶର ଆନ୍ଦୋଳନରେ ଯୋଗ ଦେଇଥିଲେ; ତେଣୁ ପାହାଚ ପାହାଚ ହୋଇ ପାକଳ ହେବା ପାଇଁ, ଅର୍ଥାତ୍ ପ୍ରକୃତ ଅଭିଜ୍ଞତା ଲାଭ କରି ତଳୁ ଉପରକୁ ଆସିବା ଲାଗି ସିଏ ପ୍ରକୃତରେ ଯଥେଷ୍ଟ ସୁଯୋଗ ପାଇ ନ ଥିଲେ । ଆପଣାର କ୍ଷେତ୍ରଗୁଡ଼ିକ ସହିତ ପ୍ରଧାନତଃ ଏକ ଭାବପ୍ରବଣ ଆକର୍ଷଣ ହିଁ ତାଙ୍କୁ ଗାଁଠାରେ ରଖିଥିଲା । ଆଦର୍ଶବାଦ କହିଲେ ଆମ ଦେଶରେ ଅନ୍ତତଃ ଆମ ଦେଶର ନେତାମାନଙ୍କ ପାଇଁ କେବଳ ଏଇଥିରୁ ଗୁଡ଼ାଏ ବ୍ୟତୀତ ଆଉ ଅଧିକ କିଛି କ୍ୱଚିତ୍ ବୁଝାଇଥାଏ ।

'ଭାରତ ଛାଡ଼' ଆନ୍ଦୋଳନ ବେଳକୁ ଆପଣାର ସମକକ୍ଷ ଅନ୍ୟମାନଙ୍କ ସହିତ ଶ୍ରୀ ନବକୃଷ୍ଣ ଚୌଧୁରୀ ନେତୃ-ସ୍ଥାନୀୟମାନଙ୍କ ଭିତରେ ଗଣା ହୋଇସାରିଥିଲେ, ତେଣୁ କାର୍ଯ୍ୟତଃ ଆଦୌ କିଛି ଆଚରଣ କରିବା ପୂର୍ବରୁ ସରକାର ତାଙ୍କୁ ଧରିନେଲେ । ଏମାନଙ୍କୁ ସ୍ୱତନ୍ତ୍ର ସମ୍ମାନ ସହିତ ଅଟକବନ୍ଦୀ ବୋଲି କୁହାଯାଉଥିଲା । ବନ୍ଦୀମାନଙ୍କ ମେଳରେ ମଧ୍ୟ ସେମାନେ ତଥାପି ସ୍ୱତନ୍ତ୍ର, ତେଣୁ ଅଧିକ ଯତ୍ନ ଓ ସେବାର ଯୋଗ୍ୟ ହୋଇ ରହିଥିଲେ । ଅନ୍ୟ ରାଜନୀତିକ ବନ୍ଦୀମାନେ ମଧ୍ୟ ଏହି ତାରତମ୍ୟଟିକୁ ସ୍ୱାଭାବିକ ବୋଲି ମାନିନେଉଥିଲେ । ରାଜନୀତିକ ସ୍ୱାଧୀନତାର ତାଲଗଛଟି ଗସ୍ତର ସେପାଖରୁ ଦୃଶ୍ୟ ହୋଇ ଆସିବା ପରେ ଯାଇ ଅଟକବନ୍ଦୀମାନେ ଜେଲରୁ ଖଲାସ ହୋଇ ଆସିଲେ । ତାହାର ଅଳ୍ପ କେତେ ଦିନ ପରେ ନିର୍ବାଚନ ହୋଇଗଲା, ସତେ ଅବା କୌଣସି ଏକ ବାହାଘରର ବନ୍ଦୋବସ୍ତ କରିବା ପରେ ନେତାମାନେ ତଥିଟିକୁ ଆଖିଆଗରେ ରଖି ପ୍ରସ୍ତୁତ ହେବାକୁ ଲାଗିଲେ । ଇଂରେଜମାନେ ହଟିଯିବା ପରେ ନିର୍ଖୁଣ ଭାବରେ ସବୁକଥାକୁ ସେହିପରି ରଖି ଖଣ୍ଡାଟିର ମାଲିକ ହେବାକୁ ପ୍ରସ୍ତୁତ ହୋଇଗଲେ । ସ୍ୱାଧୀନତା ଆସିଲା, ତା'ପରେ ଦିଲ୍ଲୀରେ ସଭା ମଣ୍ଡାହୋଇ ସମ୍ବିଧାନ ଗଢ଼ାଗଲା, ନିର୍ବାଚନ ଏବଂ ସିଂହାସନ-ଆରୋହଣଗୁଡ଼ାକ ବିଷୟରେ ଗୋଟି ଗୋଟି ହୋଇ ଫଇସଲା ହୋଇଗଲା । ସମସ୍ତେ ଆପଣା କଳ୍ପନାର କଦଳୀଗଛରେ ନୂଆ ଭଣ୍ଡା ପଡ଼ିଥିବାର ସ୍ୱପ୍ନ ଦେଖିଲେ । ଜନତା ବା ଜନଶକ୍ତିର କଥା ଆଉ କାହାରି ମନେରହିଲା ନାହିଁ । ସ୍ୱାଧୀନତା ପରେ ଦେଶରେ ଯେଉଁ ଉତ୍ସାହ ତଥା ଉଦ୍‌ବେଳନ ଦୃଷ୍ଟିଗୋଚର ହୋଇଥିଲା, ତାହାକୁ ଏକ ଶକ୍ତିରେ ପରିଣତ କରି ଦେଶର ଭାଗ୍ୟକୁ ଅତ୍ୟନ୍ତ

ସୁନିର୍ଦ୍ଦିଷ୍ଟ ଭାବରେ ବୈପ୍ଳବିକ ସମଗ୍ର ପରିବର୍ତ୍ତନର ପଥରେ ହୁଏତ ଆଗକୁ କେତେ ପାହାଚ ପରିଚାଳିତ କରିନଆଯାଇ ପାରିଥା'ନ୍ତା । ମାତ୍ର କ୍ଲାନ୍ତ ସାଆନ୍ତମାନେ ତେଣିକି ମନଦେବାକୁ ଆଉ ପ୍ରାକ୍ଟିକାଲ୍ ପଲିଟିକ୍ସ୍ ବୋଲି ମନେକଲେ ନାହିଁ । ଆପେ କରିଆସିଥିବା ଯାବତୀୟ ଆନ୍ଦୋଳନକୁ ସତେ ଅବା ସାର୍ଟିଫିକେଟ ରୂପେ ବ୍ୟବହାର କରି ସେମାନେ ନିର୍ବାଚନର ନୂଆ ଧୂଗଟି ଭିତରକୁ ତେର୍ଚ୍ଛିପଡ଼ିଲେ । ଆଉ ଫେରିଆସି ପାରିଲେ ନାହିଁ । ଏବେ ମଧ୍ୟ ଫେରି ନାହାନ୍ତି । ଆଉ କେବେ ଫେରିବ ଫେରୁ ପଛକେ, ମାତ୍ର ସେମାନେ କେବେହେଲେ ଫେରିବେ ନାହିଁ ବୋଲି ଆପଣାର ଭୂତ ପାଖରେ ପ୍ରତିଜ୍ଞାବଦ୍ଧ ହୋଇଛନ୍ତି । ବୁଦ୍ଧିମାନ୍ ମନୀଷ କେବଳ ତାହାହିଁ କରିଥାଏ ।

ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ ସ୍ୱାଧୀନ ଭାରତବର୍ଷର ପ୍ରଥମ ନିର୍ବାଚନରେ ହିଁ ପ୍ରାର୍ଥୀ ହୋଇ ଛିଡ଼ା ହୋଇଥିଲେ, ବିଧାନସଭାକୁ ଗଲେ ଏବଂ ପ୍ରଥମ ଖେପାରେ ହିଁ ବଡ଼ମାଛମାନଙ୍କ ସହିତ ଏକାଠି ଗୁନ୍ଥାହେଲେ, ମନ୍ତ୍ରୀ ହୋଇ ରହିଲେ । କୃଷକ ଆନ୍ଦୋଳନ, ଗଡ଼ଜାତ ଆନ୍ଦୋଳନ ଏବଂ ଏପରି କି ସୋସିଆଲିଷ୍ଟ ଆନ୍ଦୋଳନ ମଧ୍ୟ ପଛରେ ପଡ଼ିରହିଲା । ଶ୍ରୀଯୁକ୍ତ ଚୌଧୁରୀ ଏସବୁ ବିଷୟରେ ଏଣିକି ଆହୁରି ଅଧିକ ଅଧ୍ୟୟନ କଲେ, ବହି ପଢ଼ିଲେ, ମାତ୍ର ସରକାର ହେଲେ । ଉକ୍ତ ଆନ୍ଦୋଳନମାନ ପ୍ରଧାନତଃ ଯାହା ବିରୁଦ୍ଧରେ ଉଦ୍ଦିଷ୍ଟ ହୋଇ ରହିଥା'ନ୍ତା, ସିଏ ସେହିମାନଙ୍କର ପକ୍ଷରେ ରହିଲେ । ମହାତ୍ମା ଗାନ୍ଧୀ ଭାରତବର୍ଷ ସ୍ୱାଧୀନ ହେବା ପରେ ଯେଉଁ ଜାତୀୟ କଂଗ୍ରେସକୁ ଭାଙ୍ଗିଦେବାକୁ କହିଥିଲେ, ସିଏ ସେହି କଂଗ୍ରେସ ଭିତରେ ରହିଲେ, ଏକାବେଳକେ ଜ୍ୟେଷ୍ଠର ଆସନରେ ଯାଇ ଆସୀନ ହେଲେ । କ୍ଲାନ୍ତ ଓ ତେଣୁ କ୍ଷମତାକାମୀ ଅନେକ କଂଗ୍ରେସ ମନ୍ତ୍ରୀ ଓ ନେତାଙ୍କ ଆଖିରେ ଗାନ୍ଧୀ ସେତେବେଳେ ସତେ ଅବା ଜଣେ ପାକୁଆ ଅଜା ପରି ଦିଶୁଥିଲେ । ଶ୍ରୀ ନବକୃଷ୍ଣ ଚୌଧୁରୀ ଗାନ୍ଧୀଜୀ ତାଙ୍କ ଜୀବନର ଶେଷ ଛଅମାସ ଲେଖିଥିବା ଲେଖାଗୁଡ଼ିକ କ'ଣ ସେତେବେଳେ ପଢ଼ି ନ ଥିଲେ ? ତେଣୁ, ସେ ସେଗୁଡ଼ିକ ସଙ୍ଗେ ସେ ଅନ୍ୟ ଅଧିକ ଆଖିଦୃଶିଆ କଥାଟିକୁ ବାଛି ନେଲେ, ଲୋକସେବକ ନ ହୋଇ ରାଜସେବକ ହିସାବରେହିଁ ସିଏ ଯେ ଲୋକମାନଙ୍କର ସେବା କରିପାରିବେ ବୋଲି ନିଷ୍ପତ୍ତି କଲେ । ତାହା କ'ଣ ସେତେବେଳେ ତାଙ୍କର ବିବେକକୁ ଆଦୌ ଦଂଶନ କରି ନ ଥିବ ? ମାତ୍ର ସେହିଦିନଠାରୁ ଶ୍ରୀଯୁକ୍ତ ଚୌଧୁରୀ ଆପଣା ଭିତରେ ସତେ ଅବା ଦୁଇ ଭାଗରେ ବିଭକ୍ତ ହୋଇ ରହିଲେ, ସେହି ଉଭୟ ଭାଗରେ ପାରସ୍ପରିକ ଦ୍ୱନ୍ଦ୍ୱ, ତଜ୍ଜନିତ କଳହ ଓ ତଜ୍ଜନିତ ଏକ ମର୍ମନ୍ତୁଦ ଗ୍ଳାନି ମଧ୍ୟରେ ପ୍ରାୟ ଶେଷ ପର୍ଯ୍ୟନ୍ତ ସନ୍ତାପିତ ହୋଇ ରହିଲେ । ଯେଉଁ ବାଟରେ ଯିବେ ବୋଲି ହୃଦୟଠାରୁ ସର୍ବାଧିକ ସମର୍ଥନ ପାଉଥିଲେ, ସେବାଟରେ ମୋଟେ ଯାଇପାରିଲେ ନାହିଁ, ଯେଉଁ ବାଟରେ ଓ ଯେଉଁ ଜନ୍ତୁମାନଙ୍କ ସହିତ ଗୋଟିଏ ଗୋଷ୍ଠୀର ହୋଇ ବାଟ ଚାଲିବା ଲାଗି ହୁଏତ ତାଙ୍କର ସବୁଠାରୁ ଅଧିକ ଅରୁଚି ରହିଥିଲା, ସେହି ତାଙ୍କର ମଧ୍ୟରେ ରହିଥିବା କୌଣସି ଆଉ ଏକ ଚକ୍ରର ଚକ୍ରାନ୍ତରେ ପଡ଼ି ସିଏ ସେହିମାନଙ୍କ ସହିତ ଯାଇ ବାନ୍ଧିହୋଇ ଯାଉଥିଲେ । ଏହି ଦାରୁଣ ବିଡ଼ମ୍ବନା ତାଙ୍କୁ ପ୍ରାୟ ନିଜ ସର୍ବସ୍ୱ ଜୀବନର ଶେଷଯାଏ ଭୋଗ କରିବାକୁ ପଡ଼ିଥିଲା । ଆପଣାର ଅସଲ ରାଜନୀତିକ ଧର୍ମଟି ସହିତ ଟିକିଏ ଅଧିକ ସଚ୍ଚୋଟତା ରହିଥିଲେ ସ୍ୱାଧୀନ ଭାରତରେ ସିଏ ଅନ୍ତତଃ ବିରୋଧୀମାନଙ୍କ ପକ୍ଷରେ ରହିଥାନ୍ତେ; ତଥାପି ସିଏ ତାହା କରିପାରିଲେ ନାହିଁ । ସର୍ବଦା ସରକାରୀ ପକ୍ଷରେ ରହିଥିଲେ । ଏସବୁ ଆତ୍ମବିରୋଧର ମାତ୍ର ଦଶବର୍ଷ ପରେ ସିଏ ଯେତେବେଳେ ସରକାରଙ୍କର ଉଗ୍ର ବିରୋଧୀ ହେଲେ, ସେତେବେଳେ ପଛକୁ ଅନାଇ ଆପଣାର ତତ୍କାଳୀନ ଭୂମିକାଟି ଉପରେ ଦୃଷ୍ଟିପାତ କରି ସିଏ ହୁଏତ କେତେ ଥର ନିଜକୁ ହସିଥିବେ, ଆପଣାର ସେହି ଅନ୍ୟ ଆଚରଣଟା ଉପରେ କେତେ ଚଡ଼ିଚକ୍ର ହୋଇଥିବେ ।

ମହାତ୍ମା ଗାନ୍ଧୀଙ୍କର ମୌଳିକ ଶିକ୍ଷାର ବିଷୟ ୧୯୩୭ ମସିହାରୁ । ସ୍ୱାଧୀନତା ପରେ ଓଡ଼ିଶାରେ ଯେଉଁ କଂଗ୍ରେସ ମନ୍ତ୍ରିମଣ୍ଡଳ ତିଆରି ହୋଇଥିଲା, ସେମାନେ ଏକ ଅହେତୁକ ଉତ୍ସାହରେ ମୌଳିକ ଶିକ୍ଷାକୁ ମଧ୍ୟ ଗାନ୍ଧୀଗୋଦାମରୁ କିଣିଆଣି ସରକାରୀ କରିବାକୁ ଇଚ୍ଛା କରିଥିଲେ । ମୌଳିକ ଶିକ୍ଷାକୁ ଏକ ନୂତନ ଶିକ୍ଷାପ୍ରେରଣା ବୋଲି ବୁଝିଥିବାରୁ ଯେ ସରକାରୀ ନୂଆ ଖାମିନ୍ଦମାନେ ତା'ପ୍ରତି ଆଗ୍ରହ ଦେଖାଇଥିଲେ, ସେକଥା ଆଦୌ ଠିକ୍ ନୁହେଁ । ଏହାକୁ ସେମାନେ ହୁଏତ ଗାନ୍ଧୀଜୀଙ୍କ ଦ୍ୱାରା ପ୍ରବର୍ତ୍ତିତ ଗୋଟିଏ ନୂଆ କଅଁଳର ଶିକ୍ଷାବିବାଦ ବୋଲି ବୁଝିଥିଲେ ଓ ଗାନ୍ଧୀଜୀଙ୍କ ପ୍ରତି ରହିଥିବା ସେମାନଙ୍କର ଅନୁରକ୍ତିକୁ ଏକ ଆଖିଦୃଶିଆ ପ୍ରମାଣ ଦେବା ଲାଗି ଏହାକୁ ସରକାରୀ ପଲିସି ରୂପେ ଗ୍ରହଣ କରିଥିଲେ ଓ ସରକାରୀ ନିୟମଖାନାର ଯାବତୀୟ ନିହାଣ ଓ ବାଟିସି ନେଇ ତା'ଭିତରେ ଯାଇ ହାବୁଡ଼ିଥିଲେ । ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ ଠିକ୍ ସେତିକିବେଳେ ମନ୍ତ୍ରିମଣ୍ଡଳରେ ନ ଥାନ୍ତି । ସରକାରଙ୍କ ତରଫରୁ ଏହି ନୂତନ କାର୍ଯ୍ୟକ୍ରମଟିକୁ ସମୃଦ୍ଧ କରିବା ଲାଗି ସିଏ

ସ୍ୱେଚ୍ଛାପ୍ରଣୋଦିତ ହୋଇ ସାରା ଓଡ଼ିଶାର ମୌଳିକ ଶିକ୍ଷାସଂଗଠକ ରୂପେ ଆପଣାକୁ ଅଧିଷ୍ଠିତ କରିଥିଲେ । କଥିତ ଅଛି, ଗାନ୍ଧୀଜୀଙ୍କ ଆଶ୍ରମ ସେବାଗ୍ରାମରେ ମୌଳିକ ଶିକ୍ଷାର ପ୍ରୟୋଗ କରୁଥିବା ଉତ୍ସାହୀ କର୍ମୀମାନେ ତାଙ୍କୁ ସେହିପରି କରିବା ଲାଗି ପ୍ରବର୍ତ୍ତିନା ଦେଇଥିଲେ । ସ୍ୱାଧୀନ ଭାରତର ନୂତନ ସରକାର ଆଉ ଯାହା କରିବ ପଛକେ, ସିଏ ଯେ ଗାନ୍ଧୀଙ୍କର ମାର୍ଗରେ ମୋଟେ ଚାଲିବ ନାହିଁ, ଭାରତବର୍ଷରେ ସେତେବେଳକୁ ସେକଥା ଯଥେଷ୍ଟ ପରିମାଣରେ ପରିଷ୍କାର ହୋଇଯାଇଥିଲା । ଏକ ଲୋକହିତୈଷୀ ପୁଞ୍ଜିବାଦପ୍ରଧାନ ସମାଜକୁ ଦୃଢ଼ ଭିତ୍ତି କରି ଆପନା କରିବା, ସରକାରଙ୍କର ଅର୍ଥନୈତିକ ଓ ସାମାଜିକ ଆଦର୍ଶ ସେତିକିଠାରୁ ବେଶି ଆଗକୁ ଯିବା ପାଇଁ ଆଦୌ ପ୍ରସ୍ତୁତ ନ ଥିଲା । ସ୍ୱାଧୀନ ଭାରତର ଶାସକ ନେତାମାନଙ୍କ ଭିତରେ ନାନା ଅନ୍ୟ ବୃହଦାକାଂକ୍ଷାଗୁଡ଼ିକର ଦାଉରେ ଗାନ୍ଧୀ-ମାର୍ଗ ପ୍ରତି ଏକଦା ରହିଥିବା ସେମାନଙ୍କର ଅନୁରକ୍ତି ଯେ କ୍ରମଶଃ ଗୌଣ ହେବାରେ ଲାଗିଛି, ସ୍ୱୟଂ ଗାନ୍ଧୀ ସ୍ୱାଧୀନ ଭାରତରେ ବଞ୍ଚିଥିବା ତାଙ୍କର ସେହି ଅଳ୍ପ କେତୋଟି ସପ୍ତାହ ଭିତରେ ମଧ୍ୟ ଯଥେଷ୍ଟ ପରିମାଣରେ ସେହି କଥାଟିକୁ ସ୍ପଷ୍ଟ କରି କହିଦେଇଥିଲେ । ତଥାପି ଶ୍ରୀ ନବକୃଷ୍ଣ ଚୌଧୁରୀ ହୁଏତ ସକଳ ନିଷ୍ଠାର ସହିତ ସରକାରୀ ଶିକ୍ଷାବ୍ୟକର ମଧ୍ୟରେ ପଶିଥିଲେ ଓ ହୁଏତ ତାଙ୍କର ବେଳରୁହିଁ ମୌଳିକ ଶିକ୍ଷାର ଅସଲ ଗୋଡ଼ଗୁଡ଼ିକ ଗୋଦରା ହେବାକୁ ଆରମ୍ଭ କଲେ । ସୌଭାଗ୍ୟର କଥା, ଶ୍ରୀ ଚୌଧୁରୀଙ୍କୁ ସେହି ଭୂମିକାରେ ଗୁଡ଼ାଏ ସମୟ ରହିବାକୁ ହୋଇ ନ ଥିଲା । ସିଏ ଚିରଦିନ ଲାଗି ଅଙ୍ଗୀକାରବଦ୍ଧ ହୋଇ ରୁଚ୍ଛା ସେଥିକରେ ରହିବେ ବୋଲି ତା'ଭିତରେ ଥିଲାବେଳେ ହୁଏତ କଦାପି ଭାବି ନ ଥିଲେ । ତେଣୁ ମାତ୍ର ଅଳ୍ପ କେତେ ମାସ ପରେ ସିଏ ସେଠୁ ବାହାରି ଆସି ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେଲେ ।

ଭାରତୀୟ ରାଜନୈତିକ ଘାଟର ଇତିହାସରେ ଏପରି କରିବା ଆଦୌ ଏକ ନୂତନ ଚମତ୍କାର ନୁହେଁ । ଭାରତ ସରକାରଙ୍କର ଗୋଷ୍ଠୀ-ଉନ୍ନୟନ ବିଭାଗରେ ସିଏ ସର୍ବପ୍ରଥମ ମନ୍ତ୍ରୀ ହେଲେ, ତା' ପୂର୍ବରୁ ସିଏ ପଞ୍ଜାବର ଗୋଟିଏ ଉନ୍ନୟନ ବ୍ଲକ୍‌ରେ ସାରା ଦେଶକୁ ମଡ଼େଲ୍ ଦେଖାଇବା ସକାଶେ ଉନ୍ନୟନ-ଅଧିକାରୀ ରୂପେ କାର୍ଯ୍ୟ କରିବାକୁ ଯାଇଥିଲେ । ଏକଦା ଶ୍ରୀ ଜୟପ୍ରକାଶ ନାରାୟଣ ମଧ୍ୟ ପାଟଣା ସହରର ଗ୍ରୁଡ଼ ମୁଙ୍ଗେର ଜିଲ୍ଲାର ଗୋଟିଏ ଗାଆଁରେ ଜଣେ ସାଧାରଣ କର୍ମୀ ହୋଇ ରହିବାକୁ ଯାଇଥିଲେ । ଏକାବେଳକେ ତଳେ ରହି ବିଚରା ମଣିଷମାନଙ୍କୁ କାବୁ କରିଥିବା ଦୁଷ୍ଟ କଳ ଓ ତାକୁ ଚଳାଉଥିବା ହାକମମାନଙ୍କର ସମ୍ମୁଖୀନ ହେବା ପାଇଁ ସେ ଏକ ସାଧାରଣ ବିବୃତି ଦେଇ ନିଜର ଏହି ଘୋଷଣାଟି କରିଥିଲେ । ଲୋକନାୟକ ମୋଟେ ଛଅଟା ମାସ ବି ସେହି ଗାଆଁରେ ରହିପାରିଲେ ନାହିଁ । ତାଙ୍କର ଦୈବ ତାଙ୍କୁ ପୁନର୍ବାର ସର୍ବଭାରତୀୟ ରାଜନୀତି ଓ ସ୍ୱଧର୍ମଗତ ଜୀବନ ମଧ୍ୟକୁ ଟାଣିନେଇ ଆସିଥିଲା । ସରକାର ମୌଳିକ ଶିକ୍ଷାକୁ ପୋଷି ଆଣିବା ପରେ ତାହାର ମହତ ଗଲା; ସରକାରୀ ଅନୁଗ୍ରହ ଅର୍ଥାତ୍ ଦୌରାତ୍ମ୍ୟ ଭିତରେ ପଡ଼ି ତାହାର ସକଳ ସମ୍ଭାବନା ଅନ୍ତର୍ହିତ ହୋଇଗଲା ଓ ବଡ଼ପୁରୁଷମାନଙ୍କର ହାତୁଡ଼ିରେ ପଡ଼ି ତାହା କ୍ରମେ ଅଲକ୍ଷଣାରୁ ଆହୁରି ଅଲକ୍ଷଣା ହେଲା । "ମୋ ମତରେ ଶିକ୍ଷା ସମ୍ପୂର୍ଣ୍ଣଭାବେ ସରକାରୀ ନିୟନ୍ତ୍ରଣରୁ ମୁକ୍ତ ହେବା ଉଚିତ"—ଏକଥା ଶ୍ରୀ ନବକୃଷ୍ଣ ଚୌଧୁରୀ ଅନେକ ବର୍ଷ ପରେ ସରକାର ଭିତରେ ନ ଥିଲାବେଳେ କହିଥିଲେ । ମାତ୍ର ସରକାର ଭିତରେ ସବା ଉଚ୍ଚ ଥାନରେ ବସିଥିବା ସମୟରେ ହୁଏତ ସେ ସେକଥା ଭାବୁ ନ ଥିଲେ । ଅଥବା ବ୍ୟକ୍ତିଗତ ଭାବରେ ଭାବୁଥିଲେ ମଧ୍ୟ ସେହି ଅନୁସାରେ କାର୍ଯ୍ୟ କରିବାକୁ ଓ କଥା କହିବାକୁ ହୁଏତ ନିଜକୁ ଅସମର୍ଥ ମଣୁଥିଲେ କିମ୍ବା ଅତ୍ୟାବଶ୍ୟକ ବୋଲି ଭାବୁ ନ ଥିଲେ । କେବଳ ମୌଳିକ ଶିକ୍ଷା ନୁହେଁ, ଶିକ୍ଷାର ସମଗ୍ର ସ୍ଥିତି କ୍ରମଶଃ ଯେଉଁ ଶୋଚନୀୟ ଭାବରେ ପରିଣତ ହୋଇଛି, ସେଥିରେ ଦାୟୀ ହେବାର କ୍ଷେତ୍ରରେ ସରକାରୀ ଭାଗଟି ମଧ୍ୟରେ ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କର ମଧ୍ୟ ନିଶ୍ଚୟ ଏକ ଅଂଶ ରହିଛି । ଅଶ୍ୱତ୍ଥାମାଙ୍କୁ ମାରିବାରେ ରାଜା ଯୁଧିଷ୍ଠିରଙ୍କର ମଧ୍ୟ ଏକ ଭାଗ ଅବଶ୍ୟ ରହିଥିଲା ।

ଓଡ଼ିଶାରେ ଭୂଦାନର ଗଙ୍ଗା ବହୁଥିବା ସମୟରେ ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ ଓଡ଼ିଶା ରାଜ୍ୟର ମୁଖ୍ୟମନ୍ତ୍ରୀ ଥିଲେ । ଆଚାର୍ଯ୍ୟ ବିନୋବା କହୁଥିଲେ ଯେ, ସିଏ ଲୋକମାନଙ୍କଠାରୁ ଭୂମି ମାଗିବାକୁ ଆସିନାହାନ୍ତି, ଶକ୍ତି ମାଗିବାକୁ ଆସିଛନ୍ତି । ରାଜଶକ୍ତିର ସମ୍ମୁଖରେ ଲୋକଶକ୍ତିର ଉଦ୍‌ବୋଧନ ଏବଂ ତାହାରି ଦ୍ୱାରା ଏକ ନୂତନ ମୂଲ୍ୟ ଓ ନୂତନ ସମାଜର ଭିତ୍ତିସ୍ଥାପନ—ଏହାହିଁ ଭୂଦାନ ଯାତ୍ରାର ଅସଲ ଆବେଦନ ଥିଲା । ରାଜ୍ୟର ମୁଖ୍ୟମନ୍ତ୍ରୀ ହିସାବରେ ଶ୍ରୀ ଚୌଧୁରୀ ଏହି ଆନ୍ଦୋଳନକୁ ସ୍ୱାଗତ କରିଥିଲେ । ମାତ୍ର ଯୁଗପତ୍ ଭାବରେ ସରକାର ଏବଂ ସର୍ବୋଦୟର କଥା କହି ସେ ଅନ୍ତତଃ ସର୍ବୋଦୟ ଲାଗି ଅନେକ ବିଡ଼ମ୍ବନା ସୃଷ୍ଟି କରିବାରେ ନିମିତ୍ତ ହୋଇଥିଲେ । ଗାଦୀ ସହିତ ଲଢ଼େଇ କରିବାକୁ ବାହାରିଥିବା ଲୋକମାନେ ଯେତେବେଳେ ଗାଦୀର ଅନୁଗ୍ରହମଣ୍ଡଳ ଭିତରେ ଆସି ପଶିଯାଇଛନ୍ତି, ସେତେବେଳେ ଗାଦୀର ହିଁ ବିଜୟ ହୋଇଛି ଏବଂ ବିପ୍ଳବୀମାନଙ୍କର ଅସଲ

ବ୍ୟାକୁଳତାଗୁଡ଼ିକ କ୍ରମେ ନଷ୍ଟପ୍ରଭ ଓ ମଳିନ ହୋଇଯାଇଛି । ମୁଖ୍ୟମନ୍ତ୍ରୀ ଭୂଦାନ ଏବଂ ସର୍ବୋଦୟରେ ଆଗ୍ରହୀ ହେବାରୁ ଆପଣାର ଜୀବିକାକାର୍ଯ୍ୟଟିକୁ ହିଁ ଏକମାତ୍ର ଗ୍ରାହ୍ୟ ବୋଲି ଗ୍ରହଣ କରିଥିବା କେତେ କେତେ ହାକିମ ଓ ଅମଲା ସେତେବେଳେ କପଟ କରି ମୁଖ୍ୟମନ୍ତ୍ରୀଙ୍କର ଏହି କାର୍ଯ୍ୟଟି ପାଇଁ ମଧ୍ୟ ଶ୍ରଦ୍ଧା ଦେଖାଇଥିଲେ । ଯେକୌଣସି ବିପ୍ଳବ ଅମଲାମାନଙ୍କ ହାତରେ ପଡ଼ିଲେ ଯେଉଁ ଦଶା ହୁଏ, ଓଡ଼ିଶାରେ ସେତେବେଳେ ଅନେକ ସମୟରେ ସେହିପରି ହେଉଥିଲା । ସର୍ବୋଦୟ ଏବଂ ସରକାର ମଧ୍ୟରେ କୌଣସି ପାର୍ଥକ୍ୟ ଅଛି କି ନାହିଁ, ସାଧାରଣ ନାଗରିକମାନେ ସେ କଥା ନେଇ ଭାରି ଦ୍ୱନ୍ଦ୍ୱରେ ପଡ଼ୁଥିଲେ । ସର୍ବୋପରି, ବର୍ତ୍ତମାନର ସମାଜ ଓ ତାହାର ପ୍ରତିବନ୍ଧିତ୍ୱ କରୁଥିବା ସଂସ୍କାରର ସ୍ୱୀକୃତ ମିଥ୍ୟାଗୁଡ଼ାକୁ ଭାଙ୍ଗି ସର୍ବୋଦୟ ଓ ଭୂଦାନ ଯେ ଏକ ନୂତନ ଆଭିମୁଖ୍ୟର ଅବତାରଣା କରିବାକୁ ଯାଉଛି, ସେହି କଥାଟିକୁ ହଜମ କରିବା ସେମାନଙ୍କ ପକ୍ଷରେ ଭାରି କଷ୍ଟକର ହେଉଥିଲା । ମୁଖ୍ୟମନ୍ତ୍ରୀ ସର୍ବୋଦୟର ପକ୍ଷ ନେବାରୁ ସର୍ବୋଦୟର ନେତାମାନେ କ୍ରମେ ସରକାରୀ ବାବାଜୀଙ୍କ ପରି ଦେଖାଗଲେ, ସରକାରୀ ବାବାଜୀଙ୍କର ମର୍ଯ୍ୟାଦା ପାଇଲେ । ମାତ୍ର ତାହା ଅସଲ ପ୍ରେରଣାଗୁଡ଼ାକୁ ହୁଏତ ଶୀତଳ କରିଦେବାରେ ଭାରି ସାହାଯ୍ୟ କରିଥିଲା । ବିପ୍ଳବ ମାଡ଼ ଖାଇଗଲା । ଏକ ଦୂର ଅତୀତରେ ରୋମ୍ ସମ୍ରାଟ୍ କନ୍‌ଷ୍ଟାଣ୍ଟାଇନ୍ ସ୍ୱୟଂ ଖ୍ରୀଷ୍ଟ ଧର୍ମ ଗ୍ରହଣ କଲା ପରେ ଖ୍ରୀଷ୍ଟଧର୍ମର ଅସଲ ଜ୍ୟୋତିଗୁଡ଼ିକ ଯେପରି ନିଭି ନିଭି ଯାଇଥିଲା, ରାଜା ଅଶୋକ ବୌଦ୍ଧଧର୍ମର ମହାପାଳକ ବୋଲି ନିଜକୁ ଘୋଷଣା କରିବା ପରେ ଭାରତବର୍ଷରେ ବୌଦ୍ଧଧର୍ମର ମୂଳ ପ୍ରେରଣାଟିର ଯେପରି ଶୀଘ୍ର ତୁଟି ଯାଇଥିଲା, ଇଏ ପ୍ରାୟ ସେହିପରି ହେଲା । ସରକାରେ ତ ହୃଦୟ ପରିବର୍ତ୍ତନ ହେଲା ନାହିଁ, ମାତ୍ର ବିପ୍ଳବୀମାନଙ୍କର ଭୂମିକାରେ କ୍ରମଶଃ ପରିବର୍ତ୍ତନ ଘଟୁଥିବା ପରି ବୋଧ ହେଲା । ସର୍ବୋଦୟ ଆନ୍ଦୋଳନ ଭୁବନେଶ୍ୱର ଓ କଟକକୁ ଆଶ୍ରା କରି ରହିବାକୁ ବାଧ୍ୟ ହେଲା । ତା'ପରେ ଆଚାର୍ଯ୍ୟ ବିନୋବା ଆପଣାକୁ ସେହି ଆନ୍ଦୋଳନରୁ କ୍ରମଶଃ ଅପସାରିଇ ନେଲେ, ମୌନ ଅବଲମ୍ବନ କଲେ । ଶେଷରେ ସ୍ୱେଚ୍ଛାରେ ଆପଣାର କ୍ଷେତ୍ରକୁ ମଧ୍ୟ ପ୍ରତ୍ୟାହୃତ କରିନେଲେ । ଜରୁରୀ ଅବସ୍ଥା ଲାଗୁ ହୋଇଥିବା ସମୟରେ ସର୍ବୋଦୟର ନେତାମାନେ ଦୁଇଭାଗ ହୋଇଗଲେ, ହୁଏତ ପରସ୍ପରକୁ ହିଁ ନିଜର ସବୁଠାରୁ ଅଧିକ ବର୍ଜନୀୟ ପ୍ରତିକୂଳ ପକ୍ଷ ବୋଲି ବିଚାର କଲେ । ବିପ୍ଳବର ଅସଲ ଇଙ୍ଗିତଗୁଡ଼ାକୁ ଚିହ୍ନି ନ ପାରିଲେ ବିପ୍ଳବ ଏହିପରି ଭାବରେ ଶୀତଳ ଓ ଶିଥିଳ ହୋଇଆସେ । ବର୍ତ୍ତମାନ ଭୂଦାନ ଅତୀତର ଏକ ପ୍ରସଙ୍ଗରେ ପରିଣତ ହେଲାଣି, ତାହାର ସ୍ମୃତିମାନ ଲେଖା ହେଲାଣି । ଦେଶରେ ଯେଉଁ ସମୟରେ ଗାନ୍ଧୀ ବିଚାରର ଶିବିରଟି ହିଁ ସବଳତମ ଓ ସବୁଠାରୁ ଅଧିକ ନିର୍ଭରଯୋଗ୍ୟ ନେତୃତ୍ୱ ଦେଇପାରିବ ବୋଲି ଦେଶର ଜନଗଣ ଅନ୍ୟାନ୍ୟ ଯୁକ୍ତିଯୁକ୍ତ ଭାବରେ ପ୍ରତ୍ୟାଶା କରୁଥିଲେ, ଠିକ୍ ସେହି ସମୟରେ ସେହି ଶିବିର ବର୍ତ୍ତମାନ ସତେ ଅବା ଚତୁର୍ମାସ୍ୟା ପାଳନ କରୁଛି ଏବଂ ସତେ ଅବା ଏକ କେବଳ ବିନୋଦନ ଭାବରେ ପରିବେଶ-ସଂରକ୍ଷଣ, ଗୋହତ୍ୟା-ନିଷେଧ, ନାଗରୀଲିପି-ପ୍ରଚଳନ ପ୍ରଭୃତି ଅନ୍ୟାନ୍ୟ କାର୍ଯ୍ୟକ୍ରମ ମଧ୍ୟରେ ରହି ଆପଣାକୁ ସକ୍ରିୟ ବୋଲି ଭାବିବା ଲାଗି ଚେଷ୍ଟା କରୁଛି । ସରକାରୀ ନଅରଗୁଡ଼ାକ ଭିତରେ ପଶି ଓ ସରକାରୀ ଅର୍ଥାନୁଦାନରେ ସେବା କାମ, ଶାନ୍ତି କାମ ଓ ତତ୍ତୁଲ୍ୟ ଆହୁରି କେତେ ପ୍ରକାରର ପାର୍ଶ୍ୱ କାମ କରି ସୁନ୍ଦର ବୀରମାନେ କାଳକ୍ଷେପଣ କରୁଛନ୍ତି ।

ସରକାରୀ ମନ୍ତ୍ରୀପଦ ଛାଡ଼ି ସମ୍ପୂର୍ଣ୍ଣ ସମୟ ଦେଇ ସର୍ବୋଦୟ ଆନ୍ଦୋଳନରେ ଯୋଗ ଦେବାକୁ ନିଷ୍ପତ୍ତି କରିବା ପରେ ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ ସେହି ଆନ୍ଦୋଳନକୁ ଏକ ଯଥାର୍ଥ ମୋଡ଼ ଦେଇପାରିଥାନ୍ତେ । ଗାନ୍ଧୀ କଥା ଭିତରେ ଯେ ଏକ ବୈପ୍ଳବିକ ଦିଗ ସବୁବେଳେ ରହିଆସିଛି ଏବଂ ଗାନ୍ଧୀ-କାର୍ଯ୍ୟକ୍ରମର ଔପଚାରିକ ନେତୃତ୍ୱଗୁଡ଼ାକ ଗାନ୍ଧୀ ଅନ୍ତେ ସେଗୁଡ଼ିକୁ ଯେ ପ୍ରାୟ ସଚେତନ ଭାବରେ ଅବହେଳା କରିଆସିଛନ୍ତି, ଏହି ଦେଶରେ ସେ ଅନ୍ତତଃ ସେତିକି କଥା କହିଆନ୍ତେ । ସେତେବେଳେ ଯେଉଁ କଥାଗୁଡ଼ିକୁ ସେ ବିଭିନ୍ନ ବ୍ୟକ୍ତିଙ୍କ ସହିତ କଥୋପକଥନର ଛଳରେ କହୁଥିଲେ, ସେଗୁଡ଼ିକୁ ଏକ ବିକଳ୍ପ ଆଭିମୁଖ୍ୟର ଉକ୍ତିରୂପେ ସାଧାରଣରେ ବ୍ୟକ୍ତ କରିପାରିଥାନ୍ତେ । ଶ୍ରୀଯୁକ୍ତ ଚୌଧୁରୀ ସେ କଥା କଲେ ନାହିଁ । ସର୍ବୋଦୟର ବାବାଜୀମାନଙ୍କ ଭିତରେ କୁଆଡ଼େ ସାମିଲ ହୋଇଗଲେ । ରୁଷିଆର ଲେନିନ୍ ତାଙ୍କ ସମୟରେ ଯେଉଁମାନଙ୍କୁ ଲକ୍ଷ୍ୟ କରି Gentleman Anarchists ବା Aristocratic Anarchism ପ୍ରଭୃତି ଶ୍ଳେଷାତ୍ମକ ଶବ୍ଦଗୁଡ଼ିକର ବ୍ୟବହାର କରୁଥିଲେ, ଗାନ୍ଧୀ ଅନ୍ତେ ପ୍ରାୟ ସେହିପରି କେତେ ଜଣ ବ୍ୟକ୍ତି ହିଁ ସର୍ବୋଦୟ ଶିବିରର ନେତୃତ୍ୱ ଗ୍ରହଣ କରିଥିଲେ । ସେମାନେ ସମ୍ପୂର୍ଣ୍ଣ ବିପ୍ଳବ କଥା କହୁଥିଲେ, ଶାସନମୁକ୍ତ ସମାଜ କଥା କହୁଥିଲେ, କର୍ମୀମାନଙ୍କୁ ନୂଆ ସମ୍ମୋହକମାନ ଯୋଗାଇ ଦେବାକୁ ପ୍ରାୟ ପ୍ରତିବର୍ଷ ନୂଆ ନୂଆ ଶବ୍ଦାବଳୀ ସୃଷ୍ଟି କରୁଥିଲେ, ମାତ୍ର ତେଣେ ଭିତରେ ଆପଣାର ଅନ୍ତ ଭିତରେ ନିର୍ଧୂମ ବାବାଜୀ ହୋଇ ରହିଥିଲେ । ଆପଣାର ଯାବତୀୟ ଅନ୍ୟ ପ୍ରକାରର ପୃଷ୍ଠଭୂମି ସତ୍ତ୍ୱେ ଶ୍ରୀଯୁକ୍ତ ଚୌଧୁରୀ ମଧ୍ୟ ତାହାରି ମଧ୍ୟରେ ଭାରି ଚମତ୍କାର

ଭାବରେ ଖାପ ଖାଇଗଲେ । ତାଙ୍କୁ ହୁଏତ ସେହିପରି ଭାବରେ ଶୀତଳ ଏବଂ ନୀରବ କରି ରଖିଦେବା ସକାଶେ ସର୍ବୋଦୟର ବଡ଼ ବଡ଼ ମଞ୍ଚମାନଙ୍କରେ ବଡ଼ ବଡ଼ ମୁହଁରୁ ତାଙ୍କୁ ବେଳେ ବେଳେ ରାଜର୍ଷି, ରାଜ୍ୟତ୍ୟାଗୀ ଗୌତମବୁଦ୍ଧ ଓ ସେହିପରି କେତେ ମାଧୁର୍ଯ୍ୟମୟ ଶବ୍ଦଦ୍ୱାରା ସମ୍ବୋଧିତ କରାଯାଉଥିଲା । ସ୍ୱୟଂ ଶ୍ରୀ ଚୌଧୁରୀ ହୁଏତ ସର୍ବୋଦୟ ଆନ୍ଦୋଳନ ଆଉସବୁ କ'ଣ କରୁ ବୋଲି ଚିନ୍ତା କରୁଥିଲେ. ଶେଷରେ ସେହି ଆନ୍ଦୋଳନର ଦରବାରଟି ତାଙ୍କୁ ନିର୍ବାଣ ମଧ୍ୟ କରିଦେଇଥିଲା; ମାତ୍ର ସିଏ ତଥାପି ତା' ଭିତରେ କୌଣସି ନୂତନ ବାଟ କାଢ଼ିବାର ଉଦ୍‌ବୋଧନ ଦେଇ ନ ଥିଲେ । ଭିତରେ ହୁଏତ କ୍ରମେ ଗୁରୁଷିବାକୁ ଆରମ୍ଭ କଲେ, ଆପଣା ଉପରେ ରାଗିବାକୁ ଆରମ୍ଭ କଲେ । ମଣିଷ ଘରକୁ ଗୁରୁସିଲେ ତାଣ୍ଡର ଅନ୍ୟ ଅନେକ କଥା ତାକୁ ସତେ ଅବା ଭାରି ମେନାଇବା ପରି ମନେହୋଇଥାଏ । ମାତ୍ର ତାଦ୍ୱାରା ଅସଲ ଝଟପଟଗୁଡ଼ାକ ଅଧିକ ବଢ଼ିବାରେ ହିଁ ଲାଗିଥାଏ ।

ଏକଦା ତେଲେଙ୍ଗାନାରେ ଯେଉଁ ଅତୃପ୍ତିଗୁଡ଼ାକ କେତେକ ମଣିଷଙ୍କୁ ସଶସ୍ତ୍ର ହିଂସାର ମାର୍ଗରେ ବାହାର କରିଆଣିଥିଲା. ତାହାର ଏକ ପ୍ରତିକ୍ରିୟା ସ୍ୱରୂପ ଆଚାର୍ଯ୍ୟ ବିନୋବା ଭୂଦାନ ଓ ଭୂମିଦାନର ବିକଳ୍ପଟିକୁ ଦେଶ ଆଗରେ ଆଣି ଥୋଇଥିଲେ । କଥାରେ ଯାହାକହୁ କୁହାଯାଇଥାଉ ପଛକେ ସେହି ବିକଳ୍ପଟିକୁ କ୍ରମଶଃ ଶୀତଳ କରି ରଖିଦିଆଗଲା । ଆଚାର୍ଯ୍ୟମାନେ ସବାଆଗ ଆଚାର୍ଯ୍ୟ ଓ ତା' ପରେ ଯାଇ ବିପ୍ଳବୀ ବୋଲି ପରିଚିତ ହୋଇ ରହିବାକୁ ମନ କଲେ । ତାହାର ପ୍ରତିକ୍ରିୟା ସ୍ୱରୂପ ଭାରତରେ ନକ୍ସାଲବାଡ଼ି ଆନ୍ଦୋଳନର ଆବିର୍ଭାବ ହେଲା । ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ ଓଡ଼ିଶାରେ ତଥା ଓଡ଼ିଶା ବାହାରେ ସେହି ଆନ୍ଦୋଳନଟି ସହିତ ପୂର୍ଣ୍ଣ ସହାନୁଭୂତିଶୀଳ ହୋଇ ରହିଥିଲେ । ଆପଣା ଭିତରେ ସତେ ଅବା କେଉଁ ନୈରାଶ୍ୟଜନିତ ଆତ୍ମକ୍ରୋଧର କ୍ଷତଗୁଡ଼ାକୁ କ୍ଷତିପୂରଣ ସ୍ୱରୂପ ଅନ୍ତତଃ ଚିନ୍ତାରାଜ୍ୟରେ କିଛି ଖୋରାକ ଯୋଗାଇ ଦେବାକୁ ସେ ହୁଏତ ସେହିପରି ଏକ ପ୍ରବୃତ୍ତି ପ୍ରକାଶ କରିଥିଲେ । ଏହି ପର୍ଯ୍ୟାୟରେ ସେ ଗ୍ରନ୍ଥମାଧ୍ୟମରେ ଡାନିଏଲ୍ ବୋଲ୍‌ଡ, ଆଇଭାନ୍ ଇଲିଚ, ପାଉଲେ ଫ୍ରିଅରେ, ଫ୍ରାନ୍‌ଜ ଫ୍ୟାନନ୍ ପ୍ରଭୃତି ବ୍ୟକ୍ତିମାନଙ୍କର ସମ୍ପର୍କରେ ଆସିଥିଲେ । ଏମାନେ ସମସ୍ତେ ଜଣେ ଜଣେ ସକ୍ରିୟ ପରିବର୍ତ୍ତନବାଦୀ ହିସାବରେ ପୃଥିବୀସାରା ଜଣେ ଜଣେ ପରମ୍ପରାବିରୋଧୀ ଅନ୍ୟମାର୍ଗୀ ବୋଲି ପରିଚିତ ହୋଇପାରିଥିଲେ । ତାଙ୍କର ଏହି ପର୍ଯ୍ୟାୟରେ ଆଉ ଏକ ପଛଧାଡ଼ିରେ ଚେ ଗୁଏଭାରା, ପଲ୍ ଗୁଡ଼୍‌ମାନ୍ ଓ ହେର୍‌ବର୍ଟ୍ ମାରକ୍ୟୁସ୍ ପ୍ରଭୃତି ଅନୁପ୍ରେରକମାନେ ରହିଥିଲେ । ଏହିମାନଙ୍କର ପ୍ରେରଣାରେ ସପ୍ତମ-ଦଶକର ଶେଷ ଭାଗରେ ଇଉରୋପରେ ଏକ ବାମପନ୍ଥୀ ଛାତ୍ର ଆନ୍ଦୋଳନ ମଧ୍ୟ ସକ୍ରିୟ ହୋଇ ଉଠିଥିଲା । ସେତେବେଳେ ଶ୍ରୀଯୁକ୍ତ ଚୌଧୁରୀ ଓଡ଼ିଶାରେ ତରୁଣମାନଙ୍କଠାରୁ ମଧ୍ୟ ଅଧିକ ଉତ୍ସାହ ଦେଖାଇ ସେହି ବ୍ୟକ୍ତିମାନଙ୍କର କଥା କହୁଥିଲେ । ନିଜେ ନକ୍‌ସାଲପନ୍ଥୀ ହେବା ଲାଗି କିମ୍ବା ସକ୍ରିୟ ଭାବରେ ଉପରେ ନାମିତ ବ୍ୟକ୍ତିମାନଙ୍କର ମାର୍ଗରେ ଯିବା ଲାଗି ତାଙ୍କ ଜୀବନରେ ଓ ସିଏ ଆସି ପଡ଼ିଯାଇଥିବା ଜାଲ ଭିତରେ ପ୍ରକୃତରେ ଆଉ କୌଣସି ଅବକାଶ ହିଁ ନ ଥିଲା । ହୁଏତ ପ୍ରକୃତ କଥା ହେଉଛି, ମଣିଷ ଯଦି କ୍ରୋଧୀ ହେବ, ତେବେ ତରୁଣ ବୟସରେ ହିଁ ତାହା ହେବ । ବୃଦ୍ଧ ବୟସରେ ଯେତେ କ୍ରୋଧ କଲେ ମଧ୍ୟ ସେ ତଦ୍ୱାରା ତାରୁଣ୍ୟର ଦର୍ଶନ ମିଳିବ, ସେହି କଥାଟିକୁ ମୋଟେ ନିର୍ଭରଯୋଗ୍ୟ ଭାବରେ କହିହେବ ନାହିଁ । ଆପଣା ଭିତରେ ଅନେକ ନିର୍ଦ୍ଦେଶକୁ ଅସ୍ୱୀକାର କରି ହେଉ ହେଉ ଅଉ କ'ଣ ହୋଇଥିଲେ ବୋଲି ଶ୍ରୀଯୁକ୍ତ ଚୌଧୁରୀ ହୁଏତ ମୂଳତଃ ନିଜ ଉପରେ ହିଁ କ୍ରୋଧୀ ହୋଇ ରହିଥିଲେ । ସେ ଯଥାର୍ଥ ମୁହୂର୍ତ୍ତରେ ଯେଉଁସବୁ ଯୁଦ୍ଧକୁ ଲଢ଼ିବା ସକାଶେ ନିଜ ଭିତରୁ ଏକ ଆହ୍ୱାନ ଅନୁଭବ କରୁଥିଲେ, ଅଥଚ ସେଇ ତାଙ୍କରି ଭିତରେ ରହିଥିବା ଏକ ବିରୋଧୀ ଅନ୍ତଃକରଣ ଦ୍ୱାରା ତାଡ଼ିତ ହୋଇ ସେହି ଆହ୍ୱାନର ସମକକ୍ଷ କୌଣସି ଜବାବ ଦେଇପାରୁ ନ ଥିଲେ, ହୁଏତ ସେହି କାରଣରୁ, ଏହିପରି ଭାବରେ ଆତ୍ମନିରୁଦ୍ଧ ହୋଇ ରହିଆସିଥିବା ହେତୁ ଏକ ଅନ୍ତର୍ଗତ କ୍ରୋଧ ମଧ୍ୟ ତାଙ୍କୁ ନିଶ୍ଚିତ ଭାରି ଯନ୍ତ୍ରଣା ଦେଇଆସିଥିଲା ଏବଂ ତାହାହିଁ ତାଙ୍କର ବୃଦ୍ଧ ବୟସରେ ତାଙ୍କ କଥାଗୁଡ଼ାକର ପରିଚ୍ଛଦ ପିନ୍ଧି ବାହାରକୁ ବାହାରିପଡ଼ିଥିଲା । ହୁଏତ ବାହାରେ କାହାର କିଛି କରିବା ଅପେକ୍ଷା ଅଧିକତର ପରିମାଣରେ ତାଙ୍କୁ ନିଜକୁ ଦଗ୍‌ଧ କରିବାରେ ଲାଗିଥିଲା । ତାହା ପ୍ରକୃତରେ ଏକ ଅତ୍ୟନ୍ତ ଦୁର୍ବହ ଜୀବନ ହୋଇଥିବ । ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀଙ୍କର ବଡ଼ଭାଇ ଓଡ଼ିଶାର ଜଣେ ଉଚ୍ଚ ଓ ଉଗ୍ର ଗାନ୍ଧୀବାଦୀ ଥିଲେ । ଆପଣାର ତରୁଣ ଜୀବନର ସାମ୍ୟବାଦୀ ଅନୁରାଗଗୁଡ଼ିକୁ ସାଙ୍ଗରେ ନେଇ ଗୋଟିଏ କୁଟୁମ୍ବରେ ଜୀବନ ବଞ୍ଚିବା ପାଇଁ ମଧ୍ୟ ନାନା ଅବସରରେ ତାଙ୍କୁ ନିଜ ପାଖରେ ନିଃସଙ୍ଗ ହେଲା ପରି ରହିବାକୁ ପଡ଼ିଥିବ । ରାଜନୀତି ଛାଡ଼ିବା ପରେ ଆପଣାର ସାମ୍ୟବାଦୀ ମୂଳଟି ସହିତ ସଂସ୍କାରବାଦୀ ଗାନ୍ଧୀମାର୍ଗୀମାନଙ୍କର ମେଳଟିକୁ ଏକାଠି ଆଣି ଯୋଡ଼ିବାରେ ମଧ୍ୟ ତାଙ୍କୁ ନିଜକୁ ଅନେକ ଚଞ୍ଚଣା ଦେବାକୁ ପଡ଼ିଥିବ । ପ୍ରଥମ ପର୍ଯ୍ୟାୟଗୁଡ଼ିକର ସେହି ନିଃସଙ୍ଗତା ଓ ସେହି ଆତ୍ମପ୍ରବଞ୍ଚନା କ'ଣ ଶେଷ ଚରଣରେ ତାଙ୍କୁ ଆପଣା ଉପରେ ଏପରି କ୍ରୋଧୀ କରିଦେଇଥିଲା କି ? ଏବଂ ଭିତରର ସେହି ଆତ୍ମଭର୍ତ୍ସନାଜନିତ କ୍ରୋଧ

ସବାଶେଷରେ ତାଙ୍କୁ ନିଜର ଅନ୍ତରଙ୍ଗଗୁଡ଼ିକର ନିବିଡ଼ କ୍ଷେତ୍ରରେ ପ୍ରଧାନତଃ ଏକ ନକାରାତ୍ମକ ଓ ଉପେକ୍ଷାପ୍ରଧାନ ଅସ୍ୱୀକୃତାର ଶିକାର କରି ରଖିଲା କି ?

ଓଡ଼ିଶାରେ ରାଜନୈତିକ ନେତୃତ୍ୱର କ୍ଷେତ୍ରରେ ସ୍ୱାଧୀନତା ପରେ ବିଭିନ୍ନ ବ୍ୟକ୍ତିମାନଙ୍କର ମାଧ୍ୟମରେ ଓଡ଼ିଶାକୁ ଯେଉଁ ଅଧୋଗମନ ଭୋଗିବାକୁ ହୋଇଛି, ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀଙ୍କର ମଧ୍ୟ ସେଥିରେ ଏକ ଭାଗ ଅବଶ୍ୟ ରହିଛି । ସେକ୍‌ସ୍‌ପିଅରଙ୍କର ହାମ୍‌ଲେଟ୍ ନାଟକଟିର ଆରମ୍ଭରୁ ହିଁ କେତେ କ'ଣ ସାଧି କରିବ ବୋଲି ବାହାରିଥିଲା । ଏକ ଦାର୍ଶନିକଙ୍କସାର ଛଳରେ ସିଏ ଅସଲ କାର୍ଯ୍ୟ ସାଧନର ମୁହୂର୍ତ୍ତଗୁଡ଼ିକୁ କେଡ଼େ ଚମତ୍କାର ଭାବରେ ନାଟକର ଶେଷ ପର୍ଯ୍ୟନ୍ତ ଗଡ଼ାଇଦେଇ ପାରିଲା । ଆପଣାକୁ କେତେ ନା କେତେ ପ୍ରକାରର ଯୁକ୍ତିରେ ଦଗ୍ଧ କଲା, ସେହିପରି ଦଗ୍ଧ ହୋଇ ଆପଣାର କ୍ରିୟାତ୍ମିକା ଶକ୍ତିଗୁଡ଼ିକୁ ମଧ୍ୟ ଅତ୍ୟନ୍ତ ଶୋଚନୀୟ ଭାବରେ ନିହତ କରି ରଖିଲା । ଓଡ଼ିଶାରେ ଗତ କେତେ ଦଶକର ରାଜନୈତିକ ନେତୃତ୍ୱର ଅଙ୍ଗନ ଭିତରେ ଶ୍ରୀଯୁକ୍ତ ଚୌଧୁରୀଙ୍କର ନିର୍ଦ୍ଦିଷ୍ଟ ସ୍ଥାନଟିକୁ ଠାବ କଲାବେଳେ ଅନେକ ସମୟରେ ହାମ୍‌ଲେଟର ଭୂମିକାଟି ମନେପଡ଼ିଯାଏ । ଏକ ସମର୍ଥ ନେତୃତ୍ୱ ଦେବା ଲାଗି ତାଙ୍କ ଭିତରେ ତାଙ୍କର ସମସାମୟିକମାନଙ୍କର ତୁଳନାରେ ଅନେକ ଅଧିକ ପୁଞ୍ଜି ରହିଥିଲା : ଏକ ପରିଷ୍କାର ବିଚାର ରହିଥିଲା, ଏକ ନିର୍ମଳ ହୃଦୟ ରହିଥିଲା, ନିର୍ମଳ ଜୀବନ ମଧ୍ୟ ରହିଥିଲା । କେଡ଼େ ସ୍ୱାଭାବିକ ତଥା ନିର୍ଦ୍ଦୋଷ ଭାବରେ ସେ ଏକ ସାମନ୍ତବାଦୀ ନେତୃତ୍ୱ ବ୍ୟୂହ ମଝିରେ ରହି ମଧ୍ୟ ତାଙ୍କର ପ୍ରାୟ ସବୁ ସମସାମୟିକ ଅତ୍ୟନ୍ତ ହାସ୍ୟାସ୍ପଦ ଭାବରେ ଶିକାର ହୋଇପଡ଼ିଥିବା ପ୍ରଲୋଭନଗୁଡ଼ିକୁ ଏଡ଼ିଦେଇ ପାରୁଥିଲେ ଏବଂ ଶେଷ ପର୍ଯ୍ୟନ୍ତ ଅଦୂଷିତ ହୋଇ ରହିଥିଲେ । ତଥାପି ଓଡ଼ିଶାର ସକଳ ଆହ୍ୱାନଗୁଡ଼ାକ ତାଙ୍କଠାରୁ ଯେଉଁ ନେତୃତ୍ୱର ପ୍ରତ୍ୟାଶା କରୁଥିଲା, ସେହି ନେତୃତ୍ୱର କ୍ଷେତ୍ରରେ ସିଏ କେଜାଣି କାହିଁକି ଉପେକ୍ଷା ଦେଇ ରହିଗଲେ । ଅଭିଜ୍ଞତାମାନ ବଢ଼ିବା ସଙ୍ଗେ ସଙ୍ଗେ ତାଙ୍କର ବିଚାର ଏବଂ ଅନ୍ତଃସଚେତନତାମାନ ଅଧିକରୁ ଅଧିକ ଦୃଷ୍ଟିସମ୍ପନ୍ନ ଏବଂ ଉଜ୍ଜ୍ୱଳ ହେବାରେ ଲାଗିଥିଲା । ବିଶେଷତଃ, ଗତ ପ୍ରାୟ ଦୁଇ ତିନି ଦଶକ ମଧ୍ୟରେ ମନୁଷ୍ୟ ଏବଂ ତା'ର ଭବିଷ୍ୟକୁ ଭିତ୍ତି କରି ଏହି ପୃଥିବୀରେ ଯେଉଁସବୁ ବିକଳ୍ପ ଏବଂ ନୂତନ ଆଲୋଚନାର ଆଲୋଡ଼ନ ସୃଷ୍ଟି ହୋଇଛି, ସେଗୁଡ଼ିକ ବିଷୟରେ ଆପଣାକୁ ଓ୍ୱାକିବ୍‌ହାଲ୍ ରଖିବାରେ ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ କେବେ ଆଉ କାହାଠାରୁ ପଛରେ ରହିନାହାନ୍ତି । ମାତ୍ର ତାଙ୍କର ସମସାମୟିକ ଅନେକ ଅଯୋଗ୍ୟଙ୍କର ତୁଳନାରେ ମଧ୍ୟ ନେତୃତ୍ୱ ଦେବାର କ୍ଷେତ୍ରରେ, ଆଗ ବାଟ ଭାଲି ଅନ୍ୟମାନଙ୍କୁ ପରିଚାଳିତ କରିନେବାର କ୍ଷେତ୍ରରେ ସିଏ ତାଙ୍କ ଜୀବନରେ ବାରବାର ଅନିଚ୍ଛୁକ ହୋଇ ରହିଯାଇଛନ୍ତି । ଅଯୋଗ୍ୟମାନେ ସତେ ଅବା ଧୁରନ୍ଧର ହୋଇ ରାଜନୀତିର କ୍ଷେତ୍ରରେ କେତେ ମନ କେତେ କପଟ ବାହାଦୁରୀମାନ ଦେଖାଉଥିବା ସମୟରେ ସିଏ ସନ୍ତପ୍ତ ପରି ଦୂରରେ ରହି ସେଗୁଡ଼ିକୁ ଦେଖିଛନ୍ତି; କୁରୁକ୍ଷେତ୍ରରେ ଥାଇ ମଧ୍ୟ କୁରୁକ୍ଷେତ୍ରରେ ପଶିନାହାନ୍ତି । ସିଏ ଯେ ତାଙ୍କର ସହଯୋଦ୍ଧାମାନଙ୍କଠାରୁ ତଥାପି ଭିନ୍ନ, ଅଧିକ ବିଜ୍ଞ ଓ ଅଧିକ ଦୃଷ୍ଟିସମ୍ପନ୍ନ, ମଝିରେ ମଝିରେ ପଦେ ପଦେ କଥା କହି ସେ କେତେଥର ସେ କଥାର ସୂଚନା ଦେଇଛନ୍ତି ଓ ସମ୍ପୃକ୍ତ ସମସ୍ତଙ୍କୁ ଚକିତ କରିଛନ୍ତି । ଅନେକ ସମୟରେ ତାଙ୍କ ନିଜ ପଲଟି ଭିତରେ ରହିଥିବା ବ୍ୟକ୍ତିମାନେ ତାଙ୍କୁ ଉପରେ ସମ୍ମାନ ଦେଖାଇଛନ୍ତି, ତାଙ୍କ ତ୍ୟାଗ ଓ ନିଷ୍ଠାର କେତେ ପ୍ରଶଂସା କରିଛନ୍ତି; ମାତ୍ର ତାଙ୍କୁ ଧୋକା ଦେଇଛନ୍ତି, ତାଙ୍କୁ ପଛକୁ ଟାଣିରଖିବାକୁ କେତେ ଚେଷ୍ଟା କରିଛନ୍ତି; ଏହିପରି ଭାବରେ ହୁଏତ ଏକାଧିକ ସନ୍ଦର୍ଭରେ ଶ୍ରୀଯୁକ୍ତ ଚୌଧୁରୀ ତଥାକଥିତ ବିରୋଧୀ ଦଳ ସହିତ ଅପେକ୍ଷାକୃତ ଅଧିକ ସଖ୍ୟ ଏବଂ ନୈକଟ୍ୟ ଅନୁଭବ କରିଛନ୍ତି । ଜୀବନସାରା ସମ୍ପୃକ୍ତ ସମସ୍ତଙ୍କ ଆଖିରେ ଜଣେ ସଜ୍ଜନ ହୋଇ ରହିଯାଇଛନ୍ତି, ମାତ୍ର ସକ୍ରିୟ ନେତୃତ୍ୱର କ୍ଷେତ୍ରରେ ପ୍ରାୟ କିଛିହେଲେ ସମ୍ଭବ କରିନାହାନ୍ତି । ସମସାମୟିକତାର ଅନେକ ଲଟା ଭିତରେ ବାନ୍ଧିହୋଇ ରହିଛନ୍ତି । ବାନ୍ଧିହୋଇ ରହିବାର ସେହି ଅସହାୟତା ମଝିରେ ତଥାପି ସଜ୍ଜନ ହୋଇ ରହିଛନ୍ତି, ମାତ୍ର ନିଜେ ଲଟାଗୁଡ଼ାକୁ କାଟି ଏବଂ ବାହାରକୁ ବାହାରି ନିଷ୍ପତ୍ତିମୂଳକ ଭାବରେ କୌଣସି ନେତୃତ୍ୱ ଦେଇପାରିନାହାନ୍ତି । ମୁଖ୍ୟମନ୍ତ୍ରୀ ଥିବା ସମୟରେ ସେ ରାଜ୍ୟ ବିଧାନସଭା ପରି ଏକ ଅନୁପଯୁକ୍ତ ସ୍ଥାନରେ "ଅଞ୍ଚଳ ସଭାର ଚେୟାର୍‌ମ୍ୟାନ୍ ନ ହେଲେ ମୋର ଆକାଂକ୍ଷା ଅପୂରଣ ରହିଯିବ," "ଆଇନ୍ ଅଦାଲତରେ ଗରିବ ଲୋକ ନ୍ୟାୟ ପାଉନାହିଁ" ଏବଂ "ହାତରେ ହଳ ନ କଲେ ଜମି ରହିବ ନାହିଁ" ପ୍ରଭୃତି କେତେ କଥା କହିଛନ୍ତି; ମାତ୍ର ଯେଉଁ ସାମାଜିକ ବିପ୍ଳବ ଦ୍ୱାରା ସ୍ୱାଧୀନ ଭାରତରେ ଏସବୁ ସମ୍ଭବ ହୋଇଥାନ୍ତା, ସିଏ ସେଇଟିଠାରୁ ପ୍ରାୟ ଏକ ଦୂରତା ରକ୍ଷା କରି ରହିଯାଇଛନ୍ତି । ଆପଣାର ଶେଷ ଜୀବନରେ ଶ୍ରୀଯୁକ୍ତ ଚୌଧୁରୀ ଏକାଧିକ ସାଧାରଣ ଅବସରମାନଙ୍କରେ ପ୍ରକାଶ୍ୟ ଭାବରେ କହୁଥିଲେ ଯେ, ସେମାନେ ସମାଜ ପାଇଁ କିଛି କରିବାକୁ ଭାବିଥିଲେ । ଏ ଦେଶକୁ ନୂତନ ଭାବରେ ଗଢ଼ିବେ ବୋଲି ଭାବିଥିଲେ; ମାତ୍ର କରିପାରିଲେ ନାହିଁ । ସେଥିପାଇଁ ସେ ନିଜକୁ ଅପରାଧୀ ବୋଲି ଘୋଷଣା ମଧ୍ୟ କରୁଥିଲେ । ଏହା ମଧ୍ୟ

ତାଙ୍କ ସଜ୍ଜନତାର ହିଁ ପରିଚୟ ଦିଏ । ତାଙ୍କର ଶିବିରମାନଙ୍କରେ ବିଭିନ୍ନ ସମୟରେ ଚଳିଆସିଥିବା ଅନ୍ୟମାନେ କଦାପି ଏହା କରିବେ ନାହିଁ । ମାତ୍ର ଅନିଚ୍ଛୁକ ହୋଇ ରହିଥିବ ଏବଂ ସାଧୁତା ରକ୍ଷାକରି ଆମେ କିଛି କରିପାରିଲୁ ନାହିଁ ବୋଲି ପ୍ରାୟ ଏକ ଉତ୍ସାହିତ ମୁଦ୍ରାରେ କହିବାରେ ଲାଗିଥିବ, ରାଜନୀତିକ ଗୁହାଳଗୁଡ଼ାକ୍ ସଫା କରିବାର କ୍ଷେତ୍ରରେ ଏସବୁ କଥା ପ୍ରକୃତରେ କାହାର କେଉଁ କାମରେ ଲାଗେ ?

ଭାରତୀୟ ନେତୃତ୍ୱର ସାଂପ୍ରତିକ ଭୂମି ଉପରେ ଏହି ପରିପ୍ରେକ୍ଷୀରେ ଗୋଟିଏ ବିଡ଼ମ୍ବନା ଅତ୍ୟନ୍ତ କର୍କଶ ଭାବରେ ଯାବତୀୟ ସମୀକ୍ଷଣର ଉଦ୍ୟମକୁ ବାର ବାର ଆଘାତ କରିବାକୁ ଆସୁଥିବା ପରି ମନେହୋଇଥାଏ । ଗତ କେଇ-ଦଶକ ଭିତରେ ଆମ ଦେଶରେ ନେତୃତ୍ୱର ବିଭିନ୍ନ ଆୟତନଗୁଡ଼ିକରେ ଯେଉଁମାନେ ଅମର ନେତା ହୋଇ ଆସିଲେ, ସେମାନେ ସ୍ୱୟଂ କେତେ ପ୍ରକାରେ କେଡ଼େ ବଡ଼ ହୋଇ ପ୍ରତିଷ୍ଠିତ ଏବଂ ପ୍ରଚାରିତ ହୋଇପାରିଲେ, ମାତ୍ର ଦେଶ ଓ ଯେଉଁ ମଣିଷମାନଙ୍କ ପାଇଁ ଏହି ସବୁ ନେତୃତ୍ୱ ସଜ ହୋଇ ଆସିଥିଲା, ସେମାନେ ପ୍ରାୟ ଯେଉଁଠି ସେହିଠାରେ ହିଁ ରହିଗଲେ; ସେମାନଙ୍କୁ ନେତାମାନେ ପଛରେ ଛାଡ଼ିଦେଇ ବାହାରି ଆସିଲେ, ସେମାନେ ପ୍ରତାରିତ ହୋଇ ରହିଗଲେ । କିଏ ମହାପୁରୁଷ ହେଲା, କିଏ ତ୍ୟାଗୀମାନଙ୍କ ଭିତରେ ବୀର ବୋଲାଇଲା, କିଏ କେଶରୀ ହେଲା, ଆହୁରି ଟିକିଏ ତଳକୁ ଯାଇ କହିଲେ, କିଏ କୋଠା ବାଡ଼େଇଲା, କିଏ କୋଟିପତି ହେଲା । ନେତାମାନେ ଏହିପରି ନାନା ଭାବେ ଯଶସ୍ୱୀ ହେଲେ, ଲକ୍ଷଣଯୁକ୍ତ ହୋଇ ରହିଲେ; ଅଥଚ ଦେଶ ଆପଣାର ସେହି ପୁରୁଣା ସମସ୍ୟାଗୁଡ଼ାକର ଲଙ୍କା ଭିତରେ ଗୁରାଇ ହୋଇ ରହିଗଲା, ମଣିଷ ଅଧିକରୁ ଅଧିକ ଅବମାନନା ସହିବାକୁ ବାଧ ହେଲା । ଶିକ୍ଷା ଘରେ ଶନି ପଶିଲା, ମାତ୍ର ଶିକ୍ଷା ଭିତରେ ନେତୃତ୍ୱ ଦେଉଥିବା ତଥାକଥିତ ଶିକ୍ଷାବିତ୍‌ମାନେ ଗୋଟିଏ ଗୋଟିଏ ଛଞ୍ଚାଣ ହୋଇ କେତେ ଉପରେ ଯାଇ ବସିଲେ, ସଫଳତା ଅର୍ଜନ କଲେ । ରାଜନୀତି ଭିତରେ ପଶି କେତେ କିଏ ମନ୍ତ୍ରୀ ହେଲେ, ସର୍ବଭାରତୀୟ ସ୍ତରରେ ହାବିଲଦାର ଓ ସରବରାକାର ହେଲେ, ମାତ୍ର ରାଜନୀତି ଯେଉଁମାନଙ୍କ ପାଇଁ ହେଉଥିଲା, ସେମାନେ ଅଧିକ ଅସହାୟ ହୋଇ ରହିଲେ । ଥୋକେ ସେବା କଲେ, ବିପ୍ଳବ କଥା କହିଲେ, ଯାଉଁଶି ଆସୁଣି ଅମୁକ ହେବ ଓ ସମୁକ ହେବ ବୋଲି କେଡ଼େ ଗର୍ଜନ କରି କହିଲେ—ସେମାନେ ଆପଣାର ଖ୍ୟାତିଘରଗୁଡ଼ାକୁ ତଦ୍ୱାରା କେତେ ଚମତ୍କାର ଭାବରେ ପୂରାଇ କରିପାରିଲେ, ମାତ୍ର ସେବା, ବିପ୍ଳବ ଏବଂ ସ୍ୱପ୍ନଗୁଡ଼ାକ ଫସରଫାଟି ସେମାନଙ୍କର କେତେ ପଛରେ ପଡ଼ିରହିଲା । ଭାରତ-ବର୍ଷର ସାମୂହିକ କ୍ରିୟାଶୀଳତା ଗୁଡ଼ିକର କ୍ଷେତ୍ରରେ ଯେଉଁଠି କି ସଂସ୍କାରଗତ ପରମ୍ପରାବଦ୍ଧତା ଏକାବେଳକେ ଏଠି ଯାବତୀୟ ପ୍ରକ୍ରିୟା ଓ ପ୍ରଚେଷ୍ଟାର ମସ୍ତକୁ କାମୁଡ଼ି କରି ଧରିଛି କେଜାଣି, ଆମର ଏଠି ଘରଗୁଡ଼ାକ ସତ୍ୟାନାଶ ହେବାରେ ଲାଗିଛି ଓ ଘରକୁ ସଜାଡ଼ିବା ଲାଗି ନିଯୁକ୍ତ ହୋଇଥିବା ବା ଆପଣାକୁ ନିଯୁକ୍ତ କରିଥିବା ନେତୃତ୍ୱଗୁଡ଼ାକ ସତେ ଅବା ମୋଟା ମୋଟା ମୂଷା ହୋଇ ଏକାବେଳକେ ତଳରେ ଯାଇ ଆପଣା ଲାଗି ଏକ ସୁଖଭୁବନ ଅଥବା ଯଶୋଭୁବନ ତିଆରି କରି ରହିଯାଉଛନ୍ତି ! ଅନୁଷ୍ଠାନଗୁଡ଼ାକ ଭିତରେ ପଶି ନେତୃତ୍ୱ ଇନ୍ଦ୍ର ହେଉଛି, ଇନ୍ଦ୍ରପଦ ପାଉଛି; କିନ୍ତୁ ସ୍ୱୟଂ ଅନୁଷ୍ଠାନଗୁଡ଼ାକର ଘରେ କୁଆ ଉଡ଼ୁଛନ୍ତି । ଉଚ୍ଚ ଚାକିରିଆମାନେ ଯେମିତି ସରକାରୀ ଅଳିଆର ବିଭିନ୍ନ ବିଭାଗରେ କର୍ତ୍ତା ହୋଇ ପଶି ବର୍ଷକ ପରେ ବର୍ଷ ଅଧିକରୁ ଆହୁରି ଅଧିକ ବେତନ ପାଇ ଉଚ୍ଚରୁ ଆହୁରି ଉଚ୍ଚ ହୋଇ ଉପରକୁ ଉଠି ଯାଉଥାନ୍ତି ଅଥଚ ବିଭାଗଗୁଡ଼ାକ ଗଣ୍ଡଆରୁ ଆହୁରି ଗଣ୍ଡଆ ହେବାରେ ଲାଗିଥାଏ । ଆମ ଦେଶର ନେତୃତ୍ୱଗୁଡ଼ିକର କ୍ଷେତ୍ରରେ ମଧ୍ୟ ପ୍ରାୟ ସେହି କଥା ଘଟିବାରେ ଲାଗିଛି । ହୁଏତ ସେହି କାରଣରୁ ଆମ ଦେଶର ହିସାବ ବହିରେ ବହୁ ସଂଖ୍ୟାରେ ମହାପୁରୁଷମାନେ ରହିଛନ୍ତି । ଏକ ରୂପହୀନ ଦେଶର ଭଙ୍ଗା କାନ୍ଥଗୁଡ଼ାକ ଉପରେ କନ୍ଦର୍ପର ଶୋଭାରେ ଶୋଭା ପାଉଛନ୍ତି; ପଛକୁ ଅନାଇଦେଲେ ରଥୀମାନେ ମାଳ ମାଳ ହୋଇ ଦିଶୁଛନ୍ତି । ମୁଣ୍ଡରେ ଶାଢ଼ୀ ବାନ୍ଧି ଓ ହାତରେ ତାମ୍ରଫଳକ ଧରିବସିଛନ୍ତି । ମାତ୍ର ଦେଶ ଆଗକୁ ଯାଇପାରିବା ସକାଶେ ସତେ ଯେପରି ଗୋଟିଏ ହେଲେ ରଥ ମଧ୍ୟ ପ୍ରକୃତରେ ଚଳନ୍ତା ଅବସ୍ଥାରେ ନାହିଁ ।

ଜଣେ ମଣିଷ ହିସାବରେ ମଣିଷର ସମ୍ମାନପ୍ରତିଷ୍ଠା ଲାଗି ପୂର୍ଣ୍ଣ ଅନମନୀୟତା ସହିତ ସଂଗ୍ରାମ କରି ଏକ ବିକଳ୍ପ ନେତୃତ୍ୱର ଦୃଷ୍ଟାନ୍ତ ଦେଖାଇ ଯାଇଥିବା ଯୁକ୍ତରାଷ୍ଟ୍ର ଆମେରିକାର ଶ୍ରୀଯୁକ୍ତ ମାର୍ଟିନ୍ ଲୁଥର୍ କିଙ୍ଗ୍ ତାଙ୍କର କୌଣସି ଗୋଟିଏ ପୁସ୍ତକରେ ମନ୍ତବ୍ୟ କରିଛନ୍ତି ଯେ, ଆମ ପୃଥିବୀ ଦୁର୍ଜନ ଓ ଦୁଷ୍ଟମାନଙ୍କ ଦ୍ୱାରା ଯେତେ କ୍ଷତିଗ୍ରସ୍ତ ନ ହୋଇଛି, ତଥାକଥିତ ସଜ୍ଜନମାନଙ୍କ ଦ୍ୱାରା ତା'ଠାରୁ ଅନେକ ଅଧିକ ଗୁଣରେ କ୍ଷତିଗ୍ରସ୍ତ ହୋଇଛି । ସଜ୍ଜନମାନେ ସର୍ବୋପରି ସଜ୍ଜନ ହେବାକୁ ହିଁ ଜୀବନର ଧର୍ମ ବୋଲି ଗ୍ରହଣ କରିନେଇଥାନ୍ତି । ସେମାନେ ଦୁର୍ଜନ ହୋଇପଡ଼ିବାର ଭୟରେ ନିଷ୍କ୍ରିୟ ହୋଇ ରହିବାକୁ ହିଁ ବିଜ୍ଞତା ବୋଲି

ବୁଝିଥାନ୍ତି । ଆହ୍ୱାନ ଆସେ, ଆହ୍ୱାନ ଚାଲିଯାଏ; ତଥାପି ସେମାନେ ତାହାକୁ ସ୍ୱୀକାର କରନ୍ତି ନାହିଁ । ଭାରତର ନୀତିଶାସ୍ତ୍ରମାନଙ୍କରେ ଏହିପରି ସଜ୍ଜନ ହୋଇ ରହିବାକୁ ହିଁ ସବୁଠାରୁ ଅଧିକ ଉପଦେଶ ତଥା ପରାମର୍ଶ ଦିଆଯାଇଛି । ହୁଏତ ସେହି କାରଣରୁ ଭାରତୀୟ ପରମ୍ପରାରେ ଗୋଟିଏ ପାଖରୁ ଦେଖିଲେ ଯେଉଁମାନେ ବଡ଼ ବଡ଼ ସଜ୍ଜନଙ୍କ ପରି ଦେଖାଯାଆନ୍ତି, ଆଉ ଗୋଟାଏ ପାଖରୁ ଆଉ ଟିକିଏ ପାଖକୁ ଆସି ଦେଖିଲେ ସେମାନେ ଜଣେ ଜଣେ ଭୀରୁ ପରି ମଧ୍ୟ ଦେଖାଯାଆନ୍ତି । ସେହି ପରମ୍ପରା ଏବେ ମଧ୍ୟ ଆମକୁ ଭାରି ଆସକ୍ତ ଭାବରେ କାମୁଡ଼ି ଧରି ରହିଛି ଏବଂ ତେଣୁ ଏଠାରେ ଅଧିକାଂଶ ସମୟରେ ଶ୍ରଦ୍ଧା ଉପରେ ଉପେକ୍ଷାର ଜୟ ହୋଇଛି, ଏକ ଆତ୍ମକାମୀ ସଜ୍ଜନତାର ହିଁ ସକାରାତ୍ମକ ଜୀବନନିଷ୍ଠା ଉପରେ ବିଜୟ ହୋଇଛି । ଏଠାରେ ଯୋଗୀମାନେ ବୈରାଗୀ ହୋଇ ରହିବାକୁ ହିଁ ଅଧିକ ବାଞ୍ଛନୀୟ ମନେକରିଛନ୍ତି । ଅଗଣିତ ପଣ୍ଡିତମାନଙ୍କୁ ଯେଉଁଠି ସେଇଠି ରହିବାକୁ ଛାଡ଼ିଦେଇ ଆତ୍ମମୋକ୍ଷ-କାମନାର ମନ୍ତ୍ରଗୁଡ଼ିକୁ କେଡ଼େ ନିଶ୍ଚିନ୍ତ ଭାବରେ ଏକାଗ୍ର ଚିତ୍ତରେ ଆବୃତ୍ତି କରିପାରିଛନ୍ତି । ଭାରତୀୟ ସଂସ୍କାର ଭିତରେ ଗୋଟାଏ ତୁଚ୍ଛା ନୈତିକତା ଉପରେ ମାନବିକତାର ବିଜୟ ଘୋଷଣା ହୋଇପାରିନାହିଁ ବୋଲି ସମ୍ଭବତଃ ଏପରି ହୋଇଛି । ଅଧିକାଂଶ ଅନିଚ୍ଛୁକତା ପଛରେ ଯେଡ଼େ ଗମ୍ଭୀରରେ ହେଉ ପଛକେ, ଏକ ଆତ୍ମକାମିତା ଏବଂ ତଜ୍ଜନିତ ଏକ ଭୀରୁତା ଲୁଚି କରି ରହିଥାଏ । ସେହି ଭୀରୁତା କେବଳ ସଜ୍ଜନତାର ଏକ ମୁଖା ଲଗାଇ ହିଁ ସଂସାରକୁ ବାହାରିବା ସର୍ବଦା ଉଚିତ ବୋଲି ବିଚାର କରିଥାଏ । ସଜ୍ଜନମାନେ ଏଠି ସର୍ବଦା ବ୍ରାହ୍ମଣ ହୋଇ ରହିବାକୁ ଇଚ୍ଛା କରୁଥାନ୍ତି । ସର୍ବଦା ଶାସ୍ତ୍ରଗୁଡ଼ାକର ଅଧିକାରୀ ହୋଇ ରହିଥାନ୍ତି ଓ ତେଣୁ କେବେହେଲେ ମଣିଷର ଉଦୟ ହିଁ ମଣିଷମାନଙ୍କ ପାଇଁ ତିଆରି ହୋଇଥିବା ଯାବତୀୟ ବିବେକର ସର୍ବପ୍ରଥମ କାମ୍ୟ ବୋଲି ସତକୁ ସତ ସ୍ୱୀକାର କରିପାରନ୍ତି ନାହିଁ ।

ଅତୀତର ଯାବତୀୟ ସମୀକ୍ଷା ଆମକୁ ପରବର୍ତ୍ତୀ ଭବିଷ୍ୟ ଲାଗି ଏକ ବିକଳ୍ପର ସନ୍ଧାନପଥରେ ସାହାଯ୍ୟ କରିପାରିଲେ ଯାଇ ତାହାକୁ ଏକ ସାର୍ଥକ ସମୀକ୍ଷା ବୋଲି କୁହାଯାଇପାରିବ । ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ ତାଙ୍କର ଜୀବନକାଳ ମଧ୍ୟରେ ଯେତେବେଳେ ଯେଉଁ ସ୍ଥଳରେ ଥିଲେ, ସବୁଠାରେ ସେ ଏକ ସମୁଜ୍ଜ୍ୱଳ ବ୍ୟତିକ୍ରମ ହୋଇ ରହିଥିଲେ । ଆପଣାର ମେଳଗୁଡ଼ିକ ଭିତରେ ସିଏ ଅନ୍ୟମାନଙ୍କର ତୁଳନାରେ ଅନେକ ଆଗରେ ଥିଲେ, ତେଣୁ ନିୟମଗୁଡ଼ାକ ଉପରେ ମୋଟେ ଖାପ ଖାଇ ପାରୁ ନ ଥିଲେ । ରାଜନୀତି ଭିତରେ ଆଦୌ କୌଣସି ବ୍ୟକ୍ତିଗତ କାମନା ନେଇ ପ୍ରବେଶ କରି ନ ଥିଲେ; ଅନ୍ୟମାନଙ୍କର କାନ୍ଧ ଉପରେ ଗୋଡ଼ଦେଇ ସିଏ ସବା ଆଗ ସମସ୍ତଙ୍କ ଆଗକୁ ଚାଲିଯିବେ ବୋଲି କୌଣସି ଦୁର୍ବାସନା ରଖି ନ ଥିଲେ । ସ୍ୱାଧୀନ ଭାରତର ଦୁଷ୍ଟ ଓ ପଥଭ୍ରଷ୍ଟ ରାଜନୀତି ତାଙ୍କୁ କୌଣସି ପ୍ରକାର ଦୂଷିତ କରିପାରି ନ ଥିଲା । ବାଟଟିଏ ଖୋଳି ସିଏ ଯେତେବେଳେ ଯାଇ ଯେଉଁଠି ପହଞ୍ଚୁଥିଲେ, ସେଠାରେ ଭିଡ଼ କରି ରହିଥିବା ଅନ୍ୟମାନେ ସେ ଆଦୌ କୌଣସି ବାଟ ଖୋଳି ସେଠାକୁ ଆସିନାହାନ୍ତି, ଅତଏବ ତାଙ୍କର ସେହି ବିଷୟରେ ଏକ ମୋହଭଙ୍ଗ ହେଉଥିଲା ଓ ସିଏ ସେଠାରୁ ଯଥାଶୀଘ୍ର ବାହାରିଯିବେ ବୋଲି ଛଟପଟ ହେବାକୁ ଆରମ୍ଭ କରୁଥିଲେ । ଜୀବନରେ ଏହିପରି କେତେ ରୁଠ ହେଲେ, କେତେ ଗୋଠ ହେଲେ; ଅସନ୍ତୋଷ—ଯାହା ସେ ହେଉ ବୋଲି ଚାହୁଁଛନ୍ତି, ସେଥିପାଇଁ କିଛି ନ କରିପାରିବାର ଅସନ୍ତୋଷ—ଶେଷରେ ତାଙ୍କୁ କ୍ଷୁବ୍ଧ କରିପକାଇଲା । ମାତ୍ର ସିଏ ନିଜେ ରଜ୍ଜୁଗୁଡ଼ାକୁ କେବେହେଲେ ହାତକୁ ନେଲେ ନାହିଁ, ଏକ ଦୁର୍ଦ୍ଧର୍ଷ ଅନିଚ୍ଛାର ବଶବର୍ତ୍ତୀ ହୋଇ ରହିଲେ, ଆପଣାକୁ ଯଥାର୍ଥ ଭାବରେ ଦେଇ ନ ପାରିବାର ଦହନରେ ଦହିହେଲେ ପଛେ, ମାତ୍ର ନିଜର ସ୍ୱତନ୍ତ୍ର ଗାରଟିକୁ ଟାଣି ଏକ ଅନ୍ୟ ନେତୃତ୍ୱ ମଧ୍ୟ ସମ୍ଭବ ବୋଲି ଦେଖାଇପାରିଲେ ନାହିଁ ।

ଏହି ଶତାବ୍ଦୀର ଆରମ୍ଭରୁ ସେହି ମଧୁସୂଦନ ଓ ଗୋପବନ୍ଧୁଙ୍କଠାରୁ ଆରମ୍ଭ କରି ଆଜି ପର୍ଯ୍ୟନ୍ତ ଯେତେବେଳେ ଓଡ଼ିଶାର ରାଜନୀତିକ ନେତୃତ୍ୱର ଏକ ସମଗ୍ରତର ସମୀକ୍ଷା କରାଯିବ, ସେତେବେଳେ ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ ଏହି କ୍ଷେତ୍ରରେ ସମୀକ୍ଷକମାନଙ୍କ ଲାଗି ହୁଏତ ଅନେକ ବିସ୍ମୟର କାରଣ ହୋଇ ରହିବେ । ସିଏ ଏତେ ଆଗକୁ ଭାବିପାରୁଥିଲେ, ଏତେ ବହୁପ୍ରସ୍ଥଯୁକ୍ତ ଭାବରେ ଭାବିପାରୁଥିଲେ, ଯାହାଙ୍କର ଅବବୋଧଗୁଡ଼ିକ ଏତେ ଅଧିକ ପରିମାଣରେ ଗ୍ରହଣଶୀଳ ହୋଇ ରହିଥିଲା, ଯାହାଙ୍କ ପାଖରେ ଏପରି ଏକ ବିଶାଳ ହୃଦୟ ରହିଥିଲା ଓ ସିଏ ସକଳ ପ୍ରକାରର ଆତ୍ମକାମନାରୁ ଏତେ ଦୂରରେ ରହୁଥିଲେ, ସିଏ ଏପରି ପଛରେ ରହିଗଲେ କାହିଁକି ? ଆହ୍ୱାନଗୁଡ଼ିକ ଆସି ପହଞ୍ଚିବା ବେଳକୁ ସେ ଅନିଚ୍ଛୁକ ହୋଇ କାହିଁକି ଅନ୍ୟତ୍ର ରହିଯାଉଥିଲେ, ସମୀକ୍ଷକମାନେ ବାରବାର ଏହି ପ୍ରଶ୍ନଟିକୁ ପଚାରିବେ ଏବଂ ସେହି ପ୍ରଶ୍ନର ଉତ୍ତରଗୁଡ଼ିକ ଓଡ଼ିଶା ଲାଗି ଏକ ଯଥାର୍ଥତର ନେତୃତ୍ୱର ସନ୍ଧାନରେ ଆମକୁ ଅବଶ୍ୟ ଅଧିକ ଅନ୍ତର୍ଦୃଷ୍ଟି ଆଣି ଯୋଗାଇଦେଇ ପାରିବ ।

---

# ଅତୁଳନୀୟ

## ସୁରେନ୍ଦ୍ରନାଥ ଦ୍ୱିବେଦୀ

ନବକୃଷ୍ଣ ଚୌଧୁରୀ ଥିଲେ ନବକୃଷ୍ଣ ଚୌଧୁରୀ । ଆଉ କାହାରି ସମ ନ ଥିଲେ । କାହାପରି ବୋଲି କହିଦେଲେ ଠିକ୍ ତାଙ୍କ ପରି ବୋଲି କହିହେବ ନାହିଁ । ତାଙ୍କୁ ଜଣେ ବ୍ୟକ୍ତି ହିସାବରେ ଦେଖିଲେ ବା ତାଙ୍କର ସେପରି ମୂଲ୍ୟାୟନ କଲେ ଠିକ୍ ତାଙ୍କ ରୂପଟି ଫୁଟି ବାହାରିବ ନାହିଁ । ସେ ଥିଲେ ବ୍ୟକ୍ତିର ସମଷ୍ଟି, ସମଷ୍ଟିଗତ ଥିଲା ତାଙ୍କ ଜୀବନ; ସମଷ୍ଟି ପରିବେଷ୍ଟିତ ଥିଲା ତାଙ୍କର ପ୍ରିୟ ବାସସ୍ଥଳୀ; ସମଷ୍ଟି ଆଧାରିତ ଥିଲା ତାଙ୍କର ଚିନ୍ତାର ଉତ୍ସ ଓ କର୍ମପ୍ରେରଣା । ସେ ଜଣେ ମହାନ୍ ପୁରୁଷ ! ଏକଥା ଶୁଣିଲେ ନିଜକୁ ଅପମାନିତ ବୋଧ କରୁଥିଲେ । ତାଙ୍କର ଜୀବନ ଓ କର୍ମ ଥିଲା ମହତ୍, ମାତ୍ର ସେ ଥିଲେ ଜଣେ ସାଧାରଣ ବ୍ୟକ୍ତି । ଜଣେ ମହାପୁରୁଷ, ମହାନ୍ ବ୍ୟକ୍ତି ବୋଲି କହିଦେଇ ତାଙ୍କ ନିର୍ଦ୍ଦିଷ୍ଟ କାର୍ଯ୍ୟ ସାଧାରଣ ମଣିଷ ପକ୍ଷରେ ବୁଝିବା ବା କରିବା କଷ୍ଟକର ବୋଲି ଯେଉଁ ପେଖନା କରାଯାଏ, ସେ ଥିଲେ ତାହାର ବିରୋଧୀ—ସାମନ୍ତକାଳୀନ ମଧ୍ୟଯୁଗୀୟ ଶିଷ୍ଟାଚାର ବା ପରମ୍ପରା ଏକ ଆଭିଜାତ୍ୟକ କୁସଂସ୍କାର ବୋଲି ସେ ବିଚାର କରୁଥିଲେ । ସେଭଳି ଆଚରିତ ଭାଷା ଓ ଶାଳୀନତାକୁ କଠୋର କର୍କଶ ଭାବରେ ପ୍ରହାର କରୁଥିଲେ । କାଲି ଭଳି ମନେପଡ଼ୁଛି, ୧୯୩୭ ମସିହା ସେପ୍ଟେମ୍ବର ପହିଲାରେ କଟକ ମ୍ୟୁନିସିପାଲିଟି ପଡ଼ିଆର ଓଡ଼ିଶାର ପ୍ରଥମ ଚାଷୀମେଳାରେ ସମାଜର ଗଣ୍ୟମାନ୍ୟ ତଥାକଥିତ ଶିକ୍ଷିତ ବୁଦ୍ଧିଜୀବୀଙ୍କ ଉପସ୍ଥିତିରେ ସେ ଜମିଦାର ଶ୍ରେଣୀଙ୍କୁ ଯେତେବେଳେ "ଶଳା" ବୋଲି ସମ୍ବୋଧନ କଲେ, କପରି ହେଲା ନାସିକାକୁଞ୍ଚନ; ସମ୍ବାଦପତ୍ରର ମନ୍ତବ୍ୟ ହେଲା—"ଅଶୋଭନୀୟ ଆଚରଣ, ଅମାର୍ଜିତ ଭାଷା" ଇତ୍ୟାଦି । ଏହା ପଢ଼ି ସେ ହୋଇଥିଲେ ଆନନ୍ଦିତ । ଠିକଣା ପ୍ରତିକ୍ରିୟା ହୋଇଛି । କାହା ସହିତ ସଂଘର୍ଷ କରିବାକୁ ପଡ଼ିବ ଏବଂ କିଭଳି ତୁଣ୍ଡବାଣ ପେଷଣ ହୋଇପାରେ, ବୁଝିଲେ ତଥାକଥିତ ସମାଜର ସୁଉଚ୍ଚ ଆସନରେ ଆସୀନ ପ୍ରଜାଶୋଷଣରେ ପୁଷ୍ଟ ଅଧିକାରୀଗଣ ।

୧୯୩୭ ର ନୂତନ ଓଡ଼ିଶାର ପ୍ରଥମ ନିର୍ବାଚନ । ପୂର୍ବ-କଟକ ଅର୍ଥାତ୍ ତିର୍ତ୍ତୋଲ-ଏରସମାରୁ କଂଗ୍ରେସ ପ୍ରାର୍ଥୀ ନବକୃଷ୍ଣ ଚୌଧୁରୀ । ପ୍ରବଳ ପ୍ରତିରୋଧୀ ସରକାରୀ ଓକିଲ ଚିନ୍ତାମଣି ଆଚାର୍ଯ୍ୟ । ସରକାରର ଆଜିକାଲି ପରି ପ୍ରତ୍ୟକ୍ଷ ହସ୍ତକ୍ଷେପ ଓ ସାହାଯ୍ୟ ନ ଥାଏ ନିର୍ବାଚନରେ; ମାତ୍ର ସରକାରୀ ଓକିଲ ହୋଇଥିବାରୁ ତାଙ୍କ ପଟରେ ଥିଲେ ସରକାରୀ କର୍ମଚାରୀ; ଜିଲ୍ଲା ହାକିମଙ୍କ ଅପେକ୍ଷା ଅଧିକ ଭୟ କରୁଥିଲେ ତାଙ୍କୁ । ଆମେ ସାଇକେଲରେ ତିର୍ତ୍ତୋଲରୁ ୧୧ ମାଇଲ ରାସ୍ତା ଅତିକ୍ରମ କରି ଏରସମାରେ ପହଞ୍ଚି ଦେଖୁଁ—ଭୋଟରଙ୍କୁ ଭର୍ତ୍ତି କରାଯାଇଛି ଗୋରୁ ଖୁଆଡ଼ ପରି ଚାରିଆଡ଼େ ବନ୍ଧା ହୋଇଥିବା ଏକ ଯାଗା ଭିତରେ । ମହାପ୍ରସାଦ ଖୁଆଇ ଶପଥ କରାଇ ଗୋଟି ଗୋଟି କରି ଛଡ଼ାଯାଉଛି ଭୋଟରଙ୍କୁ ସିଧା ପୋଲିଙ୍ଗ୍ ବୁଥ୍‌କୁ । ଆମ ଶିବିର ଖାଲି—ଲୋକଙ୍କୁ ଆଡ଼େଇ ଆଣି ତାହାରି ଭିତରେ ପୁରାଇ ଦିଆଯାଉଛି । ଚିନ୍ତାମଣି ଆଚାର୍ଯ୍ୟ ଦୂରରେ ଛିଡ଼ା ହୋଇଥିଲେ ଯମ ଦେବତା ପରି । ଲୋକଙ୍କ ଭିତରେ ଏକ ଭୀତିର ସଞ୍ଚାର ହୋଇଥିଲା । ଆମକୁ ଦେଖି ଲୋକଙ୍କ ଭିତରେ ବେଶ୍ ଗୋଟାଏ ଚହଳ ପରିଲକ୍ଷିତ ହେଲା । ନବ ବାବୁ କାଳବିଳମ୍ବ ନ କରି ତତ୍‌କ୍ଷଣାତ୍ ଆଚାର୍ଯ୍ୟଙ୍କ ପ୍ରତି ତୀକ୍ଷ୍ଣ ବାଣ ପ୍ରୟୋଗ କଲେ । ଗୋଡ଼ରୁ ଚଟିଜୋତା କାଢ଼ି ତାଙ୍କ ଆଡ଼କୁ ଉଦ୍ଦେଶ୍ୟ କରି ଚିତ୍କାର କଲେ ଏ ଲୋକମାନଙ୍କୁ ଛାଡ଼ିଦିଅ; ନଚେତ୍ ପାଇବ .. । ଆଚାର୍ଯ୍ୟ ସ୍ତମ୍ଭୀଭୂତ; କିଂକର୍ତ୍ତବ୍ୟ ବିମୂଢ଼ ହୋଇପଡ଼ିଲେ; ପାଟିରୁ କଥା ବାହାରିଲା ନାହିଁ । କିନ୍ତୁ ଏହା କାମ କଲା ବିଦ୍ୟୁତ୍ ବେଗରେ । ଲୋକେ ପଘା ଛିଣ୍ଡାଇ ଗୋରୁ ଗୁହାଳରୁ କୁଦାମାରି ବାହାରିଲା ପରି ପଳାଇ ଆସିଲେ, ସିଧା ଧାଇଁଲେ ପୋଲିଙ୍ଗ୍ ବୁଥ୍‌କୁ ।

୧୯୬୬ ରେ ଓଡ଼ିଶାରେ କଂଗ୍ରେସ ସାମ୍ୟବାଦୀ କର୍ମୀସଂଘ ସ୍ଥାପନା ପରେ ପ୍ରଧାନ କାର୍ଯ୍ୟ ହେଲା କୃଷୀ ସଂଗଠନ । ଜମିଦାର ମହାଜନଙ୍କ ଅତ୍ୟାଚାରର ଦମନରୁ ତାଙ୍କର ମୁକ୍ତି । ତାଙ୍କ ମନରେ ସାହସ ଓ ଶ୍ରେଣୀ ଚୈତନ୍ୟ ଜାଗ୍ରତ କରିବା । ପ୍ରଥମ ଥର ଲାଗି ସମଗ୍ର ଓଡ଼ିଶାର କୃଷୀ ସମ୍ମିଳନୀ ହେଲା କଟକ ଜିଲ୍ଲାର ବାଗଲପୁର ଗ୍ରାମରେ । ଏକ ନୂତନ ଆନ୍ଦୋଳନ, ନୂତନ ଉଦ୍‌ବେଗ । ପ୍ରଥମ ପ୍ରସ୍ତାବଟି ନବ ବାବୁ ପ୍ରସ୍ତୁତ କରିଥିଲେ । ତଥାକଥିତ ବିପ୍ଳବୀମାନେ ହସିପାରନ୍ତି; ପରିହାସ କରିପାରନ୍ତି । ପ୍ରସ୍ତାବଟି ହେଲା କୌଣସି କୃଷୀ କୌଣସି ଜମିଦାର ବା ମହାଜନଙ୍କୁ ମୁଣ୍ଡିଆ ମାରିବ ନାହିଁ; ସାଷ୍ଟାଙ୍ଗ ପ୍ରଣିପାତ କରିବ ନାହିଁ । ସିଧା ସଳଖ ଛିଡ଼ା ହୋଇ ଦଣ୍ଡବତ ମାରିବ । ହାତ ଯୋଡ଼ି ନମସ୍କାର; ଯେମିତି ଜଣେ ଅନ୍ୟକୁ କରେ ସମାସ୍କନ୍ଧ ଭାବରେ । ଏଥିରେ ଶ୍ରେଣୀ ସଂଘର୍ଷ ନ ଥିଲା । ମାନବିକ ଅଧିକାର, ଆତ୍ମବୋଧ ଓ ଆତ୍ମବିଶ୍ୱାସ ପ୍ରତିଷ୍ଠାର ବୀଜ ବପନ କରାଗଲା । ଯେଉଁ ଜମିଦାରଙ୍କୁ ଲୋକେ ସାକ୍ଷାତ୍ ଦେବ ଅଂଶ ବୋଲି ମନେକରୁଥିଲେ, ଯାହାଙ୍କ ଆଗରେ ଛତା ଧରି ଯୋତା ପିନ୍ଧି ଯିବା ମନା ଥିଲା, ସେମାନେ ସାହସ ବାନ୍ଧି ଛିଡ଼ା ହୋଇ ଏଭଳି ନମସ୍କାର ଜଣାଇବା କ'ଣ କମ୍ ସାମାଜିକ କ୍ରାନ୍ତି ! ମଧ୍ୟବିତ୍ତ ଶ୍ରେଣୀ ଲୋକେ ଆମକୁ ଦୋଷ ଦେଲେ ଏ ତଳିଆ ଲୋକ ଓ ମୂଲିଆଙ୍କର ମୁହଁ ବଢ଼ିଗଲା । ସବୁ ନାରଖାର ହୋଇଯିବେ—ଅମାନିଆ ହୋଇଯିବ ସଂସାର । ନବ ବାବୁଙ୍କ ମନ୍ତ୍ରୀତ୍ୱ ବେଳେ ଯେତେବେଳେ ଭାଗଚାଷ ଆଇନ ଓ ମଧ୍ୟସ୍ୱତ୍ୱାଧିକାରୀ ଲୋପ ଲାଗି ଆଇନ ହେଲା, ସ୍ୱର୍ଗୀୟ ସ୍ୱାମୀ ବିଚିତ୍ରାନନ୍ଦ ଦାସଙ୍କ ପରି ଉଦାରମନାଙ୍କ ଦେଶପ୍ରେମୀମାନେ ଅନୁଭବ କଲେ ଏହା ଓଡ଼ିଶାର ସଂସ୍କୃତି ଓ ପରମ୍ପରା ଉପରେ ଆକ୍ରମଣ । ଏହି ପରିବାରଂପୁଷ୍ଟ ଭୂମ୍ୟଧିକାରୀମାନେ କିଛି କିଛି ସମ୍ପତ୍ତିର ଅଧିକାରୀ ହୋଇଥିବାରୁ ସଂସ୍କୃତି ପରମ୍ପରା ରକ୍ଷା କରିଛନ୍ତି । ଏଥିରେ ନବ କଲେ କୁଠାରାଘାତ—ଏ ଶ୍ରେଣୀ ଧ୍ୱଂସ ହୋଇଯିବେ । ନବର ପୁଅ ଯଦି ବଞ୍ଚିଥାଆନ୍ତା, ତେବେ ସେ ଏକଥା କରି ନ ଥାଆନ୍ତା । ଏକଥାଗୁଡ଼ିକ ସ୍ୱାମୀଜୀ ନିଜେ ମୋ ଆଗରେ ବଡ଼ ଭାବପ୍ରବଣ ହୋଇ ଐକାନ୍ତିକ ମନରେ ରଖିଥିଲେ । ଏକ ଏକ କ୍ଷୁଦ୍ର କାର୍ଯ୍ୟର ସମାଜର ବିଭିନ୍ନ ଶ୍ରେଣୀ ଭିତରେ କିଭଳି ପ୍ରତିକ୍ରିୟା ଘଟେ, ଏଗୁଡ଼ିକ ତାହାର ନିଦର୍ଶନ ।

ଏଗୁଡ଼ିକ ନବ ବାବୁ କେଉଁଠୁ ଶିଖିଥିଲେ ? ଗାନ୍ଧୀଜୀଙ୍କର ରଚନାତ୍ମକ କାର୍ଯ୍ୟକ୍ରମ ଭିତରେ ତ ଏହା ଲେଖା ନ ଥିଲା । ମାର୍କସ୍ ଲେନିନଙ୍କ କମ୍ୟୁନିଜିମ୍ ଗ୍ରନ୍ଥାବଳୀରେ ତ ଏଭଳି ସୂତ୍ର ମିଳିବ ନାହିଁ । ତେଣୁ ନବ ବାବୁଙ୍କୁ ଗାନ୍ଧୀବାଦୀ, ସମାଜବାଦୀ, ସାମ୍ୟବାଦୀ ବା ସର୍ବୋଦୟବାଦୀ ଗଣ୍ଡିରେ ବାନ୍ଧି ହେବ ନାହିଁ । ସେ ଥିଲେ ଏକ ସମାଜ ବିଜ୍ଞାନୀ, ବୁଝୁଥିଲେ ସାରା ସମାଜରେ ବିଦ୍ରୋହ, ଧ୍ୱଂସ ପରେ ହିଁ ସୃଷ୍ଟି ହୋଇପାରେ, ପରିବର୍ତ୍ତନ ଘଟିପାରେ, ଅନ୍ୟଥା ନୁହେଁ । ତଳିଆ ଲୋକଙ୍କ ଦ୍ୱାରା ଏଭଳି ବିପ୍ଳବ ସମ୍ଭବ । ଏହି ସମସ୍ୟାଗୁଡ଼ିକୁ ସେ ବିଶ୍ୱମାନବିକ ଦୃଷ୍ଟିକୋଣରୁ ବିଚାର କରୁଥିଲେ । ସାରା ଜଗତରେ କେଉଁଠି କିଭଳି ନୂତନ ସାମାଜିକ ବିଦ୍ରୋହର ତତ୍ତ୍ୱ ପ୍ରକାଶ ପାଉଛି ବା ମୁଣ୍ଡ ଟେକୁଛି, ସେ ସମ୍ବନ୍ଧରେ ସମସ୍ତ ଜ୍ଞାନ ସେ ଆହରଣ କରୁଥିଲେ । ତାଙ୍କର ଜ୍ଞାନର ଦ୍ୱାର ଆବଦ୍ଧ ନ ଥିଲା; ଜ୍ଞାନର ପରିସର ଥିଲା ଅସୀମ; ବିଚାର ବିଶ୍ଳେଷଣ ଶକ୍ତି ଥିଲା ଅପାର, ବୁଦ୍ଧି ଥିଲା ତୀକ୍ଷ୍ଣ । ଡକ୍ଟର ସୁଗତ ଦାସଗୁପ୍ତ ଯଥାର୍ଥରେ ଲେଖିଛନ୍ତି—ସର୍ବୋଦୟୀମାନେ ବି ତାଙ୍କର ଗଭୀରତା ଭିତରକୁ ପ୍ରବେଶ କରିପାରି ନାହାନ୍ତି । ମନ ମଧ୍ୟ ଥିଲା ମୁକ୍ତ, ସ୍ୱାଧୀନ ଓ ନିର୍ଭୀକ । ସେଇଥିଲାଗି କଂଗ୍ରେସୀ, ମୁଖ୍ୟମନ୍ତ୍ରୀ, ସର୍ବୋଦୟୀ ବା ଗାନ୍ଧୀବାଦୀ କୁହାହେଉଥିଲେ ସୁଦ୍ଧା ନକ୍ସାଲାଇଟଙ୍କର ବିପ୍ଳବୀ ଭାବନାର ଓ ସାହସିକତାର ପ୍ରକାଶ୍ୟ ପ୍ରଶଂସା କରିବାକୁ ସେ କୁଣ୍ଠାବୋଧ କରୁ ନ ଥିଲେ । ସେଭଳି ଲୋକେ ବି ତାଙ୍କ ପାଖରେ ଆସି ପହଞ୍ଚୁଥିଲେ, କଥାବାର୍ତ୍ତା କରି ପ୍ରେରଣା ଲାଭ କରୁଥିଲେ । ଦିନକୁ ଦିନ ଶରୀରର କ୍ଷୀଣତା ଓ ଜରା ବୃଦ୍ଧି ସଙ୍ଗେ ସଙ୍ଗେ ତାଙ୍କ ମନର ବ୍ୟାକୁଳତା ଓ ଅଧୀରତା ତାଙ୍କୁ ବ୍ୟସ୍ତ କରୁଥିଲା; ଅଥୟ ହେଉଥିଲେ । ଏହି 'ଶ୍ରଦ୍ଧାଞ୍ଜଳି'ରେ ପ୍ରକାଶିତ କେତେକ ପତ୍ରରୁ ତାହାର ସୂଚନା ମିଳେ । ସ୍ୱବିରୋଧ ବୋଲି ମନେ ହେଉଥିଲେ ସୁଦ୍ଧା ଯାହା ତାଙ୍କ ଜୀବନର ଆଦର୍ଶର ନିକଟତମ ବୋଲି ସେ ଅନୁଭବ କରୁଥିଲେ, ତା'ର ତାରିଫ କରୁଥିଲେ । କୌଣସି ବିଦ୍ରୋହ ବା କ୍ରାନ୍ତିର ମାପକାଠି ହେଲା ଏହା କେତେଦୂର ମଣିଷ ମନରେ ପ୍ରଚଳିତ ଉପରମୁଣ୍ଡରୁ କାବୁ କରି ରଖିଥିବା ଶକ୍ତିର ପ୍ରତିରୋଧ କରିପାରୁଛି । କି ଭଳି କାର୍ଯ୍ୟରେ ପ୍ରତିରୋଧ ଶକ୍ତି ବଢ଼ୁଛି । ସ୍ୱା' ବୋଲି ସେ ହିଂସା ପନ୍ଥାରେ ବିଶ୍ୱାସ କରୁଥିଲେ ବୋଲି କହିବା ଭୁଲ୍ ହେବ । ସେ ଓ ମାଳତୀ ଦେବୀ ଦୁହେଁ ଅହିଂସା ଓ ଶାନ୍ତିପୂର୍ଣ୍ଣ ପଥର ପଥିକ । ମାତ୍ର ସେଭଳି ଶାନ୍ତିର ବାଟ ଯଦି ମୁକ୍ତି କାମନା ରୋକେ, ରୁଦ୍ଧ କରେ, ତେବେ ତା ବିରୁଦ୍ଧରେ ସ୍ୱର ଉତ୍ତୋଳନକୁ ଦୁହେଁଯାକ ଜୀବନର ଧର୍ମ ବୋଲି ବିଚାର କରୁଥିଲେ । ଦୁହିଙ୍କ ଉପରେ ମାର୍କସ୍, ଗାନ୍ଧୀ ଓ ରବୀନ୍ଦ୍ରନାଥଙ୍କର ପ୍ରଭାବ ପଡ଼ିଥିଲା । ଏଭଳି ଧର୍ମରେ ପୂର୍ଣ୍ଣରୂପେ ଦୀକ୍ଷିତ ହୋଇଥିବାରୁ ଦୁହେଁଯାକ ଜୀବନ ବ୍ୟାପୀ ସାଥି ବନ୍ଧୁ ହୋଇ ରହିଲେ; ଅପାର ପ୍ରୀତି ଓ ସ୍ନେହବନ୍ଧନ ଦୃଢ଼ ହେଲା । ସକଳ ତ୍ୟାଗ, ଦୁଃଖ କଷ୍ଟ ଆନନ୍ଦରେ ସହ୍ୟ କଲେ । ଦୁଃଖୀ ଜୀବନ ଦୁହେଁ ଆଦରି ନେଇଥିଲେ । ସୁଯୋଗ ରହିଥିଲା ଏକ ସୁଖୀ

ସ୍ୱଚ୍ଛନ୍ଦ ଜୀବନ ଯାପନ ନିମନ୍ତେ; ମାତ୍ର ତାହା ତାଙ୍କ ଦୁହିଙ୍କ ଜୀବନର ସୁଖର ବାଟ ବୋଲି ସେ ଭାବୁ ନ ଥିଲେ । ବିବାହ ବନ୍ଧନ ଅପେକ୍ଷା ମନର ମିଳନ ଦୁହିଙ୍କୁ ଅଭେଦ ଆତ୍ମା ବା ପ୍ରାଣ ଭାବରେ ବାନ୍ଧି ରଖିପାରିଲା । ଦୁହେଁ ଥିଲେ ପରସ୍ପରର ଶକ୍ତି ଓ ପ୍ରେରଣା-ଦାୟକ—ଏକ ବିନା ଅନ୍ୟର ସତେ କି ସତ୍ତା ନାହିଁ—ଏ ଦୁହିଙ୍କର ମିଳନ ନ ହୋଇଥିଲେ ନବ ବାବୁ ବାପି ହୋଇ ପାରି ନ ଥାନ୍ତେ କିମ୍ବା ମାଳତୀ ଦେବୀ ନୂଆ ବୋଲି ପରିଚିତ ହୋଇ ନ ଥାଆନ୍ତେ । ଦାମ୍ପତ୍ୟ ଜୀବନର ଏପରି ଏକ ଅଭିବ୍ୟକ୍ତି ତାଙ୍କୁ ସମାଜ ଆଗରେ ବଡ଼ କରିଛି ଏବଂ ସେ ମହାନତାର ଏକ ଉଜ୍ଜ୍ୱଳ ଦୃଷ୍ଟାନ୍ତ ହୋଇ ଉଭା ହୋଇପାରିଛନ୍ତି । ଭାରତର ସାମାଜିକ ଜୀବନରେ ଏପରି ଯୋଡ଼ି ବିରଳ ନାହିଁ—କହିଲେ ଚଳେ ।

ଦେଶରେ ବହୁ ଅସବର୍ଣ୍ଣ, ଭିନ୍ନ ଜାତି ଓ ଧର୍ମାବଲମ୍ବୀଙ୍କ ଭିତରେ ବିବାହ ହୋଇଛି । ଉଭୟ ଦମ୍ପତି ବାହାରିଛନ୍ତି । ମାତ୍ର ସେ କାଳରେ ଏକ ଆଭିଜାତ୍ୟର ପରମ୍ପରାକୁ ଭାଙ୍ଗି ବିବାହ କରିବା ଏକ ସାହସିକ ପଦକ୍ଷେପ । ଯେଉଁମାନେ ସେତେବେଳେ ନାକ ଟେକୁଥିଲେ, ପାଣି ଛୁଉଁ ନ ଥିଲେ, ସେମାନେ ଅତି ଆଦରରେ ସ୍ନେହ ଶ୍ରଦ୍ଧାକୋଳରେ ବନ୍ଧା ହୋଇଗଲେ । 'ବସୁଧୈବ କୁଟୁମ୍ବକମ୍'ର ଉଚ୍ଚ ଭାବନାରେ ଉଦ୍‌ବୁଦ୍ଧ ହେଲେ । ନିଜ ଆଚରଣରେ ଦୁଃଖୀରଙ୍କୀ, ଧନୀମାନୀ ସକଳ ପ୍ରତି ତାଙ୍କ ପ୍ରାଣରେ ଥିଲା ଶ୍ରଦ୍ଧା । ଲୋକଗତ ଥିଲା ତାଙ୍କର ପ୍ରାଣ; ଓଡ଼ିଶାରେ ଏଭଳି ଉଭୟ ଧନୀ-ନିର୍ଦ୍ଧନ ଦୁଇ ଶ୍ରେଣୀର ସମ୍ମାନ ଓ ବିଶ୍ୱାସ କେତେ ଲୋକ ପାଇପାରିଛନ୍ତି ! ତାଙ୍କର ଏକାନ୍ତ ଅନୁରକ୍ତି ଏବଂ ଏକମାତ୍ର ଆନୁଗତ୍ୟ ଥିଲା ଲୋକଙ୍କ ପ୍ରତି, ଦେଶ ପ୍ରତି । ମୁଖ୍ୟମନ୍ତ୍ରୀ ହୁଅନ୍ତୁ କି ସର୍ବସେବା ସଂଘର ଅଧ୍ୟକ୍ଷ ରୂପେ ବସନ୍ତୁ, ଉଚ୍ଚପଦବୀ ତାଙ୍କୁ ମୋହଗ୍ରସ୍ତ କରିପାରି ନ ଥିଲା । ସେଥିଲାଗି ମୁଖ୍ୟମନ୍ତ୍ରୀ ପଦକୁ ଫିଙ୍ଗିଦେବା ପାଇଁ ତାଙ୍କୁ ମୁହୂର୍ତ୍ତେ ହେଲେ ଲାଗିଲା ନାହିଁ ।

ଜନପ୍ରାଣରେ ଚେତନା ଜାତ କରିବା ଥିଲା ତାଙ୍କର ଅସଲ ଲକ୍ଷ୍ୟ । ଏ ଚେତନା କିଭଳି ହେବା ଉଚିତ । ଏ ଚେତନା କ'ଣ ପ୍ରଚଳିତ ବ୍ୟବସ୍ଥା ସହ ମିଶିଗଲେ ହୋଇପାରିବ ! ଏ ଚେତନା ପୁସ୍ତକପାଠରେ ହୋଇପାରିନା ନାହିଁ । ସେ ବହୁ ପୁସ୍ତକ ଅଧ୍ୟୟନ କରିଥିଲେ । ତାଙ୍କ ଅପେକ୍ଷା ଆହୁରି ବେଶି ପୁସ୍ତକଗତ ଗଚ୍ଛିତ ଜ୍ଞାନ ହୁଏତ ଦେଶରେ ବହୁ ଲୋକ ପାଇପାରିଛନ୍ତି । ତାହା ତାଙ୍କୁ ପଣ୍ଡିତ ଓ ବିଦ୍ୱାନ୍ ଆଖ୍ୟା ଦେଇଛି । ବୌଦ୍ଧିକ ଚେତନା ସୃଷ୍ଟି କରାଇ ନାହିଁ । ବୌଦ୍ଧିକ ଜ୍ଞାନଲାଭରେ ମନୁଷ୍ୟତାର ବିକାଶ ହୁଏ, ମଣିଷର ଢଙ୍ଗ ରଙ୍ଗ, ଆଚରଣ କାର୍ଯ୍ୟରେ ତାହା ପ୍ରତିଫଳିତ ହୁଏ; କଥନୀ ଓ କରଣୀ ଭିତରେ ସାମଞ୍ଜସ୍ୟ ରହେ । ନବ ବାବୁ ଏ କଥାଟି ଉତ୍ତମରୂପେ ବୁଝିଥିଲେ; ନିଜର ବ୍ୟକ୍ତିଗତ ଜୀବନ ଓ ଆଚରଣରେ ଏହା ପାଳନ କରିଥିଲେ । ମାତ୍ର ସେଥିଲାଗି ସେ ନିଜର ଢୁଙ୍ଗୁରି ପିଟୁ ନ ଥିଲେ କିମ୍ବା ଆଉ କାହାରିକି ପିଟିବା ନିମନ୍ତେ ପ୍ରଶ୍ରୟ ଦେଉ ନ ଥିଲେ ।

ଏପରି ଗୁଣଗୁଡ଼ିକ ରହିଥିବା ବ୍ୟକ୍ତିର ମନ ଓ କାର୍ଯ୍ୟ କେବେ ହେଁ ଗୋଟିଏ ସ୍ଥାନରେ ବନ୍ଧାହୋଇ ରହିନ୍ତା ନାହିଁ । ନୂତନ ଉପାୟ ଉଦ୍ଭାବନା କରି ଜନସମୁଦାୟ ମଧ୍ୟରେ ନବୀନ ଚେତନା ସୃଷ୍ଟି କରିବା ସମ୍ପୂର୍ଣ୍ଣ ଦୃଷ୍ଟିକୋଣଟି କାର୍ଯ୍ୟକାରୀ ସେ କରାଇପାରିଲେ ନାହିଁ; କିନ୍ତୁ ମନ ଥିଲା ସେଇଠି—ବିଦ୍ରୋହରେ, ସଂଘର୍ଷରେ ନୂତନ ଉପାୟ ଆବିଷ୍କାର କରିବାରେ । ସେହି ଅନୁସନ୍ଧିତ୍ସୁ ମନ ଭିତରୁ ଉଠିଲା—ଦେଶର ସ୍ୱାଧୀନତା ଆଣିବା ନିମନ୍ତେ କେବଳ ଲୁଣମରା ବା ଟିକସ ବନ୍ଦ ଆନ୍ଦୋଳନ ଯଥେଷ୍ଟ ନୁହେଁ । ଏହାକୁ ଲୋକଙ୍କ ଭିତରକୁ ଟାଣିନେବାକୁ ହେବ ଏବଂ ଲୋକଙ୍କୁ ତହିଁଭିତରକୁ ଟାଣିଆଣିବାକୁ ହେବ । ଏଇଟା ସମ୍ଭବ ନୁହେଁ, କଂଗ୍ରେସ ପରିଚାଳିତ ବାରଭାଇ ଆଖଡ଼ାରେ । ଏହା କରିବାଲାଗି ସଙ୍କଳ୍ପବଦ୍ଧ କର୍ମୀ ଓ ସଂଘ ଲୋଡ଼ା । ଭାରତରେ କେଉଁଠି ଆରମ୍ଭ ହେବା ଆଗରୁ ଓଡ଼ିଶାରେ ଜନ୍ମ ଲଭିଲା ଓଡ଼ିଶା କଂଗ୍ରେସ ସାମ୍ୟବାଦୀ କର୍ମୀସଂଘ । ସାମାଜିକ ଅର୍ଥନୈତିକ ବିପ୍ଳବ ଆଣିବା ହେବ ତାଙ୍କର କାର୍ଯ୍ୟ । ସମାଜବାଦୀ କର୍ମୀସଂଘ ଶପଥ ନେଲେ—ସମ୍ପତ୍ତି ମୋହ ରଖିବେ ନାହିଁ । ବ୍ୟକ୍ତିଗତ ସମ୍ପତ୍ତି ବଢ଼ାଇବା ଲାଗି କାର୍ଯ୍ୟ କରିବେ ନାହିଁ । ଏକଥାଟି ବହୁ ସଭ୍ୟ ମାନିଲେ । ସେ ନିଜେ ଆଦର୍ଶ ଦେଖାଇଲେ ନିଜର କୃଷି ଫାର୍ମ କର୍ମୀ ସଂଘ ହାତରେ ସମର୍ପି ଦେଇ, ମାଳତୀ ଦେବୀ ଦାନ କରିଦେଲେ ତାଙ୍କର ସମସ୍ତ ଗହଣା । ସେହି ଧନରେ ବାହାରିଲା କାଗଜ 'ସାରଥି' । ଶ୍ରେଣୀ-ସଂଘର୍ଷର ବାର୍ତ୍ତା ବହି ପ୍ରଥମରେ ଓଡ଼ିଆ ଭାଷାରେ ଏକ ପତ୍ରିକା ପ୍ରକାଶ ପାଇଲା । ଏକ ନୂତନ ଆଲୋଡ଼ନ ସୃଷ୍ଟି ହେଲା । ନବ ବାବୁଙ୍କ ଘରକଡ଼େ ଠୁଳ ହୋଇଗଲେ ଓଡ଼ିଶାର କେତେ ଶିକ୍ଷିତ ଯୁବକ, ପରୀକ୍ଷିତ କର୍ମୀ; ତାଙ୍କ ମୁହିଁକୁ ଲୋକେ ଅନାଇଲେ । ସମାଜବାଦୀ କୃଷକ ଆନ୍ଦୋଳନ ଓ ଗଡ଼ଜାତ ପ୍ରଜା ଆନ୍ଦୋଳନ ଚହଳ ପକାଇଦେଲା । ବହୁ ସାଧାରଣ ଲୋକ ଜାତୀୟ ଆନ୍ଦୋଳନ ଭିତରକୁ

ଆସିଲେ; ଜନସଂଗ୍ରାମରେ ପ୍ରତ୍ୟକ୍ଷ ଭାଗ ନେଲେ । କଂଗ୍ରେସ ବଳ ପାଇଲା ଏବଂ ସୋସାଲିଷ୍ଟ ଆନ୍ଦୋଳନକୁ ବହୁଭାବରେ ଦବାଇ ଦେବାର ସୁଚିନ୍ତିତ ଉଦ୍ୟମ ଚାଲିଲା । କଂଗ୍ରେସର ପ୍ରଥମ ମନ୍ତ୍ରୀତ୍ୱକାଳରେ ତୀବ୍ର ଆକାର ଧାରଣ କଲା ସୋସଲିଷ୍ଟ-କଂଗ୍ରେସୀଙ୍କ ଭିତରେ ବିବାଦ । ସମସ୍ତେ ଥିଲେ କଂଗ୍ରେସ ସୋସଲିଷ୍ଟ, ସେ ବି ରହିଲେ । ମାତ୍ର ଏତେବେଳେ କଂଗ୍ରେସ ଆକ୍ରମଣରୁ ରକ୍ଷାକରି ନିଜ ଦଳକୁ ଦୃଢ଼ କରିବା ଭଳି ଯେଉଁ କାର୍ଯ୍ୟମାନ ଅନ୍ୟ ପ୍ରଦେଶରେ ହେଲା, ଏଠାରେ ହେଲା ନାହିଁ । ୧୯୪୦ ରେ ସେ ସେକ୍ରେଟେରୀ ରହିଲେ ନାହିଁ । ତାଙ୍କ ପରାମର୍ଶରେ ଜୟପ୍ରକାଶ ଆସି ମୋ ଉପରେ ଭାର ଦେଲେ । ପାର୍ଟି ଭିତରେ କମ୍ୟୁନିଷ୍ଟଙ୍କ ସହିତ ତୀବ୍ର ବିବାଦ ଚାଲିଥାଏ । ତାଙ୍କର ହୁଏତ ଆଗ୍ରହ ସେତେ ନ ଥିଲା, ସେଭଳି କାମରେ ଲିପ୍ତ ହେବା ନିମନ୍ତେ କିମ୍ବା ଯୁଦ୍ଧ ଆଗମନ ହେତୁ ଯେଉଁ ବିରାଟ ଝଡ଼ର ସମ୍ମୁଖୀନ ହେବାକୁ ପଡ଼ିଲା, ସେଥିଲାଗି କଂଗ୍ରେସ ସଙ୍ଗଠନକୁ ବଳଶାଳୀ କରିବା ତାଙ୍କର ପ୍ରଧାନ କର୍ତ୍ତବ୍ୟ ବୋଲି ବିଚାରିଲେ । ଅବଶ୍ୟ ଏ କେତେଟି ବର୍ଷ କି କଂଗ୍ରେସ କି ସୋସାଲିଷ୍ଟ ସମସ୍ତେ ଜାତୀୟ ସଂଗ୍ରାମରେ ଝାସ ଦେଲେ—ସାମ୍ରାଜ୍ୟବାଦୀ ଶକ୍ତି ସହିତ ସଂଘର୍ଷ ଛଡ଼ା ଅନ୍ୟ କିଛି କାର୍ଯ୍ୟ ହୋଇ ନ ଥିଲା । ତେଣୁ ଦଳର ବା ସୋସାଲିଷ୍ଟ ଆନ୍ଦୋଳନର କିଛି ଲୋକସାନ୍ ହେଲା ନାହିଁ । ମୁଁ ମୋ ଜୀବନ-ସଂଗ୍ରାମ ବହି ଲେଖିଲାବେଳେ ତାଙ୍କ ସହ ଏହିସବୁ ପୁରୁଣା କଥା ଆଲୋଚନା କରିଥିଲି—ତାଙ୍କଠୁଁ କିଛି ପୁରୁଣା କାଗଜପତ୍ର ଆଣିଲି, ଯାହା ବହିରେ ଦିଆଯାଇଛି । ସେହି କାଗଜପତ୍ରରୁ ଜୟପ୍ରକାଶଙ୍କର ଏକ ଚିଠି ପାଇଥିଲି । ତା'ର ଫଟୋଷ୍ଟାଟ "ଶ୍ରଦ୍ଧାଞ୍ଜଳି"ରେ ଦିଆଯାଇଛି । ସେଥିରେ ଏକ ବିସ୍ମୟକର ତଥ୍ୟ ରହିଛି । କଂଗ୍ରେସ ସୋସଲିଷ୍ଟ ପାର୍ଟିର ଜାତୀୟ କାର୍ଯ୍ୟପରିଷଦ ସଭ୍ୟଙ୍କ ଉପରେ ମାସିକ ୫ ଟଙ୍କା ଚାନ୍ଦା ଲେଭି କରାଯାଇଥିଲା । ନବ ବାବୁ ଏହା ଦେବାକୁ ଅସମର୍ଥ ବୋଲି ଜଣାଇ ସଭ୍ୟପଦରୁ ଇସ୍ତଫା ଦେଇଥିଲେ । ଜୟପ୍ରକାଶ ଏହାର ଆବଶ୍ୟକତା ନାହିଁ ବୋଲି ଚିଠି ଲେଖିଛନ୍ତି । ଅପର ନିଃସ୍ୱ ସମ୍ବଳହୀନ ହୋଇ ସେ ରାଜନୀତି କରୁଥିଲେ, ତାଙ୍କ ଚରିତ୍ରର ଏହା ଏକ ଉଜ୍ଜ୍ୱଳ ଦିଗ । ତେଣୁ ମୁଖ୍ୟମନ୍ତ୍ରୀରୁ ଇସ୍ତଫା ଦେଇ ସେ ଯେ ସାଇକେଲରେ ନିଜ ଘରକୁ ଫେରିଲେ ଏବଂ ମଟରଗାଡ଼ିଟିକ ବିକିବାକୁ ପଡ଼ିଲା, ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ରାଜନୀତି ଓ ସଂସାର ପ୍ରତି ଆସକ୍ତି, ମାତ୍ର ଧନସମ୍ପଦ ଏପରି କି ନିଜର ଚଳପ୍ରଚଳ ବିଷୟରେ ସଂପୂର୍ଣ୍ଣ ଅନାସକ୍ତ ଚରିତ୍ର ସାଧୁ ସନ୍ନ୍ୟାସୀଙ୍କଠାରେ ବି ଦେଖିବାକୁ ମିଳିବ ନାହିଁ । ଏ ବିଷୟଟିର ଉଲ୍ଲେଖ ଏଠାରେ ଅପ୍ରାସଙ୍ଗିକ ବୋଧ ହୋଇପାରେ, ମାତ୍ର ଅକାରଣ ନୁହେଁ ।

ସେ କାହିଁକି ଏପରି କରିଥିଲେ, ତାହାର ଜବାବ ପାଇଲି ନାହିଁ । ତାଙ୍କର ସେତେବେଳକୁ ପଛକଥାର ବିସ୍ମରଣ ଘଟିଥିଲା; ତେଣୁ କହିପାରିଲେ ନାହିଁ । ସେହିଦିନରୁ ସେ ସୋସାଲିଷ୍ଟ ଆନ୍ଦୋଳନରୁ ସଂପର୍କ ତୁଟାଇବା ଆରମ୍ଭ କଲେ । ୧୯୪୭ ମସିହାରେ ଯେତେବେଳେ କଂଗ୍ରେସ ସୋସଲିଷ୍ଟ ପାର୍ଟିର ପୁନର୍ଗଠନ କରାଯାଏ, ତହିଁରୁ ଅଲଗା ରହିଲେ ।

କ୍ଷମତାର ମୋହ ନ ଥିଲା ସତ୍ୟ, ମାତ୍ର କ୍ଷମତା ଚାହୁଁ ନ ଥିଲେ କିମ୍ବା ସେତେବେଳର କଂଗ୍ରେସ ନୀତିରେ ତାଙ୍କର ବିଶ୍ୱାସ ନ ଥିଲା ଏପରି ନୁହେଁ । ତାଙ୍କର ଯେଉଁ କାର୍ଯ୍ୟ ଲାଗି ଆଗ୍ରହ ଏବଂ ଯେଉଁ ଜନସାଧାରଣଙ୍କ ପ୍ରତି ତାଙ୍କର ଅନୁଗତ୍ୟ, ସେମାନଙ୍କ ଲାଗି କିଛି ଶାସନ କ୍ଷମତା ଜରିଆରେ ହୋଇପାରିବ ବୋଲି ହୁଏତ ବିଶ୍ୱାସ ରହିଥିଲା । ସେ ଖାଲି ଓଡ଼ିଶାର ମୁଖ୍ୟମନ୍ତ୍ରୀ ରହିଲେ ନାହିଁ; କଂଗ୍ରେସର ସର୍ବୋଚ୍ଚ କାର୍ଯ୍ୟକାରୀ ସମିତିର ବହୁକାଳ ସଦସ୍ୟ ରହିଲେ । କଂଗ୍ରେସ ଓ ସରକାରର ସମସ୍ତ କାର୍ଯ୍ୟପ୍ରତି ତାଙ୍କର ସମର୍ଥନ ଥିଲା ଏବଂ ୭ ବର୍ଷକାଳ ସେ ନିଜେ ତହିଁର ଥିଲେ ପ୍ରଧାନ ଚାଳକ, ନେତା । ସେ କିପରି ଏକ ଚକ୍ରବ୍ୟୂହରେ ପଡ଼ିଗଲେ ।

ପୁତ୍ରଶୋକ ହେତୁ ମନ୍ତ୍ରୀତ୍ୱ ଛାଡ଼ିଲେ—ମନ୍ତ୍ରୀତ୍ୱ ଛାଡ଼ିବା ପରେ ଆମମାନଙ୍କ ସହ କିଞ୍ଚିତ୍ ପରିମାଣରେ ପୂର୍ବ ସଂପର୍କ ଫେରିଆସିଲା । "କୃଷକ"ରେ ସେତେବେଳେ ଲେଖିଲେ ଏକ ଲେଖା – ଶିରୋନାମା ଥିଲା "ଆମର ଦୋଷ କେଉଁଠି ?" ଯେତେ ଚେଷ୍ଟା କରି ମୁଁ ସେ ଲେଖାଟି ପାଇଲି ନାହିଁ । ସେହିପରି ଆଉରି ଏକ ତାତ୍ପର୍ଯ୍ୟପୂର୍ଣ୍ଣ ଲେଖା ବହୁବର୍ଷ ପୂର୍ବରୁ କଂଗ୍ରେସ ସୋସଲିଷ୍ଟ କାଗଜରେ ବାହାର କରିଥିଲେ "Straw galore" । ଏଥିରେ ଥିଲା କମ୍ୟୁନିଷ୍ଟ ଓ ସୋସଲିଷ୍ଟ ଚିନ୍ତାର ଅପୂର୍ଣ୍ଣତା ସମ୍ବନ୍ଧରେ ଝଲକ । "ଆମର ଦୋଷ କେଉଁଠି" ରେ ତାଙ୍କ ନିଜ ଅଭିଜ୍ଞତାରୁ କେଉଁ କାର୍ଯ୍ୟଗୁଡ଼ିକ ବର୍ଜନୀୟ, ତାହାର ସୂଚନା ଥିଲା । ମାତ୍ର ଯେଉଁ ବ୍ୟକ୍ତି ଲୋକଙ୍କ ଭିତରକୁ ଫେରିଆସିଥିଲେ, ସେ ପୁଣି ସେହି ଶାସନ ଜଞ୍ଜାଳରେ ବୁଡ଼ି ନିଜକୁ ହରାଇଲେ କାହିଁକି ? ଏ ପ୍ରଶ୍ନଟି ମନରେ ବାରମ୍ବାର ଉଠେ । ଅବଶ୍ୟ ସେ ତହିଁଭିତରେ ସାତବର୍ଷ ଯୁଗେଷ୍ଟରେ ରହି ନିଷ୍କଳଙ୍କ ହୋଇ ବାହାରି ଆସିଲେ । ତାଙ୍କର ପୂର୍ବର ଜନ-ଆଚରଣରେ କୌଣସି ପରିବର୍ତ୍ତନ ଘଟି ନ ଥିଲା । ଏହା ବି ଭାରତବର୍ଷରେ କେହି କେନୋହାନ୍ତି ବୋଲି ଲୋକେ ପ୍ରଶଂସା କରନ୍ତି ଏବଂ କରୁଥିବେ ।

ଆମେ ସବୁ ଯେଉଁମାନେ କିଛୁକାଳ ତାଙ୍କ ସହ କାର୍ଯ୍ୟ କରିବାର ସୁଯୋଗ ପାଇଥିଲୁ, ତାଙ୍କଠାରୁ ପ୍ରେରଣା ଲାଭ କରୁଥିଲୁ ଏବଂ ବ୍ୟକ୍ତିଗତ ଭାବରେ ଘନିଷ୍ଠ ସମ୍ପର୍କରେ ଆସିଥିଲୁ, ସେମାନେ ତୀବ୍ରଭାବରେ ଅନୁଭବ କରିଛୁ, ତାଙ୍କ ଚରିତ୍ରର ଗୋଟିଏ ତ୍ରୁଟି । ତାହା ହେଉଛି ନିଜ ପ୍ରତି ଉଦାସୀନତା । ଏ ପ୍ରକୃତିଟି ବ୍ୟକ୍ତିଗତ ଓ ପାରିବାରିକ କ୍ଷେତ୍ରରେ ବେଶ୍ ଚଳିଗଲା; ଚଳିଯାଇପାରେ ମଧ୍ୟ । ମାତ୍ର ରାଜନୀତିକ ଓ ସାମାଜିକ କ୍ଷେତ୍ରରେ ନାନା ଅସୁବିଧା ସୃଷ୍ଟି କରିଛି ।

କିଏ ନ ଜାଣେ ୧୯୪୭ ରେ ସାରା କଂଗ୍ରେସ ସଙ୍ଗଠନ ଓ କର୍ମୀଗଣ ତାଙ୍କ ପଛରେ ଥିଲେ; ସେ ମୁଖ୍ୟମନ୍ତ୍ରୀ ହେଲେ ନାହିଁ । ସେ ଦ୍ୱିତୀୟ ହେବାକୁ ପସନ୍ଦ କଲେ । ଓଡ଼ିଶାର ରାଜନୀତିକ ଜୀବନ ହେଉଛି ଏହି ତିନିଜଣଙ୍କୁ କେନ୍ଦ୍ର କରି ସମସ୍ତଙ୍କୁ ଜଣା । ୧୯୪୨ ଆନ୍ଦୋଳନରେ ଯେଉଁ ନୂତନ ଯୁବଶକ୍ତି ରାଜନୀତିକୁ ସକ୍ରିୟ ଭାବରେ ଆସିଗଲେ, ସେମାନଙ୍କୁ ସଙ୍ଗଠିତ କରିବାର ଓ ତାଙ୍କର ନେତୃତ୍ୱ ନେବାର ଯେଉଁ ସମ୍ଭାବନା ଥିଲା, ତାହା ଗ୍ରହଣ କଲେ ନାହିଁ ।

ସର୍ବୋଦୟ ଆନ୍ଦୋଳନରେ ସେହିପରି ସେ ରହିଗଲେ ଏକ କୋଣରେ—ପୁରୋଭାଗକୁ ଆସିବା ନିମନ୍ତେ କୌଣସି ଇଚ୍ଛା ପ୍ରକାଶ କରିନାହାନ୍ତି । ଏହିପରି ବହୁ କଥା ବହୁ ସୁଯୋଗ ଆସିଛି । ସେ ତ ନେତାଙ୍କ ଧାଡ଼ିରେ ଥିଲେ ମୂଳରୁ ! ମାତ୍ର ନେତୃତ୍ୱ ନେବାର ଅନିଚ୍ଛା ଆମମାନଙ୍କ ମନରେ ଦୁଃଖ ଦେଇଛି । ଦେଶ ଏକ ପ୍ରଗତିକାମୀ ସାଧୁନିଷ୍ଠ ନେତୃତ୍ୱରୁ ସେହି ଭାବରେ ବଞ୍ଚିତ ହୋଇ ରହିଗଲା । ତାଙ୍କ ଭିତରେ କେଉଁ ଦ୍ୱନ୍ଦ୍ୱ କାର୍ଯ୍ୟ କରୁଥିଲା, ତାହା କେବଳ ମନସ୍ତାତ୍ତ୍ୱିକମାନେ ଖୋଜି ବାହାର କରିପାରିବେ । ଏହି ଦ୍ୱନ୍ଦ୍ୱ ବୋଧହୁଏ ଶେଷଜୀବନକୁ ତାଙ୍କୁ ଏପରି ଅସ୍ଥିର ଓ ଅଥୟ କରିପକାଉଥିଲା ।

ଆମ ଭିତରେ ରାଜନୀତିକ ମତଭେଦ ସତ୍ତ୍ୱେ ସେ ବୋଧହୁଏ ମୋଠାରୁ ବହୁ ଆଶା ରଖିଥିଲେ । ମୋର ସବୁ କାର୍ଯ୍ୟରେ ଶୁଭ ମନାସି ଅଛନ୍ତି । ମୋର କେତେକ କାର୍ଯ୍ୟ ତାଙ୍କ ଆଶାନୁରୂପ ହୋଇ ନ ଥିବାରୁ ନାପସନ୍ଦ କରିଛନ୍ତି ସିନା, ବିରୋଧ କରିନାହାନ୍ତି । ତାଙ୍କ ଚରିତ୍ରର ଏହା ଏକ ଦିଗ । ତାଙ୍କ ବିଷୟରେ କେହି କିଛି ସମାଲୋଚନା କଲେ ସେ କେବେ ତା'ର ପ୍ରତିବାଦ କରିନାହାନ୍ତି କିମ୍ବା କୌଣସି ବିବୃତି ଦେବାର ଆବଶ୍ୟକତା ଅନୁଭବ କରିନାହାନ୍ତି । ବହୁ ରାଜନୀତିକ ସାଥିଙ୍କ ସମ୍ବନ୍ଧରେ ତାଙ୍କର ଅତି ଦୃଢ଼ ମତ ରହିଥିଲେ ସୁଦ୍ଧା ସେ କେବେ ପ୍ରକାଶ କରୁ ନ ଥିଲେ; ସେ ବିଶ୍ୱାସ କରୁଥିଲେ ତାଙ୍କ କାର୍ଯ୍ୟ ଓ ମନୋଭାବ ସେମାନଙ୍କ ପ୍ରତି ଯାହା, ତହିଁରୁ ସେମାନେ ଉପଲବ୍ଧି କରିବେ । ମାତ୍ର କାର୍ଯ୍ୟକ୍ଷେତ୍ରରେ ତାହା ଘଟିନାହିଁ—ସେମାନେ ତାଙ୍କର ପରମ ସାଥୀ ବୋଲି ପରିଚୟ ଦେଇ ସେଥିରୁ ଫାଇଦା ଉଠାଇଛନ୍ତି ।

ମୁଁ ତାଙ୍କର ଇଚ୍ଛା ପୂରଣ କରିପାରିନାହିଁ କିମ୍ବା ସେ ଯାହା ଆଶା କରୁଥିଲେ ତାହା ପୂରଣ କରିବାରେ ଅସମର୍ଥ ହୋଇଛି । ତା ୨୦-୫-୬୭ ରେ ଅନୁଗୁଳରୁ ମତେ ଲେଖିଥିଲେ, "ସୁରିଆ, ସାଧାରଣ ନିର୍ବାଚନ ପରେ ନାନା ଦିଗରେ ସମାଜବାଦୀ ଆନ୍ଦୋଳନ ଆଗେଇବ ବୋଲି ମୁଁ ବହୁତ ଆଶା କରିଛି । ମୁଁ ନିଜେ ଦିନକୁ ଦିନ ଅତ୍ୟନ୍ତ ଅଧୀର ହୋଇପଡ଼ୁଛି । ଯେତିକି ନିଜର କାମ କରିବାର ଶକ୍ତି କମୁଛି, ସେତିକି ଏ ଅଧୀରତା ବଢ଼ୁଛି । ମୁଁ ବହୁ ଆଶା କରିଛି ଯେ ଆମ ଓଡ଼ିଶାରେ ତମେମାନେ ସମସ୍ତେ ମିଶି ହେଉ ବା ଅଲଗା ଅଲଗା ହୋଇ ହେଉ, ପରସ୍ପର ସହଯୋଗରେ କାମ ଆରମ୍ଭ କରିବ ଏବଂ ମତେ ସବୁ କାମରେ ଲଗାଇବ ।"

ଏହା ଆମ ପକ୍ଷରେ ଏକ ସୁଯୋଗ ଥିଲା । ୧୯୬୭ ବେଳକୁ ମୁଁ ଯେଉଁ ସ୍ଥିତିରେ ଥିଲି ଏବଂ ସୋସାଲିଷ୍ଟ ଆନ୍ଦୋଳନ ଯେଉଁ ସୁଯୋଗ ଓ ସ୍ଥାନ ଓଡ଼ିଶାରେ ହାସଲ କରିଥିଲା, ତାହା ପୂର୍ଣ୍ଣ ଉପଯୋଗ କରିବା ଭଳି ଦକ୍ଷତା ଆମଠାରେ ନ ଥିଲା ।

ତାଙ୍କର ନିଜକୁ assert ବା ସମ୍ମୁଖକୁ ଆସିବାର ଇଚ୍ଛାର ଅଭାବ ଯୋଗୁଁ ନାନା ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିଲା ବୋଲି ମୋର ଯେପରି ଅଭିଯୋଗ, ସେହିଭଳି ମୁଁ ନିଜର ଅପାରଗପଣିଆ ହେତୁ ତାଙ୍କ ମନରେ ହୁଏତ ଦୁଃଖ ଦେଇଥିବି ।

୧୯୭୫ ମାର୍ଚ୍ଚ ମାସ ୩୧ ତାରିଖରେ ଭୁବନେଶ୍ୱରରେ ସରକାରୀ ଗେଷ୍ଟହାଉସରେ ଜୟପ୍ରକାଶ ନାରାୟଣ ସାମାନ୍ୟ ଅସୁସ୍ଥ ଥାଆନ୍ତି । ଓଡ଼ିଶାରେ ତାଙ୍କ ଆନ୍ଦୋଳନର ସଙ୍ଗଠନର ଢାଞ୍ଚା ପକାଉଥାଆନ୍ତି । ମତେ ଡକାଇପଠାଇ କହିଲେ—"ଓଡ଼ିଶାରେ ଆନ୍ଦୋଳନର କ୍ଷେତ୍ର ପ୍ରସ୍ତୁତ । ନବ ବାବୁଙ୍କଠାରେ ମୁଖ୍ୟ ଦାୟିତ୍ୱ । ନବ ବାବୁ କହନ୍ତି, ସେ ବୃଢ଼ା ହୋଇଗଲେଣି, ଆଉ ସେପରି ଶକ୍ତି ନାହିଁ । ମତେ କହିଛନ୍ତି ଆପଣଙ୍କୁ ଏହାର ପରିଚାଳନାର ଦାୟିତ୍ୱ ନେବା ନିମନ୍ତେ ଡାକଆଣିବା ଲାଗି ।"

ଜେ. ପି. ପୁଣି କହିଲେ—ଜାନୁଆରୀ ମାସରେ ଆପଣ କଂଗ୍ରେସ ଛାଡ଼ିବା ନିମନ୍ତେ ମୋର ଯେ ପରାମର୍ଶ ଲୋଡ଼ିଥିଲେ, ସେତେବେଳର ପରିସ୍ଥିତି ଦେଖି ମୁଁ ମନାକରିଥିଲି । ମାତ୍ର ନବ ବାବୁଙ୍କର ଇଚ୍ଛା ଓ ମୋର ଅନୁରୋଧ ଆପଣ ଛାଡ଼ିଆସନ୍ତୁ । ନାନା କାରଣରୁ ଏପରି କରିବା ସମ୍ଭବ ନୁହେଁ ବୋଲି ମୁଁ ଜୟପ୍ରକାଶ ନାରାୟଣଙ୍କୁ ବୁଝାଇଦେଲି । ସେ ବୁଝିଗଲେ ଏବଂ ତାଙ୍କ ଆନ୍ଦୋଳନର ମୁଁ ବିରୋଧ କରିବି ନାହିଁ ବୋଲି ପ୍ରତିଶ୍ରୁତି ଦେଲି । ମାତ୍ର ନବ ବାବୁଙ୍କ ଇଚ୍ଛା ପୂରଣ କରିପାରିଲି ନାହିଁ । ଏଇଟା ତାଙ୍କ ମନରେ ଦୁଃଖ ଦେଇଥିବ । ମୋର ବି ଏକ ଅବଶୋଷ ରହିଗଲା ।

୧୯୭୫ ରେ ଏମର୍ଜେନ୍ସି ବେଳେ ସମ୍ପୂର୍ଣ୍ଣ ବିଦ୍ରୋହରେ ଏକ ଆନ୍ତରିକ ଆବେଗରେ ଝାମ୍ପ ଦେଲେ । ଜୀବନରେ ଯେଉଁ ଅଧୀରତା, ବ୍ୟାକୁଳତା ଏବଂ ତାହା ସାଙ୍ଗକୁ ଶାରୀରିକ ଦୁର୍ବଳତା ତାଙ୍କ ମନକୁ ଅସ୍ଥିର କରୁଥିଲା, ତାହା କୁଆଡ଼େ ଉଭେଇଗଲା । ଗିରଫର କିଛି ପୂର୍ବରୁ ମୁଁ ଯାଇ ଦେଖା କରିଥିଲି । ବିଭିନ୍ନ ଜାଗାରେ ଗିରଫଦାରି ଆରମ୍ଭ ହୋଇଯାଇଥିଲା । ତେଣୁ ମୁଖ୍ୟବ୍ୟକ୍ତିମାନଙ୍କର ଅନୁପସ୍ଥିତିରେ ଆନ୍ଦୋଳନ କିପରି ଚାଲୁ ରହିପାରିବ, ତା'ର ଯୋଜନା ସେ ଆରମ୍ଭ କରିଦେଇଥିଲେ । ବିନୋବାଙ୍କ ଆନ୍ଦୋଳନର ଯେଉଁସବୁ ଅଭାବ ଓ ତ୍ରୁଟି ତାଙ୍କ ମନକୁ ଆଚ୍ଛାଦିତ କରି ରଖିଦେଲା ଏବଂ ଏକପ୍ରକାର ହତାଶାର ବାୟୁମଣ୍ଡଳ ସୃଷ୍ଟି ହୋଇଥିଲା, ସେ ସବୁ ଜଞ୍ଜାଳ ଦୂର ହେଲା । ସତେ କି ଏହା ଥିଲା ଏକ ନବୀନ ଯୁଗର ଆହ୍ୱାନ; ନୂତନ ଇତିହାସ ପୁଣି ସୃଷ୍ଟି କରିବାର ମହାନ୍ ସୁଯୋଗ । ଏତେବେଳେ ଯାହା ଘଟିଲା, ତା'ର ପରିଣତି କଅଣ ହେଲା, ଏହା ସମସ୍ତଙ୍କୁ ଜଣା । ମାତ୍ର ଏହି ବେଳର ବନ୍ଦୀଜୀବନ ହିଁ ସବୁଠାରୁ ଦୁଃଖଦାୟକ କାହାଣୀ । ବନ୍ଦୀଶାଳା ଭିତରେ ତାଙ୍କ ପ୍ରତି ଯେଉଁ ବ୍ୟବହାର କଲେ, ତାହା ବ୍ରିଟିଶ ଅମଳର କାହାଣୀକୁ ବଳିପଡ଼ିଲା; ଅତି ଅମନୁଷ୍ୟୋଚିତ ଓ ଅଶିଷ୍ଟସୂଚକ ଦୁର୍ବ୍ୟବହାର । ଏଥିରେ ହିଁ ତାଙ୍କର ଯେଉଁ ସ୍ୱାସ୍ଥ୍ୟଭଙ୍ଗ ଘଟିଲା, ତାହା ଆଉ ସୁଧୁରି ପାରିଲା ନାହିଁ; କିନ୍ତୁ ଭଗ୍ନସ୍ୱାସ୍ଥ୍ୟ ନେଇ ବି ସେ ଗଣତାନ୍ତ୍ରିକ ପରମ୍ପରାକୁ ପୁନଃପ୍ରତିଷ୍ଠିତ କରିବା ନିମନ୍ତେ ଦେଶରେ ଯେଉଁ ନୀରବ ବିଦ୍ରୋହ ଭୋଟବାକସ ଜରିଆରେ ଘଟିଗଲା, ସେଥିରେ ପ୍ରାଣପାତ ପରିଶ୍ରମ କଲେ । ଏ ଜନତା ଦଳ ନାମରେ ଯେଉଁ ନୂତନ ଶକ୍ତିର ଆବିର୍ଭାବ ହେଲା, ତହିଁରେ ତାଙ୍କର ଅବଦାନ ଅସୀମ; ତାଙ୍କର ନୈତିକ ନେତୃତ୍ୱ ଓଡ଼ିଶାର ଜନଜୀବନ ଉପରେ କମ୍ ପ୍ରଭାବ ପକାଇ ନ ଥିଲା । କିନ୍ତୁ ଯେଉଁ ଜନତା ପାର୍ଟିକୁ ଠିଆ କରାଇବାରେ ସେ ଏତେ କାମ କରିଥିଲେ, ତାହା ଯାଇ ଶେଷକୁ ଦୁଷ୍ଟ କୁଟିଳ ପ୍ରବୃତ୍ତିଙ୍କ ପ୍ରାଦୁର୍ଭାବରେ ପଡ଼ିଲା । ରାଜନୀତିକ ଖେଳୁଅଡ଼ମାନେ ଏପରି ଏକ ମଉକାର ପୂର୍ଣ୍ଣ ଫାଇଦା ଉଠାଇ ମୂଳନୀତିଗୁଡ଼ିକୁ ଲଙ୍ଘନ କରି ବେଶ୍ କ୍ଷମତା ଉପଭୋଗ ଓ କଳହରେ ମାତିଗଲେ । ସେ ଏହାର ଦୃଢ଼ ପ୍ରତିବାଦ କଲେ ଏବଂ ପ୍ରତିବାଦ ସ୍ୱରୂପ ମାଳତୀ ଚୌଧୁରୀ ନିର୍ବାଚନରେ ପ୍ରତି-ଦ୍ୱନ୍ଦ୍ୱିତା କଲେ । ନିଜେ ଜନତା ପାର୍ଟି ଅଫିସ ପାଖରେ ଅନଶନ କରିଥିଲେ । ମାତ୍ର ଜନତା ପାର୍ଟିର ଦୃଷ୍ଟିକୋଣ ଥିଲା ଭିନ୍ନ । ଶେଷଜୀବନକୁ ଜୟପ୍ରକାଶଙ୍କ ପରି ସେ ନିରୁତ୍ସାହ ଓ ନିରାଶ ହୋଇପଡ଼ିଲେ । ମନର ଏ ଦୁଃଖ ଦୁଇଜଣଯାକ ଭୋଗିଲେ ଶାରୀରିକ ଅକ୍ଷମତା ଦୋହଟ୍ଟେ; ସେଥିଲାଗି ମନ ଦଗ୍ଧ ହେଉଥିଲା । ବିଚଳିତ, ବ୍ୟସ୍ତ ହେଉ ନ ଥିଲେ; ମାତ୍ର ଏହାର ପରବର୍ତ୍ତୀକାଳର ପରିସ୍ଥିତି ତାଙ୍କ ପକ୍ଷରେ ଶାରୀରିକ ଓ ମାନସିକ ଦୃଷ୍ଟିରୁ ହେଲା କ୍ଲେଶଦାୟକ । ନିଜର ଶାରୀରିକ ସୁସ୍ଥତା ଲାଗି ଭୁବନେଶ୍ୱରରେ କରୁଥିବା ଚେଷ୍ଟା ବି ରଖିପାରିଲେ ନାହିଁ । ପୁତ୍ରର ମୃତ୍ୟୁକୁ ସେ ପାର ହୋଇଥିଲେ, ନାତିନାତୁଣୀଙ୍କ ମୁହଁକୁ ଚାହିଁ । ଦୁଇ-ନାତିଙ୍କର ଦୁର୍ଭାଗ୍ୟଜନକ ମୃତ୍ୟୁ ତାଙ୍କ ଉପରେ ହେଲା ନିଷ୍ଠୁର ଚଡ଼କ । ଶେଷକୁ ନାତିନାତୁଣୀଙ୍କ ମେଳରେ ଯେ ପ୍ରାଣବାୟୁ ଉଡ଼ିଗଲା, ତାହା ତାଙ୍କ ମନରେ ପରମ ସନ୍ତୋଷ ଆଣି ଦେଇଥିବ; କାରଣ ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସେ ସଚେତନ ଥିଲେ । ତେଣୁ ମୃତ୍ୟୁ ହେଲା ସୁଖମୃତ୍ୟୁ ।

ବ୍ୟକ୍ତିଗତ ଭାବରେ ମୁଁ ତାଙ୍କଠାରୁ ଯେଉଁ ସ୍ନେହ ଶ୍ରଦ୍ଧା ଓ ଆତ୍ମୀୟତା ପାଇଛି, ତାହା ମୋ ଜୀବନର ଭୂଷଣ ହୋଇ ରହିଛି । ମୋର ଏକ ଦୁଃଖୀର ଜୀବନ—ତାଙ୍କ ମୃତ୍ୟୁରେ ମୋପରି ଦୁଃଖୀ ଲୋକଙ୍କ ଦୁଃଖ ଆହୁରି ବଢ଼ିଗଲା ।

---



Family Group
From left Sitting :—Rama Devi, Krushna, Gopabandhu, Binayak
Standing :—Malati Devi, Uttara, Manmohan, Sumitra, Naba Babu
Photo taken in 1946



Family group
From left : Sitting on ground –Aphlatun, Asim
Sitting—Narayan Desai, Uttara, Naba Babu, Malati Devi, Krushna, Bibhuti Bhusan
Standing—Kasturi, Nachiketa, Surendra Gadekar, Sanghamitra, Kalpana



As Dhenkanal Satyagrahi Leaders ( 1939-40 )
From left—Naba Babu, Gouranga Ch. Das, Bhagabati Panigrahi



With Nehru at Bhubaneswar (discussing flood)



With Nehru at Berhampur A. I. C. C. Meeting



Padayatra with Vinoba Bhave in Orissa



Naba Babu with Dhebar and Biswanath Das



On the day of resignation from Chief Ministership – with staff and family – 1956



After release from Emergency jail – 1975



With President Sanjiva Reddy at Angul—1981



Naba Babu, S. N. Dwivedy, Malati Devi—1983

ସ୍ନେହର କରୁଣାକର,                    (1)

ତମ ଚଠିଖଣ୍ଡ ବର୍ତ୍ତମାନ ପାଇଲି । ତେମେ ପରୀକ୍ଷାରେ ଖରାପ କରିଛ ବୋଲି ଆଗରୁ ଲେଖିଥିଲ—ସେଥିପାଇଁ ଫେଲ୍ ହେବା ଖବର ପାଇ ଆଶ୍ଚର୍ଯ୍ୟ ହେଲି ନାହିଁ । ତମ ମନରେ ଭୀଷଣ ଦୁଃଖ ହୋଇଥିବ, ମୁଁ ବୁଝିପାରୁଛି—କିନ୍ତୁ ଏ ଯୁନିଭର୍ସିଟି ପରୀକ୍ଷା ଫେଲ୍ଟା ବଡ଼ ଜିନିଷ ନୁହେଁ । ତେମେ ତ ଦେଖୁଛ ଜୀବନର ପରୀକ୍ଷା । ଅତି ଦାରୁଣ ଭାବରେ ଫେଲ ହୋଇ ସୁଦ୍ଧା ଆମେ ଦେହ ଧରି ରହିଛୁ—ଯେତେଦିନ ବଞ୍ଚିଥିବୁ ପରର କିଛୁ ସେବା କରିଯାଉଛୁଁ ।

କାଲି ତମ କଥା ଭାବୁଥିଲି ଓ ମାଳତୀ ଦେବୀଙ୍କୁ କହୁଥିଲି ଗୋଟିଏ ବିଶେଷ କାର୍ଯ୍ୟ ସମ୍ପର୍କରେ । ମାଳତୀ ଦେବୀ ଏଠି ଯେଉଁ ମୌଳିକ ବିଦ୍ୟାଳୟଟି ଚଳାଉଛନ୍ତି, ସେଟା ବଣି ବିଦ୍ୟାଳୟ ପରି ଗୋଟିଏ ଆଦର୍ଶ ଅନୁଷ୍ଠାନ ରୂପେ ଗଢ଼ିବାର ଆମର ଇଚ୍ଛା, ଯାହାକୁ ଦେଖି ସାଧାରଣ ଲୋକଙ୍କର ମୌଳିକ ଶିକ୍ଷା ପ୍ରତି ଆଦର ଜନ୍ମିବ । ବର୍ତ୍ତମାନ ଏଠାରେ ତିନିଟି ଶ୍ରେଣୀ ଚାଲିଛି । ଦୁଇଜଣ ଶିକ୍ଷକ ଅଛନ୍ତି, ଏବର୍ଷ ଆଉ ଜଣେ ନିଯୁକ୍ତ ହେବେ । ଉପର ଶ୍ରେଣୀ ପାଇଁ ଜଣେ I. Sc. ପାଶ୍ କରିଥିବା ଟ୍ରେନ୍ଡ୍ ଶିକ୍ଷକ ଦରକାର ହେବେ । ତମର ବିଦ୍ୟା ବୁଦ୍ଧି ଦୃଷ୍ଟିରୁ ମୁଁ ତମ କଥା ଭାବୁଥିଲି । ତେମେ ଦୈବାତ୍ ଫେଲ୍ ହୋଇଥିଲେ ମଧ୍ୟ ପାଶ୍ କରିଥିବା ପିଲାଙ୍କଠାରୁ ତମର ଜ୍ଞାନ କଦାପି କମ୍ ନୁହେଁ । ମୌଳିକ ଶିକ୍ଷାକୁ ତମ ଜୀବନର ବ୍ରତଭାବରେ ଗ୍ରହଣ କରିପାରିଲେ ଖୁବ୍ ବଡ଼ କାମ ତେମେ କରିପାରିବ— ଭାରତର ଭବିଷ୍ୟତ ଏହି ଶିକ୍ଷା ପଦ୍ଧତି ଉପରେ ନିର୍ଭର କରୁଛି । ବଡ଼ ବଡ଼ ବୈଜ୍ଞାନିକ ବା ଇଞ୍ଜିନିୟର ଦେଶରେ ଅଛନ୍ତି ଓ ହେବେ; କିନ୍ତୁ ନିଷ୍ଠାପର ଗଢ଼ିବା ବିଜ୍ଞାନ ଭାରତରେ ସବୁଠାରୁ ବେଶି ଲୋଡ଼ା—ଦୁନିଆରେ ମଧ୍ୟ ଲୋଡ଼ା, ତେମେ ସେଇଥିରେ ବଡ଼ ହୁଅ—କୀର୍ତ୍ତି ରଖ । ମୋର ଏଇ ଇଚ୍ଛା । ଏ ବିଷୟରେ ମୋ ସହିତ ଅଧିକ ଆଲୋଚନା କରିବାକୁ ଚାହିଁଲେ ୨ ଦିନ ସକାଶେ ଅନୁଗୁଳ ଆସିବ ।

ଅନୁଗୁଳ
୨।୭।୪୮

ତମର
ନବକୃଷ୍ଣ ଚୌଧୁରୀ

ଶ୍ରୀ କରୁଣାକର ପରିଡ଼ା
C/o-Prabhakar Mahapatra
R. College, East Hostel, Room-8
P. O. Chauliaganja
Cuttack

(14)

Peace Centre
Kohima
14.4.65

ସ୍ନେହର କରୁଣାକର,

ତୋର ଚିଠିଖଣ୍ଡ ଯଥାସମୟରେ ପାଇଥିଲି । ଉତ୍ତର ଦେବାରେ ଡେରି ହେଲା, କ୍ଷମା କରିବୁ । ଚିଠିପତ୍ର ଲେଖିବାର ଅଭ୍ୟାସ ମୋର ଅନେକଦିନୁଁ ଚାଲିଯାଇଛି । ଜୀବନଟା ଦିନକୁ ଦିନ ଶୂନ୍ୟ ହୋଇଯାଉଛି । ଖାଲି ବଞ୍ଚିରହିବା ଛଡ଼ା ମୋର ଆଉ କରିବାର କିଛି ନାହିଁ—ଏହି ଅନୁଭୂତି ସ୍ପଷ୍ଟରୁ ସ୍ପଷ୍ଟତର ହେଉଛି । ସାରା ଜୀବନ କେତେ କ'ଣ କଳ୍ପନା କଳ୍ପନାରେ ମାତି ରହିଥିଲି—ଦେଶରେ ଦୁନିଆରେ ମସ୍ତବଡ଼ ଗୋଟିଏ ବିପ୍ଳବ ଆଣିବାରେ ସାହାଯ୍ୟ କରୁଛି ବୋଲି ଭାବୁଥିଲି । ବର୍ତ୍ତମାନ ଦେଖୁଛି ଅନ୍ୟ ଯେଉଁଠାରେ ଯାହା ହେଉ ଆମ ଦେଶରେ ସେପରି ବିପ୍ଳବ ସୁଦୂରପରାହତ । ମନେହେଉଛି ଯେଉଁ ଡାଳରେ ବସିଲି, ସେ ଡାଳ ଭାଙ୍ଗି ପଡ଼ିଲା । କ୍ରୋଧରେ ମୋ ମନ ପୋଡ଼ିଜାଳି ହୋଇ ପାଉଁଶ ହେବାକୁ ବସିଲାଣି । ନାଗାଲାଣ୍ଡ୍‌ରେ ନାଗାମାନଙ୍କ ଭିତରେ ଶକ୍ତି ଓ ସାହସିକତା ଦେଖୁଛି, ସେଥିପାଇଁ ଏଇଠି ପଡ଼ିରହିଛି । ଏଠି ଚଳେ ତ ଛୁଆପିଲାଙ୍କୁ ନେଇ ଚୁପଚାପ ପଡ଼ିରହିବା ଛଡ଼ା କିଛି ନାହିଁ । ତମକୁ ଦୂରୁ ଦେଖିଲେ ସ୍ୱାଭାବିକ କଥା ଭାରି ଖୁସି ଲାଗେ । ଆଗେ ଖୁସି ବି ଲାଗୁଥିଲା, ଆଶା ବି ହେଉଥିଲା ତେମେ ସବୁ ଭାରତରେ ବିପ୍ଳବର ଅଗ୍ରଣୀ ହେବ । ଭାରତର ଶିକ୍ଷିତ ଯୁବକ ପ୍ରଚଳିତ ବ୍ୟବସ୍ଥାରେ ନିଜ ପାଇଁ ଉପଯୁକ୍ତ ସ୍ଥାନ ଖୋଜିବାରେ ବ୍ୟସ୍ତ । ସେ ବ୍ୟବସ୍ଥାକୁ ଭାଙ୍ଗି ନୂଆ ବ୍ୟବସ୍ଥା ଗଢ଼ିବା କଥା ସେ କିପରି ଭାବିବେ ?

ତୋର
ସ୍ନେହାକାଂକ୍ଷୀ
ଭାଇ

Sri Karunakar Parida, M. A.
Teacher, Capital H. E. School, Unit-III
Bhubaneswar-1
Via—Calcutta